# କଥା ବିନୋଦ : ୧



ରାଧାବିନୋଦ ନାୟକ

ରାଧାବିନୋଦ ନାୟକ ସାମ୍ପ୍ରତିକ କଥା ସାହିତ୍ୟର ଜଣେ ଭିନ୍ନସ୍ୱରର କଥାକାର । ସେ ସ୍ୱରରେ ଥିବା ଆଭ୍ୟନ୍ତରୀଣ ଓ ବହିର୍ଦ୍ଦିଗର ଭାବସାମ୍ୟ ଏତେ ଯଥାର୍ଥ ଓ ପ୍ରଭାବଶାଳୀ ଯେ ତାହା ପାଠକକୁ ଯେତିକି ପୁଲକିତ କରେ ତାଠାରୁ ବହୁବେଶି ଭାବାବେଶରେ ବାନ୍ଧି ରଖେ । କଳ୍ପନା ଅପେକ୍ଷା ବାସ୍ତବ ଅନୁଭବକୁ ପ୍ରାଧାନ୍ୟ ଦେଇ ଗଳ୍ପ ରଚନା କରୁଥିବା ଏହି ଗାଳ୍ପିକଙ୍କ ନିଷ୍ଠା ୧୯୭୦ରୁ ଆଜି ପର୍ଯ୍ୟନ୍ତ ଅବ୍ୟାହତ ତଥା ସକ୍ରୀୟ । 'ପରାଣ ପିତୁଳା କାନ୍ଦୁଛି', 'ମିଛ ମଣିଷ', 'ଅନୁଚ୍ଚାରିତ', 'ଅପେକ୍ଷାର ଦିନରାତି' ଓ 'ଏକାଏକା ବନବାସ' ଇତ୍ୟାଦି ଲୋକପ୍ରିୟ କୃତିର ସ୍ରଜକ ଶ୍ରୀ ନାୟକ ଘଟଣା ଓ ଚରିତ୍ରର ସଂଯୋଗରେ ଏକ ଚିତ୍ରମୟ ଜଗତ ସୃଷ୍ଟି କରିବାରେ ଅନନ୍ୟ ପ୍ରତିଭାର ଅଧିକାରୀ । 'କଥା ବିନୋଦ-୧'ର ପ୍ରକାଶନ ଅବସରରେ ତାଙ୍କର କ୍ରମଶଃ ଅବଲୁପ୍ତ ଗଳ୍ପଗୁଡିକର ଏକତ୍ରୀକରଣ ବେଶ ପାଠକୀୟ ମର୍ଯ୍ୟାଦା ଲାଭ କରିବ ବୋଲି ଆଶା କରାଯାଏ ।

କଥା ବିନୋଦ- ୧

ଲେଖକ: ରାଧାବିନୋଦ ନାୟକ / ପ୍ରକାଶକ: ଇଭେଣ୍ଟ, ୪୫୫୫, ଭିଏସ୍‌ଏସ୍ ନଗର, ଭୁବନେଶ୍ୱର
ପ୍ରଚ୍ଛଦ: ପ୍ରକାଶ ମହାପାତ୍ର / ଡିଟିପି, ଲେଆଉଟ୍ ଓ ମୁଦ୍ରଣ: ଇଭେଣ୍ଟ, ପ୍ରଥମ ସଂସ୍କରଣ : ୨୦୦୮
ସ୍ୱତ୍ୱ: ଶାନ୍ତିଲତା ଦେବୀ / ମୂଲ୍ୟ : ଟ. ୧୨୦

---

KATHA BINOD-I By : Radhavinod Nayak
Published By: Event, 4555, V.S.S. Nagar, Bhubaneswar
Cover Design : Prakash Mohapatra/ DTP, Layout & Printing: Event
Copyright: Shantilata Devi / First Edition : 2008 / Price : Rs. 120/-

## କିଛି....

ରାଧାବିନୋଦ ନାୟକ (ଜନ୍ମ ୧୯୪୩)ଙ୍କର ବର୍ତ୍ତମାନ ସୁଦ୍ଧା ଛଅଟି ଗଳ୍ପ ସଂକଳନ ଓ ଦୁଇଟି ନାଟକ ପ୍ରକାଶିତ । ଏସବୁ ଭିତରୁ ଶେଷ ସଂକଳନ 'ଏକାଏକା ବନବାସ' (୨୦୦୦) ବ୍ୟତୀତ, ଅନ୍ୟ କୌଣସି ସଂକଳନ ପାଠକ ପାଇଁ ବଜାରରେ ଉପଲବ୍ଧ ନୁହେଁ । ସେଥିପାଇଁ ଏହି ସମଗ୍ରକୃତି (କଥା ବିନୋଦର-୧)ର ପରିକଳ୍ପନା ।

ତେବେ ଷାଠିଏ ଦଶକର ଶେଷ ଆଡ଼କୁ ଗପ ଲେଖା ଆରମ୍ଭ କରିଥିବା ରାଧାବିନୋଦ ଜଣେ ଲୋକପ୍ରିୟ ଗାଳ୍ପିକ ଥିଲେ କି ? ବୋଧହୁଏ ନାଁ । କାରଣ ସାଧାରଣ ପାଠକଟିଏ ଖୋଜୁଥିବା 'କାହାଣୀ' ଓ ପ୍ଲଟ୍ ତାଙ୍କର ପ୍ରଥମ ଗଳ୍ପଗୁଡ଼ିକରେ ପାରମ୍ପରିକ ଭାବରେ ନଥିଲା । ଏହି ଗଳ୍ପଗୁଡ଼ିକ ସବୁ 'ଧାରଣା' ସମ୍ବଳିତ ଥିଲା, ଯାହା ଚରିତ୍ରର ମାନସିକତାରେ ମୋଟାମୋଟି ସଂଘଟିତ ହେଉଥିଲା ଲେଖକର ଦୃଷ୍ଟିକୋଣ ମାଧ୍ୟମରେ; ଗଳ୍ପଗୁଡ଼ିକରେ କାହାଣୀର ଆଭାସ ମାତ୍ର ରହୁଥିଲା । ପ୍ରଥମ ଗଳ୍ପ ସଂକଳନ 'ପରାଣ ପିତୁଳା କାନ୍ଦୁଛି' (୧୯୭୨)ର ଲେଖାଗୁଡ଼ିକ ସବୁ ଏହି ପର୍ଯ୍ୟାୟର । ପରବର୍ତ୍ତୀ ଦୁଇଟି ସଂକଳନ 'ଅନୁଚ୍ଚାରିତ' ଏବଂ 'ଅପେକ୍ଷାର ଦିନରାତି'ର ଗଳ୍ପଗୁଡ଼ିକ ମଧ୍ୟ ଏହିପରି କାହାଣୀ ବିନ୍ୟାସବିହୀନ, 'ଧାରଣା'- ସମ୍ବଳିତ କଥାବସ୍ତୁର ମନସ୍ତାତ୍ତ୍ୱିକ ଉଚ୍ଚାରଣ ।

ତେବେ, କହିବାରେ ଦ୍ୱିଧା ନାହିଁ ଯେ, ରାଧାବିନୋଦ ଜଣେ ଅତ୍ୟନ୍ତ ଶକ୍ତିଶାଳୀ ଲେଖକ ଯିଏ ମୌଳିକ ବକ୍ତବ୍ୟଟିଏ ନିଜ ଶୈଳୀରେ ପ୍ରତ୍ୟେକ ଗଳ୍ପରେ ରଖିଥାନ୍ତି । ଏହି ଶୈଳୀ ମଧ୍ୟ ଅତ୍ୟନ୍ତ ନିଜସ୍ୱ, ମୌଳିକ । ନିଜର ଗାଁ, ସହର, ଦେଶର ଦୈନନ୍ଦିନ ଜୀବନରୁ ପ୍ରାୟତଃ ତାଙ୍କର ପ୍ରତ୍ୟେକ ଚିତ୍ରକଳ୍ପ, କଥାବସ୍ତୁ, ଉପମା ସଂଗୃହୀତ, ଯାହାର ଉପସ୍ଥାପନା କୌଣସି ନିର୍ଦ୍ଦିଷ୍ଟ, ଘଷାପିଟା ଶୈଳୀଠାରୁ ଦୂରରେ । ପୁଣି ଏକଥା ସ୍ୱୀକାର୍ଯ୍ୟ ଯେ ତାଙ୍କର ସମସାମୟିକ ଲେଖକଗଣ ପାଶ୍ଚାତ୍ୟ ଦର୍ଶନ ତଥା ଲେଖକୀୟ ଶୈଳୀରେ ଉଦ୍‌ବୁଦ୍ଧ ତଥା ପ୍ରଭାବିତ ହୋଇ ଗଳ୍ପ ରଚନା କରୁଥିଲାବେଳେ ରାଧାବିନୋଦ ନିଜ ସଂସ୍କୃତି, ଜୀବନ ଓ ପରିବେଶ ପ୍ରତି ବେଶ୍ ସଚେତନ ରହି, ସେହି ବିଷୟବସ୍ତୁ ଓ ଅବବୋଧ ନେଇ ହିଁ ତାଙ୍କର ଗଳ୍ପଗୁଡିକ ରଚନା କରିଛନ୍ତି ।

ରାଧାବିନୋଦଙ୍କର ଚତୁର୍ଥ ସଂକଳନ 'ମିଛ ମଣିଷ' (୧୯୮୧)ର ଗଳ୍ପଗୁଡ଼ିକ

ଏକ ଭିନ୍ନ ଶୈଳୀ ଆଡ଼କୁ ମୁହାଁଇଥାନ୍ତି; କାହାଣୀ-ପ୍ରବଣତା ଗଳ୍ପଗୁଡ଼ିକୁ ଆଚ୍ଛାଦିତ କରିବାକୁ ଆରମ୍ଭ କରେ ଏହି ସଂକଳନରେ। କିନ୍ତୁ ବିଷୟବସ୍ତୁର ଉପସ୍ଥାପନରେ ମନସ୍ତତ୍ତ୍ୱର ଆଧିକ୍ୟ ତଥାପି ପରିଲକ୍ଷିତ ହୁଏ। କହିବା ବାହୁଲ୍ୟ, ଏହି କାହାଣୀ-ପ୍ରବଣତାର ପୂର୍ଣ୍ଣାଙ୍ଗ ପ୍ରତିଫଳନ ଘଟିଛି ରାଧାବିନୋଦଙ୍କର ଷଷ୍ଠ ତଥା ବର୍ତ୍ତମାନ ସୁଦ୍ଧା ଶେଷ ସଂକଳନ 'ଏକା ଏକା ବନବାସ' (୨୦୦୦)ରେ। ଏହି ସଂକଳନର ପ୍ରାୟ ପ୍ରତ୍ୟେକ ଗଳ୍ପରେ ବଳିଷ୍ଠ କାହାଣୀଟିଏ ରହିଥାଏ ଏବଂ ଏହି କାହାଣୀ ଉପସ୍ଥାପନରେ ଘଟଣା, ଚରିତ୍ରଠାରୁ କାହାଣୀକାରର ବ୍ୟକ୍ତିଗତ ଦୂରତ୍ୱ ଉପଲବ୍ଧ କରିହୁଏ।

ଏହା ଲେଖକୀୟ ବିବର୍ତ୍ତନର କଥା। ସମୟାନ୍ତରରେ ଲେଖକର ଶୈଳୀ ତଥା କଥାବସ୍ତୁରେ ବିବର୍ତ୍ତିତ ପରିବର୍ତ୍ତନ ସୃଜନକଳାର ଏକ ସ୍ୱାଭାବିକ ପ୍ରବାହକୁ ସୂଚାଏ। ଘଷାପିଟା କଥାକୁ ବାରମ୍ବାର, ଏକା ପ୍ରକାର ଶୈଳୀରେ ପ୍ରକାଶ କରିବା ସୃଜନଶୀଳତାର ପରିପନ୍ଥୀ। ଏହି ସମଗ୍ରକୃତି ସଂକଳନରେ, ସେହି ଉଦ୍ଦେଶ୍ୟରୁ, ପ୍ରଥମ, ଚତୁର୍ଥ ଓ ଶେଷ ସଂକଳନରୁ ଗଳ୍ପଗୁଡ଼ିକୁ ସ୍ଥାନୀତ କରାଯାଇଛି। ମୁଁ ନିଶ୍ଚିତ ଯେ ସତୁରୀ ଦଶକରୁ ଆରମ୍ଭକରି ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ଲେଖାଯାଇଥିବା ଏଥିରେ ସ୍ଥାନୀତ ଗଳ୍ପଗୁଡିକ ଲେଖକଙ୍କ ସୃଜନାତ୍ମକ ବିବର୍ତ୍ତନର ସ୍ୱାକ୍ଷର ବହନ କରନ୍ତି। ଲକ୍ଷ୍ୟ କରିବାର କଥା, ଚତୁର୍ଥ କାହାଣୀ ସଂକଳନ ('ମିଛ ମଣିଷ'- ୧୯୮୧)ରୁ ନିଆଯାଇଥିବା ଗଳ୍ପଗୁଡ଼ିକ ('ଶେଷ ମଣିଷର ଭାଷା', 'ଶୀତ ଦିନେ ଗାଁର ଦୃଶ୍ୟ', 'ଆର୍ଟିଷ୍ଟ୍', 'ମିଛ ମଣିଷ' ଓ 'ଦେଶ ବୋଇଲେ') ଶୈଳୀଗତ ଓ ଉପସ୍ଥାପନାଗତ ଦୃଷ୍ଟିରୁ ପ୍ରାୟ ପ୍ରଥମ ('ପରାଣ ପିତୁଳା କାନ୍ଦୁଛି'-୧୯୭୨) ଓ ଶେଷ ('ଏକାଏକା ବନବାସ'-୨୦୦୦) ସଂକଳନର ଗଳ୍ପଗୁଡ଼ିକର ମଝାମଝି ସ୍ତରରେ, ସ୍ୱକୀୟ ଯୋଗ୍ୟତାରେ, ସ୍ଥାନିତ ହୋଇପାରିଛନ୍ତି।

ତେବେ ଜଣେ ପାଠକ-ତଥା-ସମାଲୋଚକଭାବେ ମୁଁ ଗୋଟିଏ କଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ରାଧାବିନୋଦଙ୍କର ଭାଷା ବ୍ୟବହାରର ଦକ୍ଷତା ନିଶ୍ଚିତ ଏକାନ୍ତଭାବରେ ମୌଳିକ। ଏବଂ ଏହି ଦିଗଟି ହିଁ ତାଙ୍କ ସାହିତ୍ୟ କୃତିକୁ ତାଙ୍କ ସମସାମୟିକ ତଥା ସମୟାନ୍ତରରେ ସତୀର୍ଥ ଗାଳ୍ପିକ/କାହାଣୀକାରମାନଙ୍କ ରଚନାଗୁଡ଼ିକରୁ ପୃଥକ୍ କରି ରଖିଛି। ସେହି 'ଧାରଣା' ସଂକଳିତ ଗଳ୍ପ ଗୋଟିଏରୁ ଉଦାହରଣଟିଏ- 'ମୁଁ ଜଣେ ଇଣ୍ଟେଲେକ୍‌ଚୁଆଲ,... ମୁଁ ସାଧାରଣ ଗଂଜେଇଟଣା ଆଖଣ୍ଡଳମଣୀ ବିଶ୍ୱାସୀ ଲୋକ ନୁହେଁ ଯେ ସୂର୍ଯ୍ୟପରାଗକୁ ଭୟ କରି ପୃଥିବୀ ପ୍ରଳୟର ଏକ ଅନିଶ୍ଚିତ ରୂପ

ଦେଖି ଜୀବନକୁ ବିକଳରେ ଜାବୁଡ଼ି ଧରେ।... ମୁଁ ତେଣୁ ଜଗନ୍ନାଥଙ୍କର ପ୍ରସାରିତ ବାହୁ ପ୍ରତି ଉଦାସୀନ, ଶହେ ଲୋକଙ୍କର ମାଛି ଗଣଗଣ ମହାପ୍ରସାଦ ସେବନ ପ୍ରତି ବୀତସ୍ପୃହ ଓ ଘୃଣାକରେ ମଧୁବାବୁଙ୍କ ଟୋପିକୁ, ଗୋପବନ୍ଧୁଙ୍କ ଦାଢ଼ୀକୁ...' ('ଶେଷ ମଣିଷର ଭାଷା', ପୃ-୧୧)।

ଶେଷରେ ମୁଁ ପୁଣି ଫେରିବି ସେହି ପ୍ରଶ୍ନକୁ- ରାଧାବିନୋଦ ଜଣେ ଲୋକପ୍ରିୟ ଗାଳ୍ପିକ ଥିଲେ କି? ଅର୍ଥାତ୍, ଏହି 'ସମଗ୍ରକୃତି' ସଂକଳନର ପ୍ରକାଶ, ପାଠକ ପରିପ୍ରେକ୍ଷୀରେ, କିଛି ଗୁରୁତ୍ୱ ରଖେ କି? ଏତିକି କହିବି, ରାଧାବିନୋଦଙ୍କର ଏକ ନିର୍ଦ୍ଦିଷ୍ଟ ପାଠକ ଗୋଷ୍ଠୀ ନିଶ୍ଚିତ ଥିଲେ; ୧୯୭୨ ମସିହାରେ ଓଡ଼ିଶାର ଏକ ନମ୍ବର ପ୍ରକାଶକ ସହଦେବ ପ୍ରଧାନ ରାଧାବିନୋଦଙ୍କର ପ୍ରଥମ ସଂକଳନ ଛାପିଥିଲେ 'ଫ୍ରେଣ୍ଡସ୍ ପବ୍ଲିଶର୍ସ' ମାଧ୍ୟମରେ। ରାଧାବିନୋଦ ତାଙ୍କର କୃତି ପାଇଁ ପ୍ରକାଶକଙ୍କଠାରୁ ରୟାଲ୍ଟି ପାଉଥିଲେ। ଏସବୁ ଘଟୁଥିଲା, ଯେବେ ସେ ଭୁବନେଶ୍ୱରର ମହାମହିମ୍ନ ସାହିତ୍ୟ-ବାତାବରଣଠାରୁ ଅନେକ ଦୂରରେ, ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ନାମକ ଅଖ୍ୟାତ ସ୍ଥାନଟିକୁ ନିଜର ସୃଜନାତ୍ମକ ସାଧନା ପାଇଁ ବାଛି ନେଇଥିଲେ। ଅବଶ୍ୟ ଭୁବନେଶ୍ୱରର 'ଗୋଦାବରୀଶ ସାହିତ୍ୟ ସଂସଦ' ମାଧ୍ୟମରେ ତାଙ୍କ ସୃଜନଶୀଳତାର ଅଙ୍କୁରୋଦ୍‌ଗମ ହୋଇଥିଲା।

'ଇଭେଣ୍ଟ' ପ୍ରକାଶନର ମୁଖ୍ୟ ତଥା ବର୍ତ୍ତମାନର ଜଣେ ଖୁବ୍ ଉଚ୍ଚମାନର ଗାଳ୍ପିକ ପ୍ରକାଶ ମହାପାତ୍ର, ରାଧାବିନୋଦଙ୍କ ଗଳ୍ପର ଜଣେ ମୁଗ୍ଧ ପାଠକ ତଥା ପ୍ରଶଂସକ। ଏହି ସମଗ୍ରକୃତିର ଯୋଜନା ପ୍ରଥମେ ତାଙ୍କରି ପରିକଳ୍ପନା। ସଂକଳନଟିକୁ ପ୍ରକାଶ କରିବାକୁ ତାଙ୍କର ନିଷ୍ଠା ତଥା ଉଦ୍ୟମ ପାଇଁ ତାଙ୍କୁ ମୋର କୃତଜ୍ଞତା।

ଲିପିପୁଷ୍ପା ନାୟକ
୨।୧୨।୨୦୦୮

# ସୂତ୍ରଧର ଉବାଚ

ଏ ପୃଥିବୀ ଈଶ୍ୱରଙ୍କର ଏକ ବିରାଟ ରଙ୍ଗମଞ୍ଚ ବୋଲି ଧରି ନିଆଯାଇପାରେ। ଏଠି ପ୍ରତ୍ୟେକ ବ୍ୟକ୍ତି ଜଣେ ଚରିତ୍ର ଏବଂ ସେ ଦୃଷ୍ଟିରୁ ପ୍ରତ୍ୟେକର ଭୂମିକା ମଧ୍ୟ ସ୍ୱତନ୍ତ୍ର। ଦିନ ଥିଲା ଯେତେବେଳେ ପ୍ରତ୍ୟେକ ଚରିତ୍ରର ଜୀବନଧାରା, ଚାଲିଚଳଣ ତଥା ଆଚାର ବିଚାରରେ ଏକ ସର୍ବଜନସ୍ୱୀକୃତ ପନ୍ଥା ଥିଲା। ଫଳରେ ପ୍ରତ୍ୟେକର ଭୂମିକା ସ୍ୱତନ୍ତ୍ର ହେଲେ ବି ଏକ ଅଖଣ୍ଡ ଯୋଗସୂତ୍ରରେ ସମସ୍ତେ ଆବଦ୍ଧ ଥିଲେ। ସେଠି ବ୍ୟକ୍ତିର ଉପଲବ୍ଧି ଥିଲା, ତା' ପଛରେ ଛନ୍ଦ ଥିଲା ଓ ସେ ତା'ର ସୁଖ-ଦୁଃଖ, ଜଞ୍ଜାଳ-ଯନ୍ତ୍ରଣାକୁ ଅନ୍ୟପାଖରେ ପ୍ରକାଶ କରି ଦଉଥିଲା ପଦଟିଏ 'ଆହା' ପାଇଁ ଏବଂ ସେ ପାଉଥିଲା ମଧ୍ୟ। ଆଜି କିନ୍ତୁ କଥା ଭିନ୍ନ। ଈଶ୍ୱର ଏକ ନାମବାଚକ ବିଶେଷ୍ୟ, କେତେଜଣ ଦୁର୍ବଳ ବ୍ୟକ୍ତିଙ୍କର ହୁଗୁଳା ଆତ୍ମବିଶ୍ୱାସ, ବା କେତେକଙ୍କର ଅର୍ଥନୀତିକୁ ଅବଲମ୍ବନ ମାତ୍ର। ସେ ପୁଣି ବିପର୍ଯ୍ୟସ୍ତ ଯେତେବେଳେ ଏବର ମଣିଷ 'ହଠାତ୍ ଫଳପ୍ରାପ୍ତି ଆଶାରେ' ସେ ବିରାଟ ସତ୍ତାକୁ ସଙ୍କୁଚିତ କରିଆଣି ଥୋଇଛି ଜୀବନ୍ତ ବାବାମାନଙ୍କର ଉପରେ। କାରଣ ଏ ଈଶ୍ୱର ସଚରାଚର ବିରାଜନ୍ତି, ତାଙ୍କ ହସରେ ପୃଥିବୀ ହସେ। ଈଶ୍ୱରଙ୍କର ଏ ମିନି ସଂସ୍କରଣ ପଛରେ ମଣିଷର ଆଧ୍ୟାତ୍ମିକ ଚେତନା ଅପେକ୍ଷା ହତୋତ୍ସାହ ସ୍ପଷ୍ଟ। ଯେଉଁ ସାଧାରଣ ବିଶ୍ୱାସରେ ମଣିଷ ବଞ୍ଚି ଆସିଥିଲା ବା ତା' ମଧ୍ୟରେ ଏକ ସାର୍ବଜନୀନ ଉପଲବ୍ଧି ଥିଲା, ତାହା ଭାଙ୍ଗିପଡ଼ିବା ଫଳରେ ସେ ପରସ୍ପରଠାରୁ ବିଚ୍ଛିନ୍ନ ଏବଂ ନିଃସଙ୍ଗ। ତେଣୁ ତା' କହିବାରେ ଯେମିତି କ୍ରମିକତା ନାହିଁ, ଶୁଣିବା ଲୋକର ଧୈର୍ଯ୍ୟର ଅଭାବ ସେମିତି। ଏମିତି ଅବସ୍ଥାରେ ସେ ଯାହାକିଛି ଅସ୍ପଷ୍ଟ କହେ ଏବଂ ସହୃଦୟ ବ୍ୟକ୍ତିର ଅଭାବରେ ତାହା ଏକ କରୁଣ ସ୍ୱଗତୋକ୍ତିରେ ପରିଣତ ହୁଏ।

ଆଜି ପ୍ରତ୍ୟେକ ବ୍ୟକ୍ତି ନିଃସଙ୍ଗ, ଅଥଚ ନିଜର ସ୍ୱତନ୍ତ୍ର ସତ୍ତା ନାମକ ଏକ କ୍ଷୁଦ୍ର ବୃତ୍ତ ମଧ୍ୟରେ ଘୂର୍ଣ୍ଣାୟମାନ। ଯେ ସଚେତନ, ସେ ଟିକେ ଥକ୍କା ନିଏ, ଅବସ୍ଥାକୁ ବିଶ୍ଳେଷଣ କରେ ଓ ମୁହୂର୍ତ୍ତକ ପାଇଁ ଚିନ୍ତା କରେ, ଯଦି ଏଇ କ୍ଷୁଦ୍ର ବୃତ୍ତର ପରିଧିକୁ ବୃହତ୍ତର କରି ଦିଆଯାଇପାରନ୍ତା, ସେଥିରେ ସମସ୍ତଙ୍କର ଅବାଧ ପ୍ରବେଶ ରହନ୍ତା, କ୍ଷତି କ'ଣ! ଏଇ କଥାଟା କେବଳ ତା'ର ମୁହୂର୍ତ୍ତକର ଚିନ୍ତା ନୁହେଁ, ବରଂ ସେ ଉଦ୍ୟମ କରେ ଓ ନିଜର ପରିଷ୍କାର ହାତ ଦୁଇଟିକୁ ସାମାଜିକମାନଙ୍କ ଆଡ଼କୁ ପ୍ରସାରିତ କରି

କହେ; ଦେଖନ୍ତୁ, ମୋ ହୃଦୟକୁ ହୃଦୟ କେମିତି ଶରତ ଆକାଶ ପରି ନିର୍ମଳ, ଅଥଚ ମୁଁ ନିଃସ୍ୱ । ଆସନ୍ତୁ ହୃଦୟକୁ, ହୃଦୟ ମିଶାଇ ଦେବା, ସମସ୍ତେ ଏକ ହୋଇଯିବା । ତା' ହାତରେ ଅନ୍ୟର ହାତ ଆସି ମିଶେ, କିନ୍ତୁ ସେମାନଙ୍କର ହୃଦୟରେ ଯେମିତି ବିରାଟ କୋଳପ ଏବଂ ମୁହଁର ହସ ସବୁ ପଥର ଦାନ୍ତର । ଏଇଠି ପୁଣି ସଂଘର୍ଷ ସମାଜ ଆଉ ସଚେତନ ବ୍ୟକ୍ତିର, ପ୍ରବଞ୍ଚନା ଓ ସରଳ ପ୍ରାଣର । ବିଚରା ସଚେତନ ବ୍ୟକ୍ତି ଅବୁଝା ରହିଯାଏ ।

ଏପରି ଏକ ଅସହାୟ ଅବସ୍ଥାରୁ ମୁକ୍ତି ଅଛି, ନାଁ ଯାର କିଛି ସମାଧାନ ଅଛି ! ମୁକ୍ତି କିମ୍ବା ସମାଧାନର ଦିଗ୍‌ଦର୍ଶନ ହୁଏତ ସମୟ ଦେବ, ସୂତ୍ରଧର ନୁହେଁ, ସୂତ୍ରଧର ନୁହେଁ ଯେହେତୁ ସୂତ୍ରଧର ଏ ଜଟିଳ ପରିସ୍ଥିତିରୁ ମୁକ୍ତ ନୁହେଁ ।

ସୂତ୍ରଧର କିଛିଟା ସୂଚନା ଦେଲା ମାତ୍ରେ । ଅବଶିଷ୍ଟ କଥା କହିବେ ଗଳ୍ପର ଚରିତ୍ରମାନେ । ତେଣୁ ନାଟକରେ ଦର୍ଶକର ରସୋପଲବ୍ଧି ପରି ସହୃଦୟ ପାଠକେ ବିଚାର କରିବେ ଗଳ୍ପଗୁଡ଼ିକୁ ।

ଏଥିରେ ସନ୍ନିବେଶିତ ଗଳ୍ପଗୁଡ଼ିକ ଝଙ୍କାର, ସମାବେଶ, ଗଳ୍ପ, ନବରବି, ଡ଼ଗର, କଳିଙ୍ଗ, ଅନ୍ୟଥା, ଚୈତକ ଇତ୍ୟାଦି ପତ୍ରିକାରେ ପୂର୍ବରୁ ପ୍ରକାଶିତ । ତଥାପି କେତୋଟିର ନାମକରଣ ଓ ବିଷୟବସ୍ତୁରେ କିଛି ପରିବର୍ତ୍ତନ ଘଟିଛି ।

ଓଡ଼ିଆ ଗଳ୍ପ ସାହିତ୍ୟରେ ମୁଁ ଯଥେଷ୍ଟ ଅନୁଜ ହେଲେ ବି ଫ୍ରେଣ୍ଡସ୍ ପବ୍ଲିଶର୍ସର ମାଲିକ ଶ୍ରୀ ସହଦେବ ପ୍ରଧାନ ମୋ କାହାଣୀଗୁଡ଼ିକୁ ବହି ଆକାରରେ ପ୍ରକାଶ କରିବାର ଦାୟିତ୍ୱ ନେଇଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ମୋ ଚିନ୍ତା ଉଦୟ ବାବୁଙ୍କ ତୁଳୀରେ ରଙ୍ଗ ଦେଇ ବହିର ପ୍ରଚ୍ଛଦକୁ ଯେମିତି ବ୍ୟାପିଛି, ତା'ର ତାରିଫ୍ ଶିଳ୍ପୀଙ୍କ ପାଇଁ ଯଥେଷ୍ଟ ନୁହେଁ । ସର୍ବୋପରି ଏ ବହିର ପ୍ରକାଶ କାଳରେ ଯେଉଁମାନଙ୍କୁ ସ୍ମରଣ କରିବା କଥା ସେମାନେ ହେଲେ ମୋର ଅନ୍ତରଙ୍ଗ ବନ୍ଧୁ ତଥା ଶୁଭେଚ୍ଛୁ ସର୍ବଶ୍ରୀ ଦଶରଥ ସାମଲ, ସମରେନ୍ଦ୍ର ପ୍ରସାଦ ଦାସ, ନାରାୟଣ ପଣ୍ଡା ଓ ପ୍ରଥମ ପାଠିକା ତୃପ୍ତି ବିଶ୍ୱାଳ ।

ବାସୁଦେବପୁର
୧, ମେ, ୧୯୭୨

ରାଧାବିନୋଦ



ସୂଚୀ

# ଅରଣ୍ୟର କୁମାର ଓ ରାକ୍ଷସ କର୍ତ୍ତୃକ ରାଜକୁମାରୀର ଅପହୃତା ହେବା କଥା

ସେଇ ଅବସ୍ଥାରେ ଯେ କେହି ଅନିରୁଦ୍ଧକୁ ଅନୁଧ୍ୟାନ କରିଥାନ୍ତା, ନିଶ୍ଚିତ ସିଦ୍ଧାନ୍ତରେ ପହଞ୍ଚିଥାନ୍ତା ଯେ ଅନିରୁଦ୍ଧର ବଡ଼ ଗୋଟାଏ କିଛି ଆତ୍ମିକ ପରିବର୍ତ୍ତନ ଘଟିଛି । ଅବଶ୍ୟ ତାହା ଘଟିଥିଲା ଯେହେତୁ ଗୋଟିଏ ବଡ଼ ସାହିତ୍ୟ ପରିଷଦ (ସର୍ବଭାରତୀୟ) କର୍ତ୍ତୃକ ଆହୁତ ହୋଇଯାଉଥିଲା ସେ ଅଞ୍ଚଳର ସାହିତ୍ୟ ଓ ସାହିତ୍ୟିକମାନଙ୍କୁ ଜାଣିବାକୁ ଆଞ୍ଚଳିକ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମରେ ।

ଅନିରୁଦ୍ଧ ନିଜେ ମଧ୍ୟ ତା'ର ଆଚରଣରେ ପ୍ରକାଶ କରୁଥିଲା: ତା'ର କିଛି ହୋଇଯାଇଛି । ସେ ତା'ର ଏଇ ଅପରାହ୍ଣ ଜୀବନ ସୀମା ମଧ୍ୟରେ 'ତୋ ଲାଗି ଗୋପଦାଣ୍ଡ ମନା/ରସ ଯା ଚାଲି ଯା/ନୀଡ଼ହରା କରୁଣ ପକ୍ଷୀ/ବିରହିଣୀର ଆତ୍ମଲିପି/ ଉନ୍ନତ ଯୁବକର ଅଦ୍ଭୁତ କାଣ୍ଡ' ପ୍ରଭୃତି ଅନ୍ୟୁନ ଡ଼ଜନଟେ ଉପନ୍ୟାସ ଗଳ୍ପ ଲେଖିଥିଲେ ବି ପ୍ରାଦେଶିକ ସାହିତ୍ୟ ପରିଷଦ ତଥା ଆଲୋଚକ ତାକୁ ଗୁରୁତ୍ୱ ଦେଉ ନଥିଲେ । ପୁରସ୍କାର ତ ଦୂରର କଥା, ତାକୁ ପାଞ୍ଚ ଜଣଙ୍କ ମଧ୍ୟରେ ଖଣ୍ଡେ ଉପାୟନ ବି ମିଳି ନଥିଲା । ଅଥଚ କେନ୍ଦ୍ର ପରିଷଦ ସତାବନ କୋଟିଙ୍କ ମଧ୍ୟରୁ ତାକୁ କେମିତି ବାଛିଦେଲା ଯେ ଅନିରୁଦ୍ଧ ସମ୍ବାଦଟିରେ କାନ୍ଦିପକାଇଲା ଏବଂ ପରେ ନିଜକୁ ଠିକ୍ କରି ଭାବିଲା: ଦେଖରେ ବାପୁ ! ଶଳା ପ୍ରତିଭା କେଉଁକାଳେ ଲୁଚି ରହିଲାଣି !

ଅନିରୁଦ୍ଧ ଜାଣେ ସାହିତ୍ୟିକ ବିଶେଷ କରି କବି ବା ଗାଳ୍ପିକଙ୍କର କିଛି ମ୍ୟାନିଆ ଥାଏ, ତଥା ପୋଷାକପତ୍ରରେ କିଛିଟା ବ୍ୟତିକ୍ରମ, କେମିତି କେତେବେଳେ ସାମାନ୍ୟ ଦାଢ଼ି ଛାଡ଼ି ଦେବା, ଝିଅଙ୍କ ସାଙ୍ଗରେ କଥାବାର୍ତ୍ତାରେ କିଛିଟା ରୋମାଣ୍ଟିକ୍ ହେବା ଇତ୍ୟାଦି। ସେ ସବୁ ସହିତ ଯାହା ସେଦିନ ତା ଭିତରେ ଟକ୍‌ମକ୍ କରୁଥିଲା ତାହା ତାହାର ସ୍ୱାତନ୍ତ୍ର୍ୟବୋଧ। ସେ ନିଶ୍ଚିତ ଥିଲା କୌଣସି ନା କୌଣସି କାଗଜରେ ପ୍ରକାଶ ପାଇବ। ସାହିତ୍ୟିକଙ୍କର ବିଦେଶ ଯାତ୍ରା ଓ ଡ଼ିସେମ୍ବର ରାତି ଚାରିଟାରେ ପ୍ରବଳ ଶୀତ ସତ୍ତ୍ୱେ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କର ରେଲ୍‌ବାଇ ଷ୍ଟେସନରେ ବିଦାୟ ସମ୍ବର୍ଦ୍ଧନା।

ଅନିରୁଦ୍ଧ ଉତ୍ତେଜିତ ହେଇପଡୁଥିଲା ଓ ବନ୍ଧୁମାନଙ୍କୁ ଦେଖିଲେ 'ହ୍ୟାଲୋ, ସି ୟୁଉ' କହି ତା ହାତରେ ସମୟ ବିଶେଷ ନାହିଁର ଧାରଣା ଦେଇଥିଲା।

ଆଉ ମାତ୍ର କେତେ ଘଣ୍ଟା ପରେ ଅନିରୁଦ୍ଧ ଭିନ୍ନ ଏକ ପରିବେଶକୁ ଚାଲିଯିବ। ତା'ର ପରିଚୟ ହେବ ଅନିରୁଦ୍ଧ ନୁହେଁ, ଜଣେ ବିଶିଷ୍ଟ ସାହିତ୍ୟିକ। ସେ ଅଳ୍ପ କଥା କହିବ। ଆବଶ୍ୟକ ସ୍ଥଳେ ହସିବ। ଦୁଇ ହାତ ଯୋଡ଼ି ନମସ୍କାର ପରିବର୍ତ୍ତେ 'ହେଣ୍ଡସେକ୍' କରି 'ଆଇ ଆମ୍ ଗ୍ଲାଡ୍ ଟୁ ମିଟ୍ ୟୁ'- ଏମିତି କେତେ କଥା। କାରଣ ଅନିରୁଦ୍ଧ ଜାଣିଛି ମୁହଁ ଖୋଲି ଦେଲେ ସେ ଅନିରୁଦ୍ଧଟିଏ ବୋଲି ଧରା ପଡ଼ିଯିବ। ତେଣୁ ତା'ର ଭାବମୂର୍ତ୍ତିକୁ ଧରି ରଖିବା ପାଇଁ ସେ ଗାଡ଼ିରେ ଚଢ଼ିବା ପୂର୍ବରୁ ତା'ର ଷ୍ଟ୍ରାଟେଜି ଠିକ୍ କରିନେଲା।

ରାତି ଚାରିଟା, ଶୀତରାତି, ପ୍ଲାଟଫର୍ମରେ କାକୁସ୍ଥ ମଣିଷ କେତୋଟି ବିକ୍ଷିପ୍ତ ଥୁଜା ଗଛଟିମାନଙ୍କ ପରି ବସିଥିଲେ ଏବଂ ଅନିରୁଦ୍ଧର ସାମ୍ପ୍ରତିକ ଗୁରୁତ୍ୱକୁ ଉପଲବ୍ଧି କରିଥିବା ହେତୁ ହେଉ କିମ୍ବା ତା'ର ଅସହାୟତାର ସହାନୁଭୂତିରୁ, ତା' ଅନ୍ତରଙ୍ଗ ଯୁବ ବନ୍ଧୁଟିଏ ଭାଇ ପରି ପାଖରେ ଲାଗି ରହିଥିଲା। ଅନିରୁଦ୍ଧ କେତୋଟି ଇଂରାଜୀ ପତ୍ରିକା କିଣିଲା। ସେ ଏଇଥି ପାଇଁ କିଣିଲା, ପତ୍ରିକା କେତୋଟି ପଢୁ ନ ପଢୁ, ଅନ୍ତତଃ ସେ ଯେ ଜଣେ ଇଣ୍ଟେଲେକଚୁଆଲ୍ ଏ ଧାରଣା ଅନ୍ୟ ଯାତ୍ରୀମାନେ ଭାବିପାରନ୍ତି।

ଅନିରୁଦ୍ଧ ଦୁଇ କପ୍ ଚା ମଗାଇ ବନ୍ଧୁ ହାତରେ କପ୍‌ଟେ ଧରାଇ ଦେଲା। ଚା'ଟା ବାରମ୍ବାର ଆଞ୍ଚରେ ବସି ତା'ର ସ୍ୱାଭାବିକ ସ୍ୱାଦ ହରାଇଥିଲା। ବିଶେଷ କରି ଷ୍ଟେସନ୍ ଚା! ପଇସା ଦେଲାବେଳେ ଭେଣ୍ଡରକୁ ବିରକ୍ତ ହେଲା ଚା'ର କ୍ୱାଲିଟି ପାଇଁ। ପରେ ଖଣ୍ଡିଏ ସିଗ୍ରେଟରେ ନିଆଁ ଧରାଇ ସେ ଥୁଜା ଗଛମାନଙ୍କ ପରି ଦିଶୁଥିବା ଲୋକଙ୍କ ଉପରେ ମନେ ମନେ ବିରକ୍ତ ହୋଇଗଲା: ତୁମେ ଶଳେ ଏଇପରି ଖୋଳପା ଭିତରେ

କୁଙ୍କୁରିକାଙ୍କୁରି ହୋଇ ବସିଥିବ । ତମ ଜୀବନରେ ଉନ୍ନତି ନାହିଁ । ତମ ଭାଷାକୁ ବଙ୍ଗାଳି ଚୋରିକରି ନେବେ... ସଢ଼େଇକଳା ଖରସୁଆଁକୁ ବିହାରୀ ଓ କୁଟିଆ ଗ୍ରାମ ପୁଞ୍ଜକୁ ଦାକ୍ଷିଣୀ... ତମ ନିଜ କସ୍ତୁରୀ ବାସ୍ନା ଯେତେବେଳେ ଠାବ କରି ପାରୁନା ତମେ ଆଉ କେତେ ବାଟ ଯାଇପାରିବ !

ପ୍ରଥମ ଘଣ୍ଟା ସୂଚନା ଦେଲା ସମୟ ହୋଇଗଲା । ଅନିରୁଦ୍ଧ ଅଧିକ ଉତ୍ତେଜିତ ହେଲା । କେରଳର ଜୀବନଧାରା ଅନେକାଂଶରେ କସ୍ମପଲିଟାନ । ସେଠାରେ ଖ୍ରୀଷ୍ଟିଆନ୍ ସଂଖ୍ୟା ଅଧିକ । ଶିକ୍ଷାରେ ସେ ଲୋକମାନେ ଶୀର୍ଷ ସ୍ଥାନରେ ବୋଲି ତାଙ୍କର ସମାଜ ଓ ସାମାଜିକ ଜୀବନରେ ରକ୍ଷଣଶୀଳତା ଅପେକ୍ଷା ପରମିସିଭନେସ୍ ଅଧିକ । ଗୋଟିଏ ମୃଦୁ ଶିହରଣ ଅନିରୁଦ୍ଧ ଦେହରେ ଖେଳିଗଲା ଓ ଗୋଟାଏ କିଶୋର ପରି ଅନେକ କାଞ୍ଚନିକ ସ୍ୱପ୍ନରେ ସେ ବୁଡ଼ିଗଲା-କୋଭାଲମ୍ ବିଚରେ ଅସଂଖ୍ୟ ହିପ୍‌ପୀ ତରୁଣ ତରୁଣୀ ପ୍ରାୟ ଉଲଗ୍ନ ଅବସ୍ଥାରେ ବାଲିରେ ଗଡ଼ନ୍ତି, ପୋର୍ଟ ବିଚ୍‌ର ନେହେରୁ ପାର୍କରେ ସନ୍ଧ୍ୟା ଛ'ଟାରେ ମଧ କଲ୍‌ଗାର୍ଲମାନେ ସାଦର ନିମନ୍ତିତ ଜଣାନ୍ତି । ହୋଟେଲମାନଙ୍କରେ ଯାହାକୁ ଯେତେ । ଅନିରୁଦ୍ଧ ଅନିରୁଦ୍ଧକୁ କହିଲା, ଠିକ୍ ଧରିନେବୁରେ ଗାଇଡ୍ ।

ଗାଡ଼ି ଆଉଟ୍ ହେବାର ବେଲ୍ ହେଲା ।

କୁଲି ଚାହିଁଲା ତ୍ରିଭାନ୍ଦ୍ରମ୍ ବଗି ଅଟକୁଥିବା ସ୍ଥାନକୁ ଓ ଅନିରୁଦ୍ଧର କୌଣସି ଆଦେଶକୁ ଉପେକ୍ଷା କରି ତା'ର ବେଡ଼ିଂ ଓ ବ୍ରିଫ୍‌କେଶକୁ ମୁଣ୍ଡରେ ଥୋଇ ଚାଲିଲା । ଅନିରୁଦ୍ଧ ସହିତ ତା'ର ଯୁବବନ୍ଧୁ କୁଲିଟିକୁ ଅନୁସରଣ କଲେ । ଅନିରୁଦ୍ଧ ଦେଖିଲା ଠିକ୍ ସେହି ସ୍ଥାନରେ ଅନ୍ୟ ଏକ ଯୁବତୀ ଠିଆ ହୋଇଛି ତା'ର ଟ୍ରଙ୍କ, କେତୋଟି ବାସ୍‌କେଟ୍ ଓ ଅନ୍ୟାନ୍ୟ ଆସବାସପତ୍ର ସହିତ । ଅନିରୁଦ୍ଧ ଶୀତର ପ୍ରକୋପରୁ ମୁକ୍ତହେଲା ଓ ତରୁଣୀକୁ ଚାହିଁ ସିଗ୍ରେଟ୍‌ରେ ନିଆଁ ଧରାଇଲା । ଷ୍ଟେସନ୍‌ର ଫ୍ଳୋରୋସେଣ୍ଟ ଆଲୋକରେ ଅନିରୁଦ୍ଧ ଦେଖିଲା ଯୁବତୀ ମୁହଁରେ ବ୍ରଣଟିଏ ସ୍ୱଷ୍ଟ ଓ ଭାଇଟାଲ୍ ଷ୍ଟାଟିଷ୍ଟିକ୍‌ସ ଆକର୍ଷଣୀୟ । ତରୁଣୀଟି ଦୁଇଟି ଅସହାୟ ଆଖିରେ ଅନିରୁଦ୍ଧକୁ ମଧ ଚାହିଁଲା ।

(ଘୋର ଜଙ୍ଗଲରେ ଆକସ୍ମିକ ଝଡ଼ବର୍ଷାର ସୂଚନା । ମୃଗୟା-ବିନୋଦୀ ରାଜକୁମାରଙ୍କ ଅଶ୍ୱ ଚଞ୍ଚଳ ହେଲା ଏବଂ ତା'ର ଗତି ବେନିୟମିତ ହୋଇଗଲା । ପାତ୍ର ମନ୍ତ୍ରୀ ଓ ଅନ୍ୟାନ୍ୟ ପାର୍ଶଦ ତଥା ଦୁନ୍ଦୁଭି କାହାଳୀ ବାଦନକାରୀମାନେ ବିପର୍ଯ୍ୟସ୍ତ ହେଲେ । ଆତ୍ମରକ୍ଷାର ଅନିଶ୍ଚିତ ଆଶଙ୍କାରେ ପ୍ରତ୍ୟେକ ପ୍ରତ୍ୟେକଠାରୁ ଦୂରକୁ ଚାଲିଗଲେ । ଝଡ଼ବର୍ଷା କମିଗଲା । ରାଜକୁମାର ପାତ୍ରମନ୍ତ୍ରୀଙ୍କୁ ହରାଇ ଏକୁଟିଆ ଥିଲାବେଳେ ଅଳ୍ପ ଦୂରରେ

ଅନିରୁଦ୍ଧ ଜାଣେ ସାହିତ୍ୟିକ ବିଶେଷ କରି କବି ବା ଗାଳ୍ପିକଙ୍କର କିଛି ମ୍ୟାନିଆ ଥାଏ, ତଥା ପୋଷାକପତ୍ରରେ କିଛିଟା ବ୍ୟତିକ୍ରମ, କେମିତି କେତେବେଳେ ସାମାନ୍ୟ ଦାଢ଼ି ଛାଡ଼ି ଦେବା, ଝିଅଙ୍କ ସାଙ୍ଗରେ କଥାବାର୍ତ୍ତାରେ କିଛିଟା ରୋମାଣ୍ଟିକ୍ ହେବା ଇତ୍ୟାଦି । ସେ ସବୁ ସହିତ ଯାହା ସେଦିନ ତା ଭିତରେ ଟକ୍‌ମକ୍ କରୁଥିଲା ତାହା ତାହାର ସ୍ୱାତନ୍ତ୍ର୍ୟବୋଧ । ସେ ନିଶ୍ଚିତ ଥିଲା କୌଣସି ନା କୌଣସି କାଗଜରେ ପ୍ରକାଶ ପାଇବ । ସାହିତ୍ୟିକଙ୍କର ବିଦେଶ ଯାତ୍ରା ଓ ଡ଼ିସେମ୍ବର ରାତି ଚାରିଟାରେ ପ୍ରବଳ ଶୀତ ସତ୍ତ୍ୱେ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କର ରେଲ୍‌ବାଇ ଷ୍ଟେସନରେ ବିଦାୟ ସମ୍ବର୍ଦ୍ଧନା ।

ଅନିରୁଦ୍ଧ ଉତ୍ତେଜିତ ହେଇପଡୁଥିଲା ଓ ବନ୍ଧୁମାନଙ୍କୁ ଦେଖିଲେ 'ହ୍ୟାଲୋ, ସି ୟୁଉ' କହି ତା ହାତରେ ସମୟ ବିଶେଷ ନାହିଁର ଧାରଣା ଦେଇଥିଲା ।

ଆଉ ମାତ୍ର କେତେ ଘଣ୍ଟା ପରେ ଅନିରୁଦ୍ଧ ଭିନ୍ନ ଏକ ପରିବେଶକୁ ଚାଲିଯିବ । ତା'ର ପରିଚୟ ହେବ ଅନିରୁଦ୍ଧ ନୁହେଁ, ଜଣେ ବିଶିଷ୍ଟ ସାହିତ୍ୟିକ । ସେ ଅଳ୍ପ କଥା କହିବ । ଆବଶ୍ୟକ ସ୍ଥଳେ ହସିବ । ଦୁଇ ହାତ ଯୋଡ଼ି ନମସ୍କାର ପରିବର୍ତ୍ତେ 'ହେଣ୍ଡସେକ୍' କରି 'ଆଇ ଆମ୍ ଗ୍ଲାଡ୍ ଟୁ ମିଟ୍ ୟୁ'– ଏମିତି କେତେ କଥା । କାରଣ ଅନିରୁଦ୍ଧ ଜାଣିଛି ମୁହଁ ଖୋଲି ଦେଲେ ସେ ଅନିରୁଦ୍ଧଟିଏ ବୋଲି ଧରା ପଡ଼ିଯିବ । ତେଣୁ ତା'ର ଭାବମୂର୍ତ୍ତିକୁ ଧରି ରଖିବା ପାଇଁ ସେ ଗାଡ଼ିରେ ଚଢ଼ିବା ପୂର୍ବରୁ ତା'ର ଷ୍ଟ୍ରାଟେଜି ଠିକ୍ କରିନେଲା ।

ରାତି ଚାରିଟା, ଶୀତରାତି, ପ୍ଲାଟଫର୍ମରେ କାକୁସ୍ଥ ମଣିଷ କେତୋଟି ବିକ୍ଷିପ୍ତ ଥୁଜା ଗଛଟିମାନଙ୍କ ପରି ବସିଥିଲେ ଏବଂ ଅନିରୁଦ୍ଧର ସାମ୍ପ୍ରତିକ ଗୁରୁତ୍ୱକୁ ଉପଲବ୍ଧି କରିଥିବା ହେତୁ ହେଉ କିମ୍ବା ତା'ର ଅସହାୟତାର ସହାନୁଭୂତିରୁ, ତା' ଅନ୍ତରଙ୍ଗ ଯୁବ ବନ୍ଧୁଟିଏ ଭାଇ ପରି ପାଖରେ ଲାଗି ରହିଥିଲା । ଅନିରୁଦ୍ଧ କେତୋଟି ଇଂରାଜୀ ପତ୍ରିକା କିଣିଲା । ସେ ଏଇଥି ପାଇଁ କିଣିଲା, ପତ୍ରିକା କେତୋଟି ପଢୁ ନ ପଢୁ, ଅନ୍ତତଃ ସେ ଯେ ଜଣେ ଇଣ୍ଟେଲେକଚୁଆଲ୍ ଏ ଧାରଣା ଅନ୍ୟ ଯାତ୍ରୀମାନେ ଭାବିପାରନ୍ତି ।

ଅନିରୁଦ୍ଧ ଦୁଇ କପ୍ ଚା ମଗାଇ ବନ୍ଧୁ ହାତରେ କପ୍‌ଟେ ଧରାଇ ଦେଲା । ଚା'ଟା ବାରମ୍ବାର ଆଞ୍ଚରେ ବସି ତା'ର ସ୍ୱାଭାବିକ ସ୍ୱାଦ ହରାଇଥିଲା । ବିଶେଷ କରି ଷ୍ଟେସନ୍ ଚା ! ପଇସା ଦେଲାବେଳେ ଭେଣ୍ଡରକୁ ବିରକ୍ତ ହେଲା ଚା'ର କ୍ୱାଲିଟି ପାଇଁ । ପରେ ଖଣ୍ଡିଏ ସିଗ୍ରେଟରେ ନିଆଁ ଧରାଇ ସେ ଥୁଜା ଗଛମାନଙ୍କ ପରି ଦିଶୁଥିବା ଲୋକଙ୍କ ଉପରେ ମନେ ମନେ ବିରକ୍ତ ହୋଇଗଲା: ତୁମେ ଶଳେ ଏଇପରି ଖୋଳପା ଭିତରେ

କୁଙ୍କୁରିକାଙ୍କୁରି ହୋଇ ବସିଥିବ । ତମ ଜୀବନରେ ଉନ୍ନତି ନାହିଁ । ତମ ଭାଷାକୁ ବଙ୍ଗାଳି ଚୋରିକରି ନେବେ... ସଢ଼େଇକଳା ଖରସୁଆଁକୁ ବିହାରୀ ଓ କୁଟିଆ ଗ୍ରାମ ପୁଞ୍ଜକୁ ଦାକ୍ଷିଣୀ... ତମ ନିଜ କସ୍ତୁରୀ ବାସ୍ନା ଯେତେବେଳେ ଠାବ କରି ପାରୁନା ତମେ ଆଉ କେତେ ବାଟ ଯାଇପାରିବ !

ପ୍ରଥମ ଘଣ୍ଟା ସୂଚନା ଦେଲା ସମୟ ହୋଇଗଲା । ଅନିରୁଦ୍ଧ ଅଧିକ ଉତ୍ତେଜିତ ହେଲା । କେରଳର ଜୀବନଧାରା ଅନେକାଂଶରେ କସ୍ମପଲିଟାନ । ସେଠାରେ ଖ୍ରୀଷ୍ଟିଆନ୍ ସଂଖ୍ୟା ଅଧିକ । ଶିକ୍ଷାରେ ସେ ଲୋକମାନେ ଶୀର୍ଷ ସ୍ଥାନରେ ବୋଲି ତାଙ୍କର ସମାଜ ଓ ସାମାଜିକ ଜୀବନରେ ରକ୍ଷଣଶୀଳତା ଅପେକ୍ଷା ପରମିସିଭନେସ୍ ଅଧିକ । ଗୋଟିଏ ମୃଦୁ ଶିହରଣ ଅନିରୁଦ୍ଧ ଦେହରେ ଖେଳିଗଲା ଓ ଗୋଟାଏ କିଶୋର ପରି ଅନେକ କାଳ୍ପନିକ ସ୍ୱପ୍ନରେ ସେ ବୁଡ଼ିଗଲା-କୋଭାଲମ୍ ବିଚରେ ଅସଂଖ୍ୟ ହିପ୍‌ପୀ ତରୁଣ ତରୁଣୀ ପ୍ରାୟ ଉଲଗ୍ନ ଅବସ୍ଥାରେ ବାଲିରେ ଗଡ଼ନ୍ତି, ପୋର୍ଟ ବିଚ୍‌ର ନେହେରୁ ପାର୍କରେ ସନ୍ଧ୍ୟା ଛ'ଟାରେ ମଧ କଲ୍‌ଗାର୍ଲମାନେ ସାଦର ନିମନ୍ତ୍ରିତ ଜଣାନ୍ତି । ହୋଟେଲମାନଙ୍କରେ ଯାହାକୁ ଯେତେ । ଅନିରୁଦ୍ଧ ଅନିରୁଦ୍ଧକୁ କହିଲା, ଠିକ୍ ଧରିନେବୁରେ ଗାଇଡ୍ ।

ଗାଡ଼ି ଆଉଟ୍ ହେବାର ବେଲ୍ ହେଲା ।

କୁଲି ଚାହିଁଲା ତ୍ରିଭାନ୍ଦ୍ରମ୍ ବଗି ଅଟକୁଥିବା ସ୍ଥାନକୁ ଓ ଅନିରୁଦ୍ଧର କୌଣସି ଆଦେଶକୁ ଉପେକ୍ଷା କରି ତା'ର ବେଡ଼ିଂ ଓ ବ୍ରିଫ୍‌କେଶକୁ ମୁଣ୍ଡରେ ଥୋଇ ଚାଲିଲା । ଅନିରୁଦ୍ଧ ସହିତ ତା'ର ଯୁବବନ୍ଧୁ କୁଲିଟିକୁ ଅନୁସରଣ କଲେ । ଅନିରୁଦ୍ଧ ଦେଖିଲା ଠିକ୍ ସେହି ସ୍ଥାନରେ ଅନ୍ୟ ଏକ ଯୁବତୀ ଠିଆ ହୋଇଛି ତା'ର ଟ୍ରଙ୍କ, କେତୋଟି ବାସ୍‌କେଟ୍ ଓ ଅନ୍ୟାନ୍ୟ ଆସବାସପତ୍ର ସହିତ । ଅନିରୁଦ୍ଧ ଶୀତର ପ୍ରକୋପରୁ ମୁକ୍ତହେଲା ଓ ତରୁଣୀକୁ ଚାହିଁ ସିଗ୍ରେଟ୍‌ରେ ନିଆଁ ଧରାଇଲା । ଷ୍ଟେସନ୍‌ର ଫ୍ଲୋରୋସେଣ୍ଟ ଆଲୋକରେ ଅନିରୁଦ୍ଧ ଦେଖିଲା ଯୁବତୀ ମୁହଁରେ ବ୍ରଣଟିଏ ସ୍ପଷ୍ଟ ଓ ଭାଇଟାଲ୍ ଷ୍ଟାଟିଷ୍ଟିକ୍‌ସ ଆକର୍ଷଣୀୟ । ତରୁଣୀଟି ଦୁଇଟି ଅସହାୟ ଆଖିରେ ଅନିରୁଦ୍ଧକୁ ମଧ୍ୟ ଚାହିଁଲା ।

(ଘୋର ଜଙ୍ଗଲରେ ଆକସ୍ମିକ ଝଡ଼ବର୍ଷାର ସୂଚନା । ମୃଗୟା-ବିନୋଦୀ ରାଜକୁମାରଙ୍କ ଅଶ୍ୱ ଚଞ୍ଚଳ ହେଲା ଏବଂ ତା'ର ଗତି ବେନିୟମିତ ହୋଇଗଲା । ପାତ୍ର ମନ୍ତ୍ରୀ ଓ ଅନ୍ୟାନ୍ୟ ପାର୍ଶଦ ତଥା ଦୁନ୍ଦୁଭି କାହାଳୀ ବାଦନକାରୀମାନେ ବିପର୍ଯ୍ୟସ୍ତ ହେଲେ । ଆତ୍ମରକ୍ଷାର ଅନିଶ୍ଚିତ ଆଶଙ୍କାରେ ପ୍ରତ୍ୟେକ ପ୍ରତ୍ୟେକଠାରୁ ଦୂରକୁ ଚାଲିଗଲେ । ଝଡ଼ବର୍ଷା କମିଗଲା । ରାଜକୁମାର ପାତ୍ରମନ୍ତ୍ରୀଙ୍କୁ ହରାଇ ଏକୁଟିଆ ଥିଲାବେଳେ ଅଳ୍ପ ଦୂରରେ

ଜଣେ ନାରୀର ଚାପା କଣ୍ଠରେ କ୍ରନ୍ଦନ ଧ୍ୱନି ଶୁଣିଲେ । ରାଜକୁମାର ସେହି ଦିଗକୁ ଅଗ୍ରସର ହେଲେ, ଦେଖିଲେ ରାଜକୁମାରୀ ଅନୁରୂପ ମୃଗୟା ପୋଷାକରେ । ତାଙ୍କର ପାତ୍ରମନ୍ତ୍ରୀଙ୍କର ସନ୍ଧାନ ନାହିଁ ଓ ଏକଦା ଅତି ଦୁର୍ଦ୍ଧର୍ଷ ମନେ ହେଉଥିବା କୁମାରୀ ସମ୍ପ୍ରତି ଏକାନ୍ତ ଅବଳାରେ ପରିଣତ ହୋଇଛି । ରାଜକୁମାରଙ୍କର ସମସ୍ତ ସହାନୁଭୂତି ସତ୍ତ୍ୱେ ଅଜଣାର ପ୍ରାଚୀର କିଛି ସମୟ ପାଇଁ ତାଙ୍କୁ ନୀରବ ରହିବାକୁ ବାଧ୍ୟ କଲା । ରାଜକୁମାରୀ ଗଣ୍ଡଦେଶର ଲୁହ କ୍ରମେ ଶୁଖିଯାଇ ଆଖି ଦୁଇଟିକୁ ଅସହାୟତାରେ ଘାରିଦେଲା ।)

ଟ୍ରେନ୍ ଇନ୍ କଲା ପ୍ଲାଟ୍‌ଫର୍ମରେ । ଅନିରୁଦ୍ଧ ସହିତ ଏକମାତ୍ର ସେ ଯୁବତୀ ଯାତ୍ରୀଟି ଚଞ୍ଚଳ ହେଲା କମ୍ପାର୍ଟମେଣ୍ଟରେ ପଶିବାକୁ । ଗାଡ଼ି ସେଠାରେ ମାତ୍ର ଏକ ମିନିଟ୍ ଅଟକି ରହେ । କୁଲି ଅନିରୁଦ୍ଧର ଜିନିଷ ସହିତ ଗାଡ଼ିରେ ପଶିଗଲା, ଅଥଚ ଯୁବତୀଟି ଠିଆ ହେଲା ତା'ର କୁଲି ନ ଥିବାରୁ । ଅନିରୁଦ୍ଧ ଓ ତା'ର ନିର୍ଦ୍ଦେଶରେ ଯୁବବନ୍ଧୁଟି ଯୁବତୀକୁ ଗାଡ଼ିରେ ପଶିବାରେ ସାହାଯ୍ୟ କଲେ । ଯୁବତୀଟି 'ଥ୍ୟାଙ୍କ ୟୁ' କହିଲା । ତା'ର ଉଚ୍ଚାରଣ ମନେ ହେଲା ସେ ଅଣଓଡ଼ିଆ । ଯୁବ ବନ୍ଧୁ ଅନିରୁଦ୍ଧର ଶୁଭକାମନା କରି ବିଦାୟ ନେଲା ଓ ଗୋଟିଏ ଖେଚଡ଼ ପିଲା ଭଦ୍ର ଆଚରଣ କଲା ପରି ଗାଡ଼ି ଧୀରେ ଧୀରେ ଚାଲିବାକୁ ଆରମ୍ଭ କଲା ।

କିଛି ସମୟ ଅନ୍ତତଃ ଶୁଆଯାଇ ପାରେ, ସେ ପାଇଁ ଅନିରୁଦ୍ଧ ତା'ର ବିଛଣା ଖୋଲିଲା । ସବୁ ଠିକ୍‌ଠାକ୍ କରି ସେ ବିଛଣାରେ ଦେହଟାକୁ ଲୋଟାଇ ଦେଲା ପରେ ଦେଖିଲା ତା ବର୍ଥ ନିକଟରେ ଯୁବତୀଟି ଠିଆ ହୋଇଛି । ଅନିରୁଦ୍ଧ ଉଠି ବସିଲା ଓ ଅନୁଧ୍ୟାନ କଲା ଯୁବତୀଟି କିଛି ଗୋଟିଏ କହିବା, ଅନୁରୋଧ କରିବାର ଅବସ୍ଥାରେ ଅଛି ।

(ଅନେକ ସମୟ ପରେ ରାଜକୁମାରୀ ମୁହଁ ଖୋଲିଲା । ମୁଁ ଅସହାୟା, ଏକାକିନୀ ମୃଗୟାରେ ଆସି ଦିଗହରା ହୋଇଛି । ଏ ଘନ ଜଙ୍ଗଲରେ ଅସଂଖ୍ୟ ଅସୁରମାନଙ୍କର ପ୍ରାଦୁର୍ଭାବ । ମୋ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ମୋତେ ସେମାନେ ଜୀବନରେ ମାରି ନ ପାରନ୍ତି, କିନ୍ତୁ ମୋର ପିତା ମାତାଙ୍କଠାରୁ ଦୂରକୁ ନେଇଯିବେ ନିଶ୍ଚୟ ।

ରାଜକୁମାର ଅଭୟ ଦେଲେ: କିଛି ଭୟ ନାହିଁ କୁମାରୀ- ମୋ ହାତରେ ଏହି ଶାଣିତ ତରବାରୀ ଥିବା ପର୍ଯ୍ୟନ୍ତ କେହି ଦୁର୍ବୃତ୍ତ ତୁମର କେଶ ମଧ୍ୟ ସ୍ପର୍ଶ କରି ପାରିବେ ନାହିଁ । ମୋ ହୃଦୟରେ ତୁମରି ସ୍ଥାନ ସଂରକ୍ଷିତ କୁମାରୀ, ଭୟ ନାହିଁ ।)

ଯୁବତୀଟି ଅନୁରୋଧ କଲା: ଇଫ୍ ୟୁ ପ୍ଲିଜ୍ ଅକୁପାଇ ମାଇଁ ବର୍ଥ... ଅନିରୁଦ୍ଧ ବୁଝିଗଲା ତା'ର ଠିକ୍ ଉପର ବର୍ଥଟି ଯୁବତୀର ଓ ତା'ର ଉପକୁ ଚଢ଼ିବା- ଓହ୍ଲାଇବା ଗୋଟିଏ ଅଶୋଭନୀୟ ଦୃଶ୍ୟ; ସେ ପାଇଁ ସେ ବର୍ଥ ବଦଳେଇବା ପାଇଁ ଅନିରୁଦ୍ଧକୁ ଅନୁରୋଧ କରୁଛି । 'ହୁରା' ପରିବର୍ତ୍ତେ ଅନିରୁଦ୍ଧ କହିଲା, ସେଥିରେ କ'ଣ ଅଛି; ଆପଣ ଉପରକୁ ଯାଆନ୍ତୁ ନା । ଅଥଚ ଯୁବତୀଟି ତଥାପି ନୀରବ । ଅନିରୁଦ୍ଧ ତା'ର ଭୁଲ୍ ବୁଝି ପାରିଲା 'ଓ ଦେଟ୍ସ୍ ଅଲ୍‌ରାଇଟ୍' କହି ବିଛଣା ଉପରକୁ ଟେକିନେଲା ।

ଉପରେ ଶୋଇ ଅନିରୁଦ୍ଧ ଲକ୍ଷ୍ୟ କଲା ଯୁବତୀଟି କୃତଜ୍ଞତାରେ ବୁଡ଼ିଯାଇଛି ଓ ମୁହଁରେ ପୂର୍ଣ୍ଣ ତୃପ୍ତି ସହିତ ତା'ର କରୁଣା ତଥା ଜିନିଷପତ୍ର ସଜାଡୁଛି ।

ସକାଳ । ଅନିରୁଦ୍ଧ ଦିଗ ନିର୍ଣ୍ଣୟ କରି ପାରୁ ନଥିଲା । ତା'ର ଭୂଗୋଳ ତଥା ଦେଶର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ କୌଣସି ଜ୍ଞାନ ନଥିଲା । ସେ କେବଳ ଏତକ ଜାଣିଥିଲା, ଟ୍ରେନ୍‌ଟି ମାଡ୍ରାସ ଅଭିମୁଖେ ଯାତ୍ରା କରୁଛି ଏବଂ ସେଠାରେ ବାର ଘଣ୍ଟା ବିଶ୍ରାମ ପରେ ପୁନର୍ବାର ଗୋଟିଏ ରାତି କଟାଇବାକୁ ପଡ଼ିବ ଟ୍ରେନ୍‌ରେ । ମୋଟାମୋଟି ଦୁଇଟି ସମ୍ପୂର୍ଣ୍ଣ ଦିନ ଓ ରାତି ।

ଅନିରୁଦ୍ଧ ତୁଙ୍ଗିକରି ତଳକୁ ଚାହିଁଲା । ଯୁବତୀଟି ଗୋଡ଼ ଦୁଇଟି ଢାକି ଦେଇଛି ଓ ଘୋଡ଼ଣୀ ଖଣ୍ଡକରେ ଏମିତି ଶରୀରକୁ ଆଚ୍ଛାଦିତ କରିଛି, ଫଳରେ ତା'ର ମୁହଁ, ଗୋଡ଼ ଦୁଇଟି ଓ ପିଠିର କିଛି ଅଂଶ ଦିଶୁଛି । ତା'ର ନିଦରୁ ଜଣା ଯାଉଥିଲା ସେ ଆହୁରି କିଛି ସମୟ ଶୋଇବ । ହଠାତ୍ ସାମ୍ନା ବର୍ଥର କମ୍ବଳର ସ୍ତୂପରୁ ଶୁଣାଗଲା । 'ଆରେ ହେ ଛୋଟୁ ! ଉଠଣା...' ପରେ ପରେ କମ୍ବଳ ଟେକି ସେ ଉଠିଲା । ଲୋକଟି ସରଦାରଜୀ, ବିରାଟକାୟ ! ବିଲିୟାଡ଼୍ କଣ୍ଟ୍ରାକ୍ଟର । ଅନିରୁଦ୍ଧ ଜାଣିବାକୁ ପାଇଲା ସେ ତା'ର ସରଞ୍ଜାମ ଧରି ଏର୍ଣ୍ଣାକୁଲମ ଯାଉଛି ଦଶ ଦିନ ଧରି ଗୋଟିଏ ଟୁର୍ଣ୍ଣାମେଣ୍ଟର ବ୍ୟବସ୍ଥା କରିବାକୁ । ଛୋଟୁ ତା'ର ପୁଅ ଏବଂ ଆଉ ଜଣେ ମୁସଲମାନ ଭଦ୍ରଲୋକ ତା'ର 'ଲ୍ୟାଣ୍ଡଲର୍ଡ଼' । ଏମାନଙ୍କ ବ୍ୟତୀତ ଆମ ସେଇ ଆଠଟି ବର୍ଥରେ ଆଉ ଗୋଟିଏ ନବବିବାହିତା ଦମ୍ପତି ଥିଲେ । ତାଙ୍କ ଘର ଏର୍ଣ୍ଣାକୁଲମ୍ ଟାଉନ୍‌ରେ ଓ ଛୁଟି କାଟିବାକୁ ଘରକୁ ଫେରୁଥିଲେ- ସେ ରବି ନାୟାର୍ ! ନିଦରୁ ଉଠିଲା ପରେ ଏଇତକ ପରିଚୟ ସହିତ ଅନିରୁଦ୍ଧ ତା'ର ନିତ୍ୟକର୍ମ ସାରିଲା ।

(ରାଜକୁମାରୀ ନିଶ୍ଚିତ ନିରାପତ୍ତାରେ ଖଣ୍ଡିଏ ପଥର ଉପରେ ଶୋଇଯାଇଥିଲା । ରାଜକୁମାର କିନ୍ତୁ ସାରା ରାତି ଅନିଦ୍ରାରେ ରାଜକୁମାରୀର ଅବୟବକୁ ଚାହିଁ ସ୍ୱପ୍ନ

ଦେଖୁଥିଲେ । ଯଦି ରାଜକୁମାରୀ ଏବେ ଉଠିପଡ଼ନ୍ତା)

ଏଇ ସମୟରେ ଯୁବତୀଟି ନିଦରୁ ଉଠିଲା ଏବଂ ଗୋଡ଼ ଦୁଇଟି ଜାକି ନେଇ ଅନିରୁଦ୍ଧ ପାଇଁ ବସିବାର ସ୍ଥାନ ନୀରବରେ ନିର୍ଦ୍ଦେଶ କରିଦେଲା । ଅନିରୁଦ୍ଧ ବସି ପଡ଼ିଲା ପରେ ସେ ଖୁବ୍ କଷ୍ଟରେ ଭିଡ଼ିମୋଡ଼ି ହୋଇ ଉଠିଲା ଓ ସ୍ୱାଭାବିକ ହାଇଟିଏ ମାରି ଟ୍ରେନ୍‌ର ଝରକା କାଚ ଦେଇ ବାହାରକୁ ଚାହିଁଲା । ଅନିରୁଦ୍ଧ କିନ୍ତୁ ତାକୁ ଚାହିଁଥିଲା, ତା' ମୁହଁର ସେଇ ବ୍ରଣଟିକୁ, ବ୍ଲାଉଜ୍ ଭିତରୁ ଫୁଟି ଦିଶୁଥିବା ବ୍ରାର ସେପ୍‌କୁ । ଝରକାରେ ଗୋଟିଏ ଦୃଶ୍ୟର ପ୍ରତିଫଳନ ହେଲା ! ରବି ନାୟାର ତା'ର ଯୁବତୀ ସ୍ତ୍ରୀକୁ ଶୂନ୍ୟେ ଶୂନ୍ୟେ ଉଠାଇ ଆଣି ନିଜ ବର୍ଥର ପାଖ ଝରକା ନିକଟରେ ତାକୁ ଜାବୁଡ଼ି ଧରି ଅଜସ୍ର ଚୁମା ଖାଇଲା । ଠିକ୍ ସେତିକିବେଳେ ପାନରେ ଚୂନ ଲଗାଉ ଲଗାଉ ସର୍‌ଦାର୍‌ଜୀ ପୁନର୍ବାର ପାଟି କଲା, ଆରେ ହେ ଛୋଟୁ, ଅବି ସୂରଜ ନିକ୍‌ଲା ହେ, ଉଠଣା... ଓ ମୁସଲମାନ ଭଦ୍ରଲୋକ କିଂ ସାଇଜ୍ ସିଗ୍ରେଟ୍‌ରେ ନିଆଁ ଧରାଇ ସେ କମ୍ପାର୍ଟମେଣ୍ଟରେ ସମ୍ପୂର୍ଣ୍ଣ ଏକୁଟିଆ ଲୋକଟିଏ ପରି ଚୁପ୍‌ଚାପ୍ ବସିଥିଲା ।

(ରାଜକୁମାରୀର ନିଦ ଭାଙ୍ଗିଲା ବେଳକୁ ଦୁଇଟି ବଣୀପକ୍ଷୀ ରତିକ୍ରୀଡ଼ାରେ ମତ୍ତ ଥିଲେ ଓ ରାଜକୁମାର ଚାହିଁଲେ କୁମାରୀଙ୍କର ପୂର୍ଣ୍ଣ ପରିଚୟ ଜାଣିବାକୁ ।)

ଅନିରୁଦ୍ଧ ସେ ଦୃଶ୍ୟରୁ ମୁହଁ ଫେରାଇଲା ଓ ନିଜ ମନରେ ଶକ୍ତି ସଞ୍ଚୟ କଲା... ସେ ଯୁବତୀଟି ସହିତ କଥା କହିବ ଏବଂ ଆସନ୍ତା ଦୁଇଟି ରାତିକୁ ସ୍ୱପ୍ନରେ କଟାଇ ଦେବ: ୟୁ ଆର୍. ଫ୍ରମ୍... ?

-ଆର୍.ସି.ଇ. ଭୁବନେଶ୍ୱର ଟୁ ମାଇ ନେଟିଭ୍ ପ୍ଲେସ୍ ପୁଥେନ୍ କ୍ରସ୍... ମିନ୍‌ସ ନିଉ କ୍ରସ୍, ଏ ଭିଲେଜ୍‌ଏ ଫିଉ କିଲୋମିଟରସ୍ ଫ୍ରମ୍ ଏର୍ଣ୍ଣାକୁଲମ୍ ସିଟି...

ବାସ୍, ସ୍ତବ୍ଧ ଅନିରୁଦ୍ଧ । ଯାପରେ ଆଉ କ'ଣ ! ତା'ଛଡ଼ା ଝିଅଟିର ଇଂରାଜୀ ଉଚ୍ଚାରଣ ଏତେ ସୁନ୍ଦର ଥିଲା ତା ସହିତ ଅନିରୁଦ୍ଧ ଇଂରାଜୀରେ କଥାବାର୍ତ୍ତା କରିବାକୁ ସଙ୍କୁଚିତ ମନେ କଲା । ଝିଅଟିର ହିନ୍ଦୀ କଥନ ଭଙ୍ଗୀ ଯଥେଷ୍ଟ ମାର୍ଜିତ ଥିଲେ ବି ସେଥିରେ ଅନିରୁଦ୍ଧ ଅଧପନ୍ତରିଆ । ଅନିରୁଦ୍ଧ ଭାବିଲା ହୃଦୟକୁ ଯୋଡ଼ିବା ପାଇଁ ଏ ଭାଷାଟା କେତେ ବଡ଼ ପ୍ରତିବନ୍ଧକ । ଯଦି ସେଇ ପୁରୁଣା କାଳକୁ ଫେରି ହୋଇଯାନ୍ତା ଯେଉଁଠି କେବଳ ଚିତ୍ର ଓ ଠାରରେ ହୃଦୟ ସହିତ ହୃଦୟକୁ ଯୋଡ଼ି ଦେଇ ହୁଅନ୍ତା ! ଭାରତଟା କେତେ ବଡ଼, କେତେ ଉଚ୍ଚାରଣ ପଦ୍ଧତି ସେମାନଙ୍କର ।

ତଥାପି ଅନିରୁଦ୍ଧ ପ୍ରମାଣ କରିବାକୁ ଚାହିଁଲା ସେ ଜଣେ ଇଣ୍ଟେଲେକ୍‌ଚୁଆଲ ଓ ଇଂରାଜୀ ଉପରେ ତା'ର ଯଥେଷ୍ଟ କମାଣ୍ଡ ଅଛି । ତା'ର ପ୍ରମାଣ ପାଇଁ ମିଛରେ ସେ ତା'ର ବ୍ୟାଗ୍‌ରୁ ସାର୍ତ୍ତଙ୍କ 'ଆନାତୋଲା' ଓ 'ଇଣ୍ଟିମାସି' ବହି ଦୁଇ ଖଣ୍ଡ ବାହାର କରି ଖଣ୍ଡିଏ ଖୋଲି ପୃଷ୍ଠାରେ ଆଖି ବୁଲାଇଲା । ଯୁବତୀଟି ବିନା ବାକ୍ୟବ୍ୟୟରେ ପରିଚିତ ଲୋକଟିଏ ପରି ବହି ଖଣ୍ଡିଏ ଧରିଲା ଓ ବେଶ୍ ମନ ଦେଇ ପଢ଼ିବାକୁ ଲାଗିଲା । ଅନିରୁଦ୍ଧ କେମିତି ବିମର୍ଷ ହୋଇ ପଡ଼ିଲା ଏବଂ ବହିଟିକୁ ବନ୍ଦ କରି ଗୁରୁତର କିଛି ଚିନ୍ତା କଲା ପରି ପୋଜ୍ ନେଲା ।

-ୟୁ ଆର୍ ଫ୍ରମ୍ ଓରିଶା ଆଇ ଥିଙ୍କ୍...ୟୁୟୋ ଡ଼େଷ୍ଟିନେସନ୍ ପ୍ଲିସ୍...

-ଆଇ'ମ୍ ସ୍ପୋନ୍‌ସରଡ଼୍ ବାଇ ସେଣ୍ଟ୍ରାଲ ଏକାଡ଼େମୀ ଅଫ୍ ଲେଟର୍‌ସ... ଅନ୍ ଦ ଓ୍ୱେ ଟୁ କେରଲା ଟୁ ଷ୍ଟଡ଼ି ଦ ଲିଟରେଚର ଆଣ୍ଡ ଇଟ୍‌ସ ଇଂପାକ୍ଟ ଅନ୍ ସୋସିଆଲ୍ ଲାଇଫ୍- କେବଳ ସେ ଯୁବତୀକୁ ନୁହେଁ, କେରଳର ପ୍ରତ୍ୟେକ ସ୍ଥାନରେ ଏମିତି କିଛି କହିବାକୁ ମାନସିକ ପ୍ରସ୍ତୁତି କରିନେଇଥିଲା ଅନିରୁଦ୍ଧ । ଏଇ କେଇପଦ କଥାରେ ଅନିରୁଦ୍ଧ ଅନୁଭବ କଲା ସେଇ କମ୍ପାର୍ଟମେଣ୍ଟରେ ସେଇ କେବଳ ଜଣେ ବିଜ୍ଞ ଲୋକ । କାରଣ ସରଦାରଜୀଙ୍କ ଠାରୁ ସେ ନବଦମ୍ପତି ପର୍ଯ୍ୟନ୍ତ କେବଳ ଅନିରୁଦ୍ଧ ଓ ସେ ଯୁବତୀକୁ ଚାହୁଁଥିଲେ । ଅନିରୁଦ୍ଧର କୌଣସି ସଙ୍କୋଚ ନଥିଲା ଯେହେତୁ ଏହା ଓଡ଼ିଶାର କୌଣସି ସ୍ଥାନ ନୁହେଁ ।

ଆଇ ଥିଙ୍କ କେରଲା ଇସ୍ କସ୍‌ମପଲିଟାନ୍ ଇନ୍ ନେଚର ଆଣ୍ଡ ପରମିଶିଭ୍ ଠୁ... । ଯୁବତୀଟି କେମିତି ଏକ ଲାଜୁଆ ହସ ହସିଲା ଓ କହିଲା:

-ନଟ୍ ଫର୍ ଷ୍ଟ୍ରେଂଜର୍ସ... ।

ପୁନର୍ବାର ଅନିରୁଦ୍ଧ କାକୁସ୍ଥ । ନବଦମ୍ପତି ତାଙ୍କ ନିତ୍ୟକର୍ମ ସାରି ମାଡ୍ରାସରେ ବାହାରୁ ଥିଲେ କିଛି ସପିଂ ପାଇଁ । ଅନିରୁଦ୍ଧ ଯୁବତୀଟିକୁ (ଯାହାର ନାମ ଲଛମୀ ବୋଲି ସେ ଜାଣି ନେଇ ଥିଲା ଯା ମଧ୍ୟରେ) ପ୍ରସ୍ତାବ ଦେଲା କମ୍ପାର୍ଟମେଣ୍ଟରେ ବାର ଘଣ୍ଟା ବୋର୍ ହେବା ଅପେକ୍ଷା ଷଷ୍ଠ କ୍ରିକେଟ୍ ଟେଷ୍ଟ ଆଡ଼େ ଯିବାକୁ । ଲଛମୀ କହିଲା ଯେ କୌଣସି ମୁହୂର୍ତ୍ତରେ ତା'ର ବନ୍ଧୁ ଆସିପାରନ୍ତି ଓ କୋଚିନ୍ ପରିବର୍ତ୍ତେ ଏଇ ମାଡ୍ରାସରେ ତା'ର ଜର୍ଣ୍ଣି ବ୍ରେକ୍ ହେଇପାରେ । ତା'ଛଡ଼ା ତା ଦେହରେ ସେ ସାମାନ୍ୟ ଜ୍ୱର ଅନୁଭବ କରୁଥିଲା ।

-ଇଫ୍ ୟୁ ଡ଼ୋଣ୍ଟ୍ ମାଇଣ୍ଡ... କହି ନିଜର ଶାଲ୍‌ଟିକୁ କାଢ଼ି ଲଛ୍‌ମୀ ଆଡ଼କୁ ବଢ଼େଇଦେଲା ।

-ନୋ' ଥାଙ୍କ୍‌ସ । ଅନିରୁଦ୍ଧ ନୀରବ ରହିଲା ଓ ପରେ ପରେ ସେ ବହିଟିକୁ ଖୋଲି ପୁନର୍ବାର ପଢ଼ିବାକୁ ଚେଷ୍ଟା କଲା ।

କମ୍ପାର୍ଟମେଣ୍ଟଟି ପ୍ରାୟ ଫାଙ୍କା ହେଇଗଲା । ସରଦାରଜୀ, ଛୋଟୁ ଓ ତାଙ୍କ ଲ୍ୟାଣ୍ଡଲର୍ଡ଼ ଟେଷ୍ଟ କ୍ରିକେଟ୍ ଦେଖିବା ପାଇଁ ବାହାରି ଗଲେ । ଅନ୍ୟ ସିଟ୍ ଗୁଡ଼ିକ ଫାଙ୍କା ଥିଲେ ମଧ୍ୟ ଅନିରୁଦ୍ଧ ଲଛ୍‌ମୀ ଲମ୍ବି ଯାଇଥିବା ଗୋଡ଼ତଳର ସିଟ୍‌କୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲା ।

ସେ ପଢ଼ିବାର ଅଭିନୟ କରୁଥିଲା ।

ସେ ପଢ଼ି ପାରୁ ନଥିଲା ।

ଲଛ୍‌ମୀର କେହି ବନ୍ଧୁ ଆସିଲେ ନାହିଁ ।

ପୁଣି ଗୋଟିଏ ରାତି ଲଛ୍‌ମୀ ସହିତ ଟ୍ରେନ୍‌ରେ କଟାଇବାକୁ ପଡ଼ିବ ଓ ଝରକାର କାଚରେ ନବଦମ୍ପତିଙ୍କର ପ୍ରାକ୍‌ମୈଥୁନ କ୍ରିୟା ପ୍ରତିଫଳିତ ହେବ ଏବଂ ଲଛମୀ ଅନିରୁଦ୍ଧର ସାମୟିକ ପ୍ରବଣତାକୁ ବେଖାତିର କରି ତା'ର ବୟ ଫ୍ରେଣ୍ଡକୁ ସ୍ୱପ୍ନ ଦେଖିବ ଶୋଇ ଶୋଇ ।

ଅନିରୁଦ୍ଧର ଶୋଇବାକୁ ଚେଷ୍ଟାକଲା । ଶୋଇଲା ଓ ସ୍ୱପ୍ନ ଦେଖିଲା । ସେ ସ୍ୱପ୍ନ ଦେଖିଲା ସେ ଲଛ୍‌ମୀର କୋଳରେ ଶୋଇଛି ଓ ଛୋଟ ଶିଶୁକୁ ଗେହ୍ଲା କଲା ପରି ଲଛମୀ ତାକୁ ଅସଂଖ୍ୟ ବୋକ ଦେଉଛି ।

ଅନିରୁଦ୍ଧ ନିଦ ଭାଙ୍ଗି ଗଲା । ଲଛମୀ ଠିଆ ହୋଇଛି ଓ ତା ମୁହଁଠାରୁ ଲଛ୍‌ମୀର ମୁହଁର ଦୂରତା ନିଶ୍ୱାସର ବ୍ୟବଧାନ । -ବି ରେଡ଼ି ପ୍ଲିଜ୍, ନେକ୍ସ୍ଟ ଷ୍ଟପେଜ୍ ଏର୍ଣ୍ଣାକୁଲାମ୍ ସେଣ୍ଟ୍ରାଲ୍ ।

ଅନିରୁଦ୍ଧ ତରବର ହୋଇ ଉଠିଲା ଓ ତା'ର ଜିନିଷ ସଜାଡ଼ି ନେଲା । ପ୍ରବଳ ଗୋଟାଏ ହଟ୍ଟଗୋଳ... ହଲଟିଂ ମାତ୍ର ଦୁଇ ମିନିଟ୍ । ବିଲିଆଡ୍, କଣ୍ଟ୍ରାକ୍ଟର ଦରଜାକୁ ଅବରୁଦ୍ଧ କରିଦେଉଥିଲା ତା'ର ସାମାନ୍‌ରେ । ଅନିରୁଦ୍ଧ ତଥାପି ବି ଲଛମୀକୁ ସାହାଯ୍ୟ କଲା ।

ଅଳ୍ପ ସମୟ ପରେ ସେମାନେ ଓହ୍ଲାଇଗଲେ । ଲଛ୍‌ମୀ ଅନିରୁଦ୍ଧ ପାଖାପାଖି ଠିଆ ହୋଇଥିଲେ । ଅନିରୁଦ୍ଧ ଦେଖିଲା, କୃଷ୍ଣ ବର୍ଣ୍ଣର ଏକ ବିରାଟକାୟ ହାଡୁଆ ବୃଦ୍ଧ ସେମାନଙ୍କ ଆଡ଼େ ମାଡ଼ି ଆସୁଛି:

ଓ ! ଡ଼ାଡ଼ି-ଲଛମୀ ଦଉଡ଼ି ଗଲା ।

(ରାକ୍ଷାସର ଆକସ୍ମିକ ଆବିର୍ଭାବରେ ରାଜକୁମାର ତ୍ରସ୍ତ ହେଲେ । ସୁନ୍ଦରୀ ରାଜକୁମାରୀକୁ ପାଳିବା ପାଇଁ ସ୍ନେହରେ ଭିଡ଼ିନେଇ ଚାଲିଗଲା ଏବଂ ରାଜକୁମାର ଭାବିଲା ମୂଷାମାଟି ଓ ବିଲେଇ ଗୃହରେ ତାକୁ ଶୋଇବାକୁ ପଡ଼ିବ । ଶେଷରେ ମହାରାଜ ମହାରାଣୀ ତାଙ୍କ ପାଇଁ ସୁନ୍ଦରୀ କୁମାରୀର ଠାବ କରିବେ)

ଅନିରୁଦ୍ଧ ପାଖରେ ଠିଆ ହୋଇଥିଲା ଜଣେ ଶଙ୍କର ଜାତୀୟ କୁଲି, ସ୍ଲମରେ ରହୁଥିବା ଯାହାର ମା'କୁ କେତୋଟି ଟଙ୍କାରେ କୌଣସି ଗୋରା ସାହେବ ଧର୍ଷଣ କରିଥିବ ନିଶ୍ଚୟ । ଅନିରୁଦ୍ଧ କୁଲିଟି ସହିତ ବାହାରି ଗଲାବେଳେ ଭାବୁଥିଲା କୋଭ୍‌ଲମ୍ ଓ ପୋର୍ଟ ବିଚରେ ଅସଂଖ୍ୟ ଯୁବତୀଙ୍କର ଭିଡ଼ ହେଉଥିବ ଏବଂ ଏମିତି ଶଙ୍କର ଜାତୀୟ ପୁରୁଷ ସୃଷ୍ଟି ପାଇଁ ଅନିରୁଦ୍ଧଠାରୁ ସେ କୁଲି ପର୍ଯ୍ୟନ୍ତ ସମସ୍ତେ ସକ୍ଷମ ହୋଇପାରନ୍ତି ।



# ତୀର୍ଯକ ସୂର୍ଯ୍ୟାଲୋକରେ, ପଟେ ଝାଲୁଆ କଳାପିଠି

ନୀତା ସେତେବେଳେ ତା ବ୍ୟକ୍ତିଗତ ଆମୋଦ ଭିତରେ ବୁଡ଼ିଯାଇଥିଲା । ବାହାରେ ଯେ ଗୋଟିଏ ଦୁନିଆ ଅଛି କିମ୍ବା ସେଇ ଦୋ' ମହଲା ପ୍ରାସାଦରେ ଅବରୁଦ୍ଧ ରାଜକୁମାରୀମାନଙ୍କ ପାଇଁ ଲକ୍ଷେ ଯୋଡ଼ା ଆକ୍ଷି ଉତ୍ସୁକତାରେ ଘୂରିବୁଲେ ସେକଥା ସେ ଭୁଲିଯାଇ ଥିଲା । ସମ୍ପ୍ରତି ଦିନ ବାରଟାରେ ପ୍ରଖର ସୂର୍ଯ୍ୟାଲୋକରେ ତା' ପାଇଁ ଯାହା ଏକାନ୍ତ ଆକର୍ଷଣୀୟ ଥିଲା, ସେଇଟି ଝାଳରେ ଚକ୍ ଚକ୍ କରୁଥିବା ଚଉଡ଼ା କଳା ପିଠିଟିଏ ଓ ସେ ପିଠିର ତଳେ ଲୁଚି ରହିଥିବା ପାଟିରୁ ଭାସିଆସୁଥିବା ହିନ୍ଦୀ ଫିଲ୍ମ ସଙ୍ଗୀତର କେତୋଟି ପଦ । ସେ ପଦ ଦୁଇଟି ନୀତାକୁ ସ୍ୱପ୍ନର ଏକ କାଳ୍ପନିକ ଜଗତକୁ ନେଇଯାଇ ଥିଲା ।

ନୀତା ବଟ୍‌ନୀର ଛାତ୍ରୀ । ଏଇମାତ୍ର ସେ ଫେରିଛି ପ୍ରାକ୍‌ଟିକାଲ ସାରି । ଛ'ଟା ବେଳୁଁ କ'ଣ କପେ ଚା'ପିଇ ଯାଇଥିଲା ଯେ ଦିନ ବାରଟା । ରୁମ୍‌କୁ ଫେରି ଶାଢ଼ୀରୁ ଆରମ୍ଭ କରି ଅଣ୍ଡର ଗାରମେଣ୍ଟ ଖୋଲି ବିଛଣା ଉପରକୁ ଫିଙ୍ଗିଦେଲା । ରୁମ୍‌ରେ ସେ ଏକୁଟିଆ । ଅନ୍ୟ ଆର୍ଟସ୍ ବାନ୍ଧବୀମାନେ ବିଳମ୍ବରେ ଫେରିବେ । ସେ ବାଥ୍‌ରୁମ୍‌କୁ ଗଲା ଓ ଶରୀରକୁ ହାଲ୍‌କା କରିନେଲା । ନାଇଟ୍ ଗାଉନ୍ ଖଣ୍ଡେ ଦେହରେ ଗଳାଇ ସେ ହୁଏତ ଡ଼ାଇନିଂ ହଲ୍‌କୁ ଯାଇଥାନ୍ତା । କିନ୍ତୁ ସେ ଗଲାନାହିଁ । କାରଣ ତା'ର ପ୍ରାକ୍‌ଟିକାଲ

କଥା ଓ ସେ ପ୍ରୌଢ଼ ସାର୍‌ଙ୍କ କଥା ମନେ ପଡ଼ିଲା । ସେ ତା ଖଟରେ ଉପରକୁ ମୁହଁକରି ଜରାଗ୍ରସ୍ତ ବୃଦ୍ଧର ଧଇଁପେଲା ଶବ୍ଦପରି ଶବ୍ଦକରି ଘୁରୁଥିବା ବ୍ରିଟିଶ ଅମଳର ପଙ୍ଖା ଉପରେ ଦୃଷ୍ଟି ସ୍ଥିରକଲା ।

ସେ ଭାବିଲା ସେଇ ପ୍ରୌଢ଼ ସାର୍‌ଙ୍କ କଥା । କ୍ଲାସ୍ ରୁମ୍‌ରେ ସେ ବାରମ୍ବାର ଗୋଟିଏ କଥା କହିବେ: ତୁମେମାନେ ମୋ ପୁଅ ଝିଅ ପରି । ମୋ ପିଲାମାନେ ବର୍ଷକ ପରେ ତୁମକୁ ପାଠ ପଢ଼ାଇବେ । ଅଥଚ୍ ବ୍ୟବହାର... ଛି, ନୀତାକୁ କେମିତି ଅସଂଯତ ବୋଧହେଲା । ପିତୃତ୍ୱର କୋମଳ ଖୋଳପା ଭିତରେ କେଡ଼େ ଜନ୍ତୁଟେ ମଁ ସେ ! ସାର୍‌ମାନେ କ'ଣ ପ୍ରତ୍ୟେକ ତାଙ୍କପରି ! ସମୟ ସୁଯୋଗ ପାଇଲେ ତାଙ୍କ ବାତ୍ସଲ୍ୟ ପ୍ରକାଶ ପାଏ । ପିଠିରେ ଠୋଲା ପାପୁଲିରେ ଚାପଡ଼ ମାରିବା, ମୁଣ୍ଡଟିକୁ ଧରି ହଲାଇଦେବା; ଆଉ କେମିତି ଚାଲିଛି ପଢ଼ାପଢ଼ି, ତମେ ଭାରି ଆର୍ଟିଷ୍ଟିକ୍, ତମକୁ ଧଳା/ ହଳଦୀ ବିନ୍ଦି ଭଲ ମାନିବ... । ବାପାମାନେ କ'ଣ ଝିଅକୁ ଏମିତି ବ୍ୟବହାର କରନ୍ତି ! ଆମ ବାପା ତ ଏମିତିକି ଆମ ସାଙ୍ଗରେ ସ୍ୱଚ୍ଛ କଥାବାର୍ତ୍ତା କରନ୍ତିନି ।

ନୀତାର ମନେ ପଡ଼ିଲା ପ୍ରାକ୍ଟିକାଲର ନିର୍ଦ୍ଦିଷ୍ଟ ପରିବେଶଟି । ପ୍ରାକ୍ଟିକାଲ୍‌ଟା ନିହାତି ମାମୁଲି; ଅଥଚ୍ ସାର୍‌ଙ୍କ ପାଇଁ ସେଇଟି ଯେମିତି ଏକ ଗୁରୁତର ପ୍ରବ୍‌ଲେମ୍: ପଲିନେସନ୍ । କ'ଣ ଟା ବା ସେଥିରେ ଅଛି ! ହାଇସ୍କୁଲରେ କେଡ଼େ ସହଜ ଭାବରେ ସାର୍ ବୁଝାଇ ଦେଇଥିଲେ ସେଇ ଛୋଟ କଥାଟିକୁ । ନୀତା ତା' ବାପାଙ୍କ ସରକାରୀ କ୍ୱାର୍ଟର୍ସକୁ ମନେ ପକାଇଲା; ତା ସାମ୍ନାରେ ବିସ୍ତୃତ ଲନ୍‌ର ଫୁଲଗଛମାନଙ୍କୁ । ସକାଳେ ସନ୍ଧ୍ୟାରେ ଦେଖେ ଅସଂଖ୍ୟ ପ୍ରଜାପତି, ମହୁମାଛି, ଭ୍ରମର ଇତ୍ୟାଦି । ସେ ତା' ଲାଲ୍ ସ୍କାର୍ଟ-ବ୍ଲାଉସ୍ ପିନ୍ଧି ଲଙ୍ଗଳା ପାଦରେ ଦଉଡ଼େ ପ୍ରଜାପତିମାନଙ୍କୁ ଧରିବାକୁ । ସେମାନେ ଫୁଲରୁ ଫୁଲକୁ ଉଡ଼ିଯାଆନ୍ତି ଓ ସାର୍‌ଙ୍କ କହିବା ଅନୁସାରେ ଅଣ୍ଡିରା ଫୁଲର କେଶରଗୁଡ଼ିକ ଏଇ ପ୍ରଜାପତି ଓ ମହୁମାଛି ମୋଡ଼ରେ ଚାଲିଯାଆନ୍ତି । ସେଇଠି ସ୍କୁଲ ଭାଷାରେ 'ପରାଗ ସଙ୍ଗମ ଘଟେ' । ତା'ର ଗହନ ତତ୍ତ୍ୱକୁ ନବୁଝି ବିଜ୍ଞାନ ବହିର ସେଇ କେତୋଟି ପୃଷ୍ଠା ଘୋଷିଦେଇ ପରୀକ୍ଷା ଖାତାରେ ଚିତ୍ର ସହିତ ଲେଖିଦେଲେ ଦାୟିତ୍ୱ ଶେଷ । ସେଇଟା ଏବେ ବି.ଏସ.ସି.ରେ 'ପଲିନେସନ୍' ହୋଇଯାଇଛି ଓ ପ୍ରୌଢ଼ ସାର୍‌ଙ୍କ ବିଚାରରେ ତା'ର ଗୁରୁତ୍ୱ ଖୁବ୍ ବେଶି । ବାଃ, ଜାଣି ଜାଣି ଗୋଟାଏ ଚାଲାଖି । ନୀତା ପେଟେଇପଡ଼ି ତକିଆରେ ମୁହଁ ଗୁଞ୍ଜିଦେଲା ପରିବେଶଟିକୁ ନିଠେଇ କରି ଭାବିବାକୁ ।

'ମାଇଣ୍ଡ ଇଟ୍, ଫ୍ରମ୍ ଏକ୍‌ସାମିନେସନ୍ ପଏଣ୍ଟ ଅବ୍ ଭ୍ୟୁ ଇଟ୍‌ସ୍ ଭେରୀ

ଇମ୍ପୋର୍ଟାଣ୍ଟ...' ଏତକ କହି ସେ ଗମ୍ଭୀର ହେଇଯିବେ ଓ ପଲିନେସନ୍‌ର ଡେଫିନେସନ୍‌କୁ ଅତି ପ୍ରାଞ୍ଜଳଭାବେ ବୁଝାଇବେ । ପ୍ରାକ୍ଟିକାଲ ଗ୍ରୁପ୍‌ରେ ସେ ଜଣେ ତ ନୁହେଁ, ଅନେକ ପିଲା ଅଛନ୍ତି । ଅଥଚ ବୁଢ଼ା ବୁଝାଉଥିଲା ବେଳେ ବେଶି ସମୟ ନୀତାପ୍ରତି ଆଗ୍ରହୀ ହେଉଥିବ ଓ କାହିଁକି କେଜାଣି ହଠାତ୍ ସେ ମଝିରେ କହୁ କହୁ ଝୁଣ୍ଟିଲାପରି ହେବେ, ଯେମିତି ତାଙ୍କ କଣ୍ଠ ଅବରୁଦ୍ଧ ହୋଇଯାଇଛି କିମ୍ବା ତଣ୍ଟି ଶୁଖିଯାଇଛି । ସେ କିଛି ସମୟ ଦମ ନେଇ ପୁଣି କଥାଟିକୁ ନୂଆକରି ଆରମ୍ଭ କରିବେ । ... ଉଦ୍ଭିଦ ଜଗତର ପଲିନେସନ୍ ଜଷ୍ଟ ହିଉମେନ୍ ସିଷ୍ଟମ୍ ପରି... ଆଣ୍ଡ୍ରୋସିଅମରୁ ପଲେନ୍ ଗ୍ରେନ୍‌ର ସୃଷ୍ଟି । ସେମିତି ଗାଇନସିଅମରେ ଓଭମ୍ ରହିଛି ଓ ସେଥିରେ ଓଭ୍ୟୁଲ୍ ପଲେନ୍ ଗ୍ରେନ୍‌କୁ ଧରିବା ପାଇଁ ପ୍ରାକୃତିକ ନିୟମରେ ପରିପକ୍ୱ ହୋଇଥାଏ । ତମେ ଜାଣ ପ୍ରଜାପତି, ମହୁମାଛି, ପବନ ଇତ୍ୟାଦି ପଲେନ୍ ଗ୍ରେନ୍‌କୁ ହି ନେଇ ଗାଇନାସିଅମ୍ ଓଭମ୍‌ର ଓଭ୍ୟୁଲ୍ ସହିତ ସଂଯୋଗ କରନ୍ତି.. ପ୍ରଶେସ୍‌ଟି ପୁରାପୁରି ହିଉମେନ୍ ବିଙ୍ଗ୍‌ର ସେକ୍‌ସୁଆଲ ପ୍ରକ୍ରିୟା ପରି... ଏଇତକ କଥା କହିବା ପାଇଁ ସେ ଯଥେଷ୍ଟ ସମୟ ନିଅନ୍ତି ଏବଂ ନୀତାର ଯେମିତି ଏସବୁ ବୁଝିବା ପାଇଁ ବୟସ ହେଇନି... ସେ ପାଇଁ ତା ପ୍ରତି ଏ ଉକ୍ତିଗୁଡ଼ିକ ଅଧିକ ପ୍ରୟୋଗ କରନ୍ତି ଓ ପଲିନେସନ୍ ସହିତ ହିଉମେନ୍ ବିଙ୍ଗ୍‌ର ଫେୟାର୍ ସେକ୍‌ସ ସହିତ ଗୋଟାଏ କମ୍ପାରେଟିଭ୍ ଏନାଲିସିସ୍ କରି ।

ଗ୍ରୁପ୍ ଟୋକାଙ୍କ ଆମୋଦ ଭିତରେ ନୀତା ଝାଳେଇଯାଏ ଓ ତା' ବାପା ଏବଂ ଦ୍ୱିତୀୟ ମା'ଙ୍କ ସମ୍ପର୍କ କଥା ମନେ ପଡ଼ିଯାଏ । ସେତେବେଳେ ସାର୍‌ଙ୍କ ହାଡୁଆ ମୁହଁ ପୂରିଲା ଲାଗେ ଓ ତାଙ୍କ କୁହୁଡ଼ି ରଙ୍ଗର ବାଳ କଳା ମନେହୁଏ, ଅବଶ୍ୟ ସାମୟିକ ଯଦିଓ । ନୀତା ଧଇଁ ସଇଁ ହୋଇ ହଷ୍ଟେଲ୍ ଆଡ଼େ ମୁହଁ ଫେରାଏ । ସାର୍‌ମାନେ କେମିତି ସିନେମା ହଲ୍ ସାମ୍ନାର ଡ଼ହରା ଟୋକାଙ୍କ ପରି ଅଶ୍ଳୀଳ ଇଙ୍ଗୀତ କରନ୍ତି ମ୍ଁ !

ନୀତା ତକିଆଟିକୁ ତା' ଛାତି ତଳକୁ ଟାଣି ଆଣିଲାବେଳେ ତା' କାନରେ ପଡ଼ିଗଲା ଘାସ କଟାଳୀର ସେ ହିନ୍ଦୀ ଗୀତ ପଦକ । ସେ ହଠାତ୍ ବିଛଣାରୁ ଉଠିପଡ଼ିଲା ଓ କବାଟ ଖୋଲି କରିଡ଼ରକୁ ବାହାରି ଆସିଲା ଯେଉଁଠି ଠିଆହେଲେ ସେ ଘାସ କଟାଳୀର କଳା ପିଠିଟି ସମ୍ପୂର୍ଣ୍ଣ ଦିଶେ ।

ସେ ସନ୍ତର୍ପଣରେ ଯାଡ଼େ ସାଡ଼େ ଥରେ ଚାହିଁଲା- କେହି ନାହିଁ, ସେ ଓ ପଡ଼ିଆରେ ଘାସ କାଟୁଥିବା ସେ କଳା ଯୁବକଟି । ସେ' ପାରାପେଟ୍‌ରେ ଝୁଙ୍କି ପଡ଼ିଲା ତଳକୁ । ତଥାପି ସେ ଗୀତ ପଦକୁ ତୁହାକୁ ତୁହା ଝାଞ୍ଜି ପବନରେ ଭାସି ଆସୁଛି ।

ଅସତର୍କରେ, ତା' ପାଟିରୁ ବାହିରଗଲା ଗୀତର ପର ପଦଟି । ଘାସ କଟାଳୀ କଡ଼େଇ ଚାହିଁଲା ଦୋ' ମହଲାର କରିଡ଼ରକୁ । ତଥାପି ନୀତା ଝୁଙ୍କି ପଡ଼ିଥିଲା । ଘାସ କଟାଳୀ ତା କାମରେ ମନଦେଲା । ଖରା ମୁଣ୍ଡ ଉପରେ, ଆଉ କେତୋଟି ମିନିଟ୍ ମାତ୍ର । ନୀତା ପ୍ରଥମଥର ଦେଖିଲା ତା' ଉଜ୍ଜଳ ଆଖି, ନାକତଳେ ଗଜୁରୀ ଉଠିଥିବା କଳାନିଶ ଓ କଅଁଳ ଲୋମରେ ଆବୃତ୍ତ କଳା ଚଉଡ଼ା ଛାତିଟି । ଲୋକଟା ଅଭଦ୍ର ନୁହେଁ ନିଶ୍ଚୟ ଯଦିଓ ତା ପରିଧାନ ନିହାତି ସଂକ୍ଷିପ୍ତ- ତା' ଚଉଡ଼ା ମସୃଣ ନିତମ୍ବ ଦୁଇଟିକୁ ବିଭକ୍ତ କରୁଥିବା ବାବାଜୀଙ୍କ କୌପୀନ ପରି ଖଣ୍ଡିଏ ଗେରୁ ରଙ୍ଗର ଖୁର୍ଦ୍ଧାଗାମୁଛା ଓ ମୁଣ୍ଡରେ ସେଇ ଗାମୁଛାର ଠେକୋଟିଏ । କାମ କରିବାର ପୋଷାକ ବୋଧହୁଏ ଏ । ଗୋଲଗାଲ୍ ବଳିଷ୍ଠ ଜଙ୍ଘ, ପେଶୀ ବହୁଳ ବାହୁ ଦୁଇଟି ଯେମିତି ଘାସମାନଙ୍କର ବଂଶ ବୁଡ଼ାଇ ଦେବ । ନୀତା ଏ ଘାସ କଟାଳୀକୁ ଅନେକ ଥର ଦେଖିଛି, ଅଥଚ ଆଜି ଯେମିତି ସବୁଜ ଘାସ ପଡ଼ିଆରେ ପୃଷ୍ଠଭୂମିରେ ସେ ନୀଳ ଅପରାଜିତା ଫୁଲଟିଏ । ହେଇ, ତା' ଚଉଡ଼ା ପିଠିରେ ପ୍ରଜାପତିଟିଏ ବସିଲା । ନୀତା ଆତଙ୍କିତ ହୋଇପଡ଼ିଲା- ଯଦି ସେ ପ୍ରଜାପତିଟି ଉଡ଼ିଆସି ନୀତା ଉପରେ ବସିଯାଏ ! ଆତ୍ମରକ୍ଷା ପାଇଁ ନୀତା କରିଡ଼ୋରରୁ ସାଉଁଟି ସାଉଁଟି କେତୋଟି ଗୋଡ଼ି ସଂଗ୍ରହ କଲା ଓ ଗୋଟିଏ ଗୋଟିଏ କରି କିଛି ବ୍ୟବଧାନରେ ଘାସକଟାଳୀ ପିଠିକୁ ଲକ୍ଷ୍ୟକରି ଫିଙ୍ଗିଲା । ସେ ଖରାଖିଆ ପିଠି ପାଇଁ ଏ ଗୋଡ଼ିଗୁଡ଼ିକ ଅତ୍ୟନ୍ତ ଗୌଣଥିଲା । ତଥାପି ସେ ହସିଦେଲା ଓ ତା' ପୂର୍ବ ଗୀତକୁ ଆହୁରି ଜୋରକରି ଦୋହରାଇଲା । ନୀତା ତା'ର ପଦଟି ପୂରଣ କରୁ କରୁ ଦେଖିଲା ଅନେକ ପ୍ରଜାପତି ଓ ମହୁମାଛି ସେ କଳାପିଠିଟିକୁ ବେଢ଼ି ଗଲେଣି । ସେ ଅଧିକ ଆତଙ୍କିତ ହେଲା ଓ ହଠାତ୍ ଲକ୍ଷ୍ୟକଲା ଅଳ୍ପ ଦୂରରେ ଠିଆ ହୋଇଛି ପାତଳା ହୋଇ ଯୁବକଟିଏ ହାତରେ ଥାକେ ବହି ଧରି ଏବଂ ତା'ର ଏ କାର୍ଯ୍ୟବିଧିକୁ ଉପଭୋଗ କରୁଛି ନିଶ୍ଚୟ । ପିଲାଟି କେଡ଼େ ଅଭଦ୍ର ମ, ଥରେ ନୀତାକୁ ଓ ଥରେ ସେ ଘାସ କଟାଳୀକୁ ଚାହିଁ ଚାପି ଚାପି ହସୁଛି । ଏଥର ନୀତା ଲାଜ ପାଇଗଲା ଓ ତା'ର ମନେହେଲା ଯେମିତି ବିରାଟ ପ୍ରଜାପତିଟିଏ ପକ୍ଷ ବିସ୍ତାର କରି ତା ଆଡ଼କୁ ମାଡ଼ି ଆସୁଛି । ତା' ଗୋଡ଼ ଓ ପକ୍ଷରେ ଲାଗିଥିବା ହଳଦୀ ରଙ୍ଗର କେଶରଗୁଡ଼ିକୁ ତା' ଦେହରେ ଝାଡ଼ି ଦେବାକୁ ।

ସେ କରିଡରରୁ ଭିତରକୁ ପ୍ରାୟ ଦୌଡ଼ି ପଳାଇଲା ଓ ଭିତରୁ କବାଟ ବନ୍ଦକରି ପୂର୍ବପରି ବିଛଣାରେ ଚିତ୍‌ହୋଇ ଗଡ଼ିଯାଇ ଖୁବ୍ ଜୋର ନିଶ୍ୱାସ ନେବାକୁ ଲାଗିଲା ।

ସିମ୍ପଲ୍ ଅଭଦ୍ରାମୀ... କ'ଣ ପ୍ରତୀକ ଅଶୁଦ୍ଧ ହୋଇଗଲା ଯେ । ସେ ତା'ର ଘାସ କାଟୁଥିଲା ଏବଂ ପଦେ ଗୀତ ବୋଲୁଥିଲା । 'ଆଓ ତୁଝେ ମେଁ ପ୍ୟାର୍ ଶିଖାଦୁଁ ।' ତା ମୁହଁରୁ ବାହାରି ପଡ଼ିଲା ! 'ଶିଖ୍ଲା ଦୋ ନାଁ...' କ'ଣ ଏବେ ଭୁଲ ହୋଇଗଲା ! ଏଇଟା ଏମିତି କ'ଣ ଗୋଟାଏ ନୂଆ ଘଟଣା ଯେ ସେ ପିଲାଟା ତା' ହଷ୍ଟେଲ୍‌କୁ ନଫେରି ଖରାଟାରେ ଠିଆ ହୋଇଛି ସେମିତି । ପୁଣି ଚାପି ହସୁଛି... ଯେମିତି ସିନେମାର ଗୋଟିଏ ରୋମାଣ୍ଟିକ୍ ଦୃଶ୍ୟ ଉପଭୋଗ କରୁଛି । ପାଠ ତ ନାହିଁ, ଏଇସବୁ ଲୋଫରାମୀ ।

ନୀତା ପୁନର୍ବାର ମୁହଁ ତକିଆରେ ମାଡ଼ିଦେଇ ପେଟେଇ ଶୋଇଗଲା । ସେ ଟୋକା ଏବେ ହଷ୍ଟେଲରେ ହାଟ କରି ସାରିବଣି ଏବଂ କାଲି କେତେକ ଟୋକାଙ୍କୁ ଧରି ବଟ୍‌ନୀ ଡ଼ିପାର୍ଟମେଣ୍ଟରେ ଠିଆ ହୋଇଥିବ ଓ ସେବାଟେ ତା' ପ୍ରାକ୍ଟିକାଲ ରୁମ୍‌କୁ ଗଲାବେଳେ ଇଙ୍ଗୀତରେ ଚିହ୍ନାଇ ଦେବ- ଏଇ ସେ ଟୋକୀ ।

ଚିହ୍ନାଉ ଥାଉ । କେତେ ଏମିତି ଘଟଣା ଘଟୁଛି, ଆଖି ବୁଜି ଦେଲେ ସବୁ ଦୃଶ୍ୟ ସମାନ, ସବୁ ମଣିଷ ଏକାପରି । ନହେଲେ ବାପା ବୟସର ସାର୍ କାହିଁକି ଏକ ମାମୁଲି ପାଠକୁ ଏତେ ଯତ୍ନ ସହକାରେ ପଢ଼ାଉଥିଲେ । ତା' ଛଡ଼ା ତା'ର କ'ଣ ବୟସ ହୋଇନାହିଁ ଏତକ ସ୍ୱାଧୀନତା ପାଇଁ । ସେ ଟୋକା ହୁଏତ ଜାଣି ନଥିବ, ହେଲେ ସେ ଅନୁଭବ କରିଛି, ନବମ କ୍ଲାସ୍‌ଠାରୁ ସେ ସ୍ୱାଧୀନତା ତା' ହାତକୁ ଆସିଛି । ବରଂ ସେ ବୋଲି ଅଧାବାଟରେ ଅଟକି ନଯାଇ ଏତେ ବାଟ ଚାଲିଆସିଛି । ଦଶମ କ୍ଲାସ୍‌ର ତା' ସାଙ୍ଗ ଅନୁରାଧା କାହିଁକି ତା' ମାମୁ ପୁଅ ସହିତ ପୁରୀ ଯିବା ବାହାନାରେ ସପ୍ତାହଟେ ବାହାରେ କଟାଇ ଆସିଲା ଓ ପରେ ପରେ ରକ୍ତହୀନତା ରୋଗରେ ଆକ୍ରାନ୍ତ ହୋଇ ମାସେ କାଳ ଚିକିତ୍ସା ପରେ ସ୍ୱାଭାବିକ ହେଲା !

ନୀତା ଖଟ ଉପରେ ସମୁଦାୟ ଶରୀରକୁ ଚାପିଦେଲା । ତା'ର କାନ୍ଦିବାକୁ ଇଚ୍ଛାହେଲା/ହଠାତ୍ ବିଛଣାରୁ ଉଠିପଡ଼ି ସାରା ହଷ୍ଟେଲ ବୁଲି ବୁଲି କହିବାକୁ ଇଚ୍ଛାହେଲା ମୁଁ କାହାରିକୁ କେୟାର କରେନା... ମୁଁ ମୋ ନିଜ ଇଚ୍ଛାରେ, ପ୍ରବୃତ୍ତିରେ । ବାପା ସନ୍ତୁଷ୍ଟ ତାଙ୍କ ସ୍ୱପ୍ନ ସହିତ- ନୀତା ପି.ଜି. କରିବ, ଭଲ କରିଅର, ତା' ଦାୟିତ୍ୱ ତା'ର । ତାଙ୍କର କ'ଣ ଦାୟ ଅଛି ବୁଝିବାକୁ ବୟସ କେମିତି ବାଧ୍ୟ ହୋଇ ସୀମାବଦ୍ଧ ହେଉଛି ଟିନ୍-ଏଜ୍ ବ୍ରା ଷ୍ଟ୍ରାପ୍‌ର ଏଡ୍‌ଜଷ୍ଟମେଣ୍ଟ ଭିତରେ ।

ନୀତାର କ୍ରୋଧ ବାପାଙ୍କ ପାଖରେ କେନ୍ଦ୍ରୀଭୂତ ହେଲା ଓ ମାଙ୍କ କଥା ମନେପଡ଼ି ଆଖିରେ ଲୁହ ଆସିଲା । ସାନଭାଇଟା ଏଇ ମାତ୍ର +୨ରେ ଏଡ୍‌ମିଶନ୍ ନେଇଛି ।

ଘରଟିର କିଛି ଅଂଶ ଭଡ଼ା ଲାଗିଛି ବୋଲି ସିନା ମା' ଏତେ ସାହସ କରି ପାରୁଛି। ନହେଲେ ସେ ଗାଁରେ ବାଡ଼ିଘରେ ସଜନା ଗଛକୁ ଚାହିଁ ଛୁଇଁ ଗଣୁଥାନ୍ତା/ଶାଗ ପଟାଳୀଟିଏ ସଜାଡୁଥାନ୍ତା/ କିମ୍ବା ଝରାବର୍ଷାରେ ମୁଣ୍ଡରେ ଗାମୁଛା ପକାଇ ଲାଉ ବା କଖାରୁ ମଞ୍ଜି ଦି'ଟା ପୋତି ଦେଉଥାନ୍ତା। ସାନଭାଇ ବେକାରିଆ ଟୋକାଙ୍କ ମେଳରେ ନଈ ବନ୍ଧରେ ବସି ଖାଇବା ସମୟକୁ ଫେରି ଆସୁଥାନ୍ତା ଓ ନୀତା ଗାଁ ଦାଣ୍ଡରେ ଚାଲିଗଲା ବେଳେ ପଛରୁ ବିଦ୍ରୂପ ସହାନୁଭୂତିର ସ୍ୱର ଶୁଣନ୍ତା! କେଡ଼େ ବଡ଼ ଲୋକର ଝିଅ, କନ୍ଦର୍ପ ପରି ପାତ୍ର ହାତରେ ଝିଅକୁ ଟେକି ଦେଇଥାନ୍ତା... ଆଜି ତା' ଅବସ୍ଥା ଦେଖ! ଅବଶ୍ୟ ସେମିତି ଘଟିଲା ନାହିଁ ସହରର ସେ ଘରଖଣ୍ଡକ ପାଇଁ।

ନୀତା କଡ଼ ଲେଉଟାଇଲା। ପ୍ରୌଢ଼ ସାର୍ ପଲିନେସନ୍ ଏତେ ପ୍ରାଞ୍ଜଳ ଭାବରେ ପଢ଼ାଇବାର ଦୋଷ କ'ଣ! ତା' ବାପା! ସେ ସାର୍‌ଙ୍କ ବୟସର। ସେଇ ନିର୍ଦ୍ଦିଷ୍ଟ ରାତିର ଦୃଶ୍ୟଟି ନୀତାର ମନକୁ ଆସିଲା। ସେତେବେଳେ ସ୍ଥାନୀୟ କଲେଜର ସେ ଫାଷ୍ଟଇୟର ଛାତ୍ରୀ। ସାମାନ୍ୟ ହଟ୍ଟଗୋଳରେ ନୀତାର ନିଦ ଭାଙ୍ଗିଗଲା-ଅସ୍ୱାଭାବିକ ପାଟିତୁଣ୍ଡ ତା' ମନରେ କିଛିଟା ଭୟ ସଞ୍ଚାର କରିଥିଲା। ଫଳରେ ସେ ବିଛଣାରେ ପଡ଼ିରହି ଶୋଇବାର ଛଳନା କଲା। ସେ ବାପାଙ୍କର ଉଗ୍ରରୂପ ସହିତ ମା'ର କାକୁସ୍ଥ ଅବସ୍ଥାକୁ ତୁଳନା କରୁଥିଲା ଓ ବାପାଙ୍କ ମୁହଁରୁ ଝରି ପଡୁଥିବା ଅସ୍ପଷ୍ଟ ସଂଳାପଗୁଡ଼ିକୁ କାନଉଥିଲା- ବାପା ବୋଧହୁଏ ମଦ ଖାଇଥିଲେ; କାହିଁକି ନା ତାଙ୍କ କଥାରେ ବେଶିଭାଗ ପବନ ଥିଲା ଓ କଥାର କ୍ରମ ଠିକ୍ ନଥିଲା। ସେଇ ଆତଙ୍କିତ ଅବସ୍ଥାରେ ସେ ବୁଝିନେଲା ବାପା ମା'ଠାରୁ ଦୂରେଇ ଯିବା ଚାହୁଁଥିଲେ। ଚାହୁଁଥିଲେ କାରଣ ସେଇ କାକୁସ୍ଥ ଅବସ୍ଥାରେ ମଧ୍ୟ ମା' ଜୋର କରି କହୁଥିଲା, ତା' ବ୍ୟତୀତ ଅନ୍ୟ କୌଣସି ସ୍ତ୍ରୀ ଲୋକ ସିନ୍ଥିରେ ସିନ୍ଦୁର ପିନ୍ଧି ବାପାଙ୍କ ବିଛଣାର ଅଂଶୀଦାର ହେବ ସେକଥା ସେ କେବେ ଗ୍ରହଣ କରି ପାରିବ ନାହିଁ। ବାପା ମଧ୍ୟ ରୋକ୍ ଠୋକ୍ ଜଣାଇ ଦେଲେ ସେହି ଦିନଟି ଆମ ଘରେ ତାଙ୍କର ଶେଷ ପଦପାତ..।

ବାପା ଚାଲିଗଲେ... ସବୁ ସତ୍ତ୍ୱେ ନୀତାର ଭୟ ହେଉଥିଲା ବାପା ପଡ଼ିଯିବେ ହୁଏତ। କାରଣ ତାଙ୍କ ଚାଲିରେ ଭାରସାମ୍ୟ ନଥିଲା। ସିନେମା/ଥିଏଟର୍‌ରେ ମଦୁଆ ଆକ୍ଟିଂ କରୁଥିବା ଲୋକ ପରି ସେ ଚାଲୁଥିଲେ। ମା' ଠିଆ ହୋଇଥିଲା କାଠ ପିତୁଳାଟିଏ ପରି ଓ ନୀତା ହଠାତ୍ ଉଠି ବାଲ୍‌କନିକୁ ଚାଲିଗଲା। ଷ୍ଟ୍ରିଟ୍ ଆଲୋକରେ ଯାହା ମନେହେଲା ବାପାଙ୍କ କାର୍ ଆଗ ସିଟ୍‌ରେ ପୃଥୁଳକାୟ ମହିଳାଟିଏ ବସିଥିଲେ, ରଙ୍ଗ କଳା ବୋଧହୁଏ।

ବାପା କାର୍ ଷ୍ଟାର୍ଟ କଲେ ଏବଂ ସାମ୍ନା କର୍ଭରେ ଏମିତି ଟର୍ଣ୍ଣିଂ ନେଲେ ଯେ, ଠାକୁରଙ୍କୁ ଡାକିଲା- ବାପା କୌଣସି ଏକ୍‌ସିଡେଣ୍ଟର ସମ୍ମୁଖୀନ ନହୁଅନ୍ତୁ । ପଛରୁ ମା' ନୀତାକୁ ଜାବୋଡ଼ି ଧରିଲେ ଏବଂ ତା'ର ସ୍ୱାଭାବିକ ଆଖି ଦୁଇଟିକୁ ନିଜକାନିରେ ପୋଛି ନେଲେ ଯଦିଓ ତାଙ୍କ ଆଖିରୁ ଦୁଇଠୋପା ଲୁହ ଗୋଲାପୀ ଗଣ୍ଡ ଦେଇ ବହିଯାଇ ଚିବୁକରେ ଦୁଇଟି ମୁକ୍ତା ବିନ୍ଦୁରେ ପରିଣତ ହୋଇଥିଲେ । ପରେ ପରେ ନୀତାକୁ କୋଳେଇ ନେଇ ଘରକୁ ଗଲେ । ପରେ ପାଖ ଘଟରେ ଶୋଇଥିବା ସାନଭାଇ କୁନା ପାଖକୁ ଗଲେ ଓ ତା' ମୁହଁ ପାଖରେ ଝୁଙ୍କି ପଡ଼ିଲେ । ତା' ମୁହଁକୁ କିଛି ସମୟ ନିରୀକ୍ଷଣ କଲେ ଓ ମା' ଆଖିର ଠୋପାଏ ଲୁହ କୁନା ଗାଲରେ ପଡ଼ିଗଲା! ଏବଂ କୁନା ନିଦ ବାଉଳାରେ ସେ ଲୁହଠୋପାକୁ ପୋଛିଦେଲା ହାତରେ । କୁନାଟା ଠିକ ବାପାଙ୍କ ପରି ଦେଖିବାକୁ । ମା' ହଠାତ୍ ବିଛଣାକୁ ଚାଲିଗଲା, ବେଡ୍ ସ୍ୱିଇଚ୍ ଅଫ୍ କଲା ଓ ଭଙ୍ଗା ଗଳାରେ କହିଲା; ଶୋଇପଡ଼ ନୀତା... ।

ସମୟ ଅତିକ୍ରମୀ କରିଯାଇଛି
ସୁଖ-ଦୁଃଖ, ଉତ୍‌ଥାନ-ପତନର ସଂଗ୍ରାମ ଓ
ବଞ୍ଚିବାର ଧାରା ତା'ର ସ୍ୱାଭାବିକ ଢ଼ଙ୍ଗରେ । ବାପା
ତାଙ୍କ ଦ୍ୱିତୀୟ ପ୍ରିୟତମା ସହିତ
ଏକା ପ୍ରଫେଶନରେ ସମୟ ସହିତ ତାଳ ରଖି...
ଏମିତି ସବୁକଥା ।

ନୀତା ବର୍ତ୍ତମାନକୁ ଫେରିଆସିଲା । କ'ଣ ଦରକାରଥିଲା ସେ ଟୋକାର ତା' ପ୍ରାଇଭେଟ୍ କଥାରେ ମୁଣ୍ଡଖେଳାଇବାର ! ଜଣେ ଟୋକୀକୁ ସାମ୍ନାସାମ୍ନି କରିବାର ସତ୍ ସାହସ ତ ନାହିଁ, ଖାଲି କୁକୁରୀଆ ପ୍ରେମ ! ଟିକେ ହସିଦେବା, ବୁଲାଇ ବଙ୍କେଇ ପଦେ ଦି'ପଦ କଥା ହେବା, ଦୂରରୁ ଦେଖି ସାଙ୍ଗସାଥୀ ମେଳରେ ଫୁସ୍‌ଫାସ୍ ହେବା... ଟ୍ରାସ୍ . ତାକତ ଅଛି ତ ବାହାରି ଆସ ସାମ୍ନାକୁ, ଖୋଲିଦଅ ଛାତିର ବଟନ୍‌କୁ । ଦେଖରେ ଟୋକୀ ! ଛାତିର ଚଉଡ଼ା ଚଉରାଳିଶ୍ ଇଞ୍ଚ.. ତୋ' ନାରୀତ୍ୱକୁ ନେଇ ପେଣ୍ଡୁପରି ହାତରେ ଖେଳିବାର ପୌରୁଷରେ ଛାଇ ମୋ ଦେହ... କ'ଣ ଭାବିଛୁକି ମୋତେ ! କାହିଁ କେଉଁଠି ତ ନାହିଁ ଦୃଢ଼ତା... ତମେ ସବୁ ବାପାଙ୍କ ନିଲାମ୍‌ର ବସ୍ତୁ ।

ନୀତା ଶୋଇଗଲା ଏମିତି ଭାବୁ ଭାବୁ ।

ପରଦିନ ସକାଳେ ନୀତା କଲେଜ ଗଲା ତା' ରୋଟିନ୍ ଅନୁସାରେ ଏବଂ କଲେଜ ପୋର୍ଟିକୋ ଅତିକ୍ରମ କଲା ପରେ ଠିକ୍ ଏଣ୍ଟ୍ରାନ୍ସରେ ଠାଏ ଅଟକିଗଲା । ସେ ଅଟକିଗଲା ଏଇଥିପାଇଁ ଯେ ତା'ପରି ଅନେକ ପୁଅ/ଝିଅ ସେଠି ଅଟକି ଯାଇଥିଲେ- ଓ୍ୱାଲ ମ୍ୟାଗାଜିନ୍‌ରେ ଏ ସପ୍ତାହର ନୂଆ ଗଳ୍ପ/କବିତା/ପ୍ରବନ୍ଧ ଇତ୍ୟାଦି ଇତ୍ୟାଦି- ଗୋଟିଏ କବିତାକୁ କେତେକ ପାଟିକରି ଆବୃତ୍ତି କରୁଥିଲେ । କବିତାଟିର ଶିରୋନାମା 'ଘାସ କଟାଳୀର ସଙ୍ଗୀତ' ଓ କବି ଛଦ୍ମନାମରେ 'ସାକ୍ଷୀ' । ନୀତା କବିତାଟି ପଢ଼ିଲା ଓ ତାକୁ ଭଲ ଲାଗିଲା । କବିତାଟିରେ ଇମେଜ୍ ଓ ସିମ୍ବଲର ପ୍ରୟୋଗ କବିର ସ୍ପର୍ଶକାତରତା ସମ୍ପର୍କରେ ବେଶ୍ ସୂଚନା ଦେଉଛି । କିନ୍ତୁ ସେ ଅନ୍ୟମାନଙ୍କ ପରି ଆମୋଦିତ ହୋଇପାରୁ ନଥିଲା । ବରଂ ସ୍ଥାଣୁ ହୋଇ କିଛି ସମୟ ଠିଆ ହୋଇ ରହିଲା । ପିଲାଟା କେଡ଼େ ଭୀରୁ, ଇଂରାଜୀର ଶେଷବର୍ଷ ଛାତ୍ର ବୋଲି ଲେଖିଛି, ଅଥଚ ନିଜ ନାଁ ଲେଖିବାର ସତ୍‌ସାହସ ନାହିଁ ତା'ର!

ଏଇକଥା ଭାବୁ ଭାବୁ ନୀତା ଝାଳେଇଗଲା । ତା' ଦେହ ଝାଳେଇଗଲା ପରେ ସେ ଦୁର୍ଗା ମୂର୍ତ୍ତି ପରି ଉଜ୍ଜ୍ୱଳ ଦିଶିଲା ଏବଂ ସେଇ ଗହଳୀର ଅଳ୍ପ ଦୂରରେ ପାତଳା ହୋଇ ଟୋକାଟିଏ ତା' ବହି କେତେଖଣ୍ଡ ଛାତିରେ ଜାକି ଠିଆ ହୋଇଥିଲା ଛାତ୍ରୀଟିଏ ପରି, ଯେମିତି ସେ କାଳୁକୁ ଆଉଜି ଅପେକ୍ଷା କରିଛି ସାର୍‌ଙ୍କ ଆସିବାକୁ । ସେଇ ଠିଆ ହୋଇଥିବା ଅବସ୍ଥାରେ କିଛି ନ ଜାଣିଲା ପରି ନୀତାର ପ୍ରତିକ୍ରିୟାକୁ ଲକ୍ଷ୍ୟ କରୁଥିଲା ।

କାହାର ମୃଦୁ ସ୍ପର୍ଶରେ ନୀତା ପ୍ରକୃତିସ୍ଥ ହେଲା । ତା' କ୍ଲାସ୍‌ମେଟ୍ ଲୀନା... କବିତାଟି ଚମତ୍କାର ହେଇନି, ସେ ପ୍ରଶ୍ନ କଲା । 'ହଁ' କହି ନୀତା ଡ଼ିପାର୍ଟମେଣ୍ଟ ଆଡ଼େ ଚାଲିଲା । ଲୀନା ନୀତାକୁ କେମିତି ଏକ ଭିନ୍ନ ଦୃଷ୍ଟିରେ ଅନୁଧ୍ୟାନ କରୁ କରୁ ତାକୁ ଅନୁସରଣ କଲା । ସେଇ ଗତାନୁଗତିକତା-ଥିଓରୀ/ପ୍ରାକ୍ଟିକାଲ କେତେ ଘଣ୍ଟା ଧରି ଉଞ୍ଚୀୟ ବ୍ୟାକରଣ ବିଧିର ତରଳ ସାମ୍ୟ ବର୍ଣ୍ଣ ପରି । ନୀତା କିନ୍ତୁ ସବୁକିଛି ଆଜି ଭୁଲ୍ କରୁଥିଲା ଓ କ୍ଲାସ୍ ଓଭର ଘଣ୍ଟାକୁ ଅପେକ୍ଷା କରୁଥିଲା । ଘାସ କଟାଳୀ ତା' ନୀର୍ଦ୍ଧାରିତ ସ୍ଥାନକୁ ଆସି ସାରିଥିବ ଓ ତୀର୍ଯକ ସୂର୍ଯ୍ୟାଲୋକକୁ ଖାତିର ନକରି ଚର୍‌ଚର୍ କରି ଘାସ କାଟୁଥିଲା ବେଳେ ମନ ଫୁର୍ତ୍ତିରେ ଗୁଣୁଗୁଣୁ ହୋଇ ପଦ ଖଞ୍ଜୁଥିବ । ତା' କଳା ପିଠିରୁ ଆରମ୍ଭ କରି ବଳିଷ୍ଠ ବାହୁ ଓ ଲୋମଶ ଜଙ୍ଘରେ ଝାଳ ବୋହି ପଡୁଥିବ । ପଡ଼ିଆଟା ଏଡ଼େ ବିରାଟ ଯେ ସେ ବର୍ଷ ବର୍ଷ ଧରି ଘାସ କାଟିଲେ ମଧ୍ୟ ଘାସ ସରିବନି ଓ ସେ ବୁଢ଼ା ହୋଇ ମରିଗଲା ପରେ ତା ପୁଅ ମଧ୍ୟ ସେଇ ସ୍ଥାନରେ ବସି ଅନୁରୂପ ମୁଦ୍ରାରେ ବସି ଘାସ

କାଟିପାରେ । ନୀତା ଝିଅ କ'ଣ ସେତେ ବେଳେ ଏଇ କଲେଜରେ ପଢୁଥିବ ଓ ସେଇ ହଷ୍ଟେଲ୍‌ର ସେ ରହୁଥିବା ରୁମ୍‌ରେ ରହୁଥିବ !

କ୍ଲାସ୍ ଓଭର ହେବାର ଘଣ୍ଟା ବାଜିଲା ଏବଂ ନୀତା ହଷ୍ଟେଲ୍‌କୁ ଫେରିଲା । ସେ ଫେରୁ ଥିଲା ଠିକ୍ ଯେମିତି ସବୁଦିନ ଫେରେ । ଅଥଚ ତା' ରାସ୍ତାକଡ଼ର ସେ ବିରାଟ ବିଲଡ଼ିଂ ଓ କ୍ୱାଟର୍ସଗୁଡ଼ିକ ତାକୁ ଲାଗୁଥିଲା ଯେମିତି କାଳିଲେଖା କାଗଜ ଖଣ୍ଡକ ଉପରେ ପାଣି ପଡ଼ିଯାଇଛି ।

ସେ ହଷ୍ଟେଲ୍‌ରେ ପହଞ୍ଚିଲା ବେଳକୁ 'ଘାସ କଟାଳୀର ସଙ୍ଗୀତ' କବିତାର କବି 'ସାକ୍ଷୀ' ଓରଫ ଇଂରାଜୀ ଶେଷବର୍ଷ ଛାତ୍ରଟି ପୋର୍ଟିକୋରେ ଠିଆ ହୋଇଛି । ଏମିତି କିଛି ଘଟିବ ଏକଥା କ୍ଲାସ୍ ଛାଡ଼ିଲା ବେଳେ ନୀତା ଭାବି ନେଇଥିଲା । ହଠାତ୍ ପରିବେଶରୁ ମୁକ୍ତି ପାଇଁ ନୀତା କହିଲା: 'ଆପଣଙ୍କ କବିତାଟି ଖୁବ୍ ଭଲ ଲାଗିଲା; ଅଥଚ ବିଜ୍ଞାପନର ଯୁଗରେ ନାଁଟାକୁ କାହିଁକି ଲୁଚାଇ ରଖିଲେ ?'

-ନୀରବ ।

-ନୀରବତା ।

-ନୀରବ ।

-ନୀରବତା ।

-ସ୍ଥିର ଦୃଷ୍ଟି ।

-ଥରିଲା ଓଠ ଓ ଆଖିରେ ଆଶଙ୍କା !

-ମୁହଁରେ ମୃଦୁ ହସ ।

-ନୀରବ ଓ ଶଙ୍କିତ ଭାବ ।

ଏପରି ଅବସ୍ଥାରେ ସବୁକଥା 'ବୋର୍' ନୀତା ପାଇଁ । ସେ ବାଧ ହୋଇ କହିବାକୁ ଆରମ୍ଭ କଲା: ଆପଣଙ୍କର ଏବଂ ମୋର ଜୀବନ ଦର୍ଶନ ସମ୍ପୂର୍ଣ୍ଣ ଭିନ୍ନ । ଆପଣ ଚିଠି ଲେଖିବେ, ଯୁଡ଼ି କଲନ୍ ସ୍ପ୍ରେ କରିବେ, ଘଣ୍ଟା ଘଣ୍ଟା ଅନାବଶ୍ୟକ କଥା କହିବେ... ଯାହା କରିବେ ସ୍ପଷ୍ଟ କରିପାରିବେନି... ରାତି ରାତି ଅନିଦ୍ରା ହୋଇ ଇଏଟ୍‌ସଙ୍କ କବିତା ପଢ଼ିବେ- ମୁଁ ଯେମିତି ତୋ' ଛାତିର ସ୍ପନ୍ଦନ ଜାଣେରେ ସୁନ୍ଦରୀ, ଏମିତିକି ।

ତୋ ମା' ମଧ୍ୟ ଜାଣି ନଥିବେ... ଓ ଚିଠି ଲେଖିବେ । କିନ୍ତୁ ସତ କହିଲେ ମୁଁ ସେ ବୟସ ଅତିକ୍ରମ କରିଛି... ସମ୍ପ୍ରତି ସେ ସବୁ ମୋତେ ସିନେମାର ରୋମାଣ୍ଟିକ୍

ଦୃଶ୍ୟପରି ଲାଗେ । ଯଦି ଉପେନ୍ଦ୍ରଙ୍କ ଭାଷାରେ 'ରମା ଶବ୍ଦର ବିପରୀତ ପ୍ଲୁଷ୍ଟ ଶରରେ ଆପଣ ଘାରି ହୋଇଛନ୍ତି କୌଣସି ଅଭିଜାତ ହୋଟେଲ୍‌ରେ କୋଠରୀଟିଏ ନିଅନ୍ତୁ ଓ ଗୋଟିଏ ରାତିକୁ ଅସଂଖ୍ୟ ରାତିରେ ପରିଣତ କରି ପରଦିନ ସକାଳୁ ସକାଳୁ ଗଙ୍ଗାସ୍ନାନ କରି ପହଞ୍ଚିବା କୌଣସି ମନ୍ଦିରରେ... ପାରିବେ ତ !

ମୁଁ ଜାଣିଛି ଆପଣ ପାରିବେନି... ତା' ପରେ ନୀତା କୌଣସି ମେଲୋଡ୍ରାମାର ଖଳନାୟକ ପରି ହାଃ... ହାଃ... ହାଃ... କରି ହସିଲା ।

ପ୍ରକୃତରେ ଏଇ ସମସ୍ତ ମଧ୍ୟରେ ନୀତା ଶବ୍‌ଦଟିଏ ହିଁ ଉଚ୍ଚାରଣ କରି ନଥିଲା ଏବଂ ପରସ୍ପର କିଛି ସମୟ ଠିଆହୋଇ ନୀରବତା ଅବଲମ୍ବନ କରିଥିଲେ କେବଳ । ଏସବୁ କଥା ନୀତା ମନକୁମନ ଭାବି ଯାଇଥିଲା... ହଠାତ୍ ସେ 'ଥ୍ୟାଙ୍କ୍ ୟୁ' କହି ସିଢ଼ି ଦେଇ ଉପରକୁ ପ୍ରାୟ ଦୌଡ଼ି ଦୌଡ଼ି ଚାଲି ଯାଉଥିଲା ଓ ମଝିରେ ଅଟକିଯାଇ ପଛକୁ ଫେରି ଚାହିଁଲା- କବି 'ସାକ୍ଷୀ' ପୋର୍ଟିକୋରୁ ରାସ୍ତାକୁ ବାହାରି ଯାଉଥିଲେ ।

ନୀତା କୋଠରୀରେ ବହିପତ୍ର ଫିଙ୍ଗିଦେଇ ଦି' ମହଲାର କରିଡ଼ର୍‌କୁ ଚାଲିଆସିଲା ଓ ଖରାରେ ଚକ୍ ଚକ୍ କରୁଥିବା ଘାସ କଟାଳୀର କଳା ପିଠି ଓ ଲୋମଶ ଦେହକୁ ଚାହିଁଲା । ଏଥର ସେ କାହାକୁ ଡ଼ରୁ ନଥିଲା । ହାତରେ କିଛି ଗୋଡ଼ି ସଂଗ୍ରହ କଲା ଓ କ୍ରମାନ୍ୱୟରେ ସେ କଳା ପିଠିକୁ ଫିଙ୍ଗିଲା ଏବଂ ଘାସ କଟାଳୀର ପାଟିରୁ ବାହାରି ଆସୁଥିବା ଅସମ୍ପୂର୍ଣ୍ଣ ପଦମାନଙ୍କୁ ଉଚ୍ଚ ସ୍ୱରରେ ପୂର୍ଣ୍ଣ କରୁଥିଲା ।

ଏବଂ ଠିକ୍ ସେତିକିବେଳେ କବି 'ସାକ୍ଷୀ'ର ପାତଳା ଶରୀର ହଷ୍ଟେଲ୍ ସାମ୍ନାଦେଇ ଲମ୍ବିଯାଇଥିବା ରାସ୍ତାର ଶେଷ ମୁଣ୍ଡରେ କ୍ଷୀଣତର ହୋଇଯାଉଥିଲା ।

ଆପାତତଃ ନୀତା ପାଇଁ ସତ୍ୟ ସେ ଲୋମଶ କଳା ଶରୀର, ତା'ର ସଙ୍ଗୀତ, ତାକୁ ନେଇ ବାଲିରଗଡ଼ାରେ ତା'ର ଖେଳ ଓ ପ୍ରତ୍ୟେକ ବାଲିରଗଡ଼ାର ମାଡ଼ରେ କଳା ମୁହଁରୁ ଦିଶୁଥିବା ଦୁଇଧାଡ଼ି ଧଳା ଉଜ୍ଜ୍ୱଳ ଦାନ୍ତ ।

(୧୯୮୫)



# ଶରଣାର୍ଥୀ

କୃତ୍ତିବାସ ସେ ଗୁମ୍‌ସୁମିଆ କୋଠରୀ ମଧ୍ୟରେ ଠିଆ ହୋଇଥିଲା ଏକ ସିଲ୍‌ହୋଏଟ୍ ଷ୍କେଚ୍ୟୁପରି । ଆନୁମାନିକ ବୟସ ତା'ର ଚାଳିଶ ବା ସାମାନ୍ୟ ଅଧିକ । ପ୍ରାୟ କୋଡ଼ିଏ ବର୍ଷ ତଳେ ସେ ଗୋଟିଏ ଶଗଡ଼ ଗାଡ଼ିରେ ତା'ର ସମସ୍ତ ଅସ୍ଥାବର ସମ୍ପତ୍ତି ଓ ବୁଢ଼ୀ ମା'କୁ ଧରି ନୂଆ ହୋଇ ମୁଣ୍ଡ ଟେକିଥିବା ଏଇ ସରକାରୀ କଲୋନୀର ଶେଷ ଦୁଇ ବଖରା କୋଠରୀ ବିଶିଷ୍ଟ ଘରେ ତା' ନୂଆ ସଂସ୍ଥା ଆରମ୍ଭ କରିଥିଲା । ବିଗତ କେତେବର୍ଷ ଭିତରେ ତା'ର ଅର୍ଥନୈତିକ ଅବସ୍ଥାଠାରୁ ଶାରୀରିକ ଅବସ୍ଥା ଉପରେ ସମୟର ଏକ ମସ୍ତବଡ଼ ଝଡ଼ ବହିଯାଇ ତା' ଚେହେରାକୁ ବାର୍ଦ୍ଧକ୍ୟର ସୀମା ଛୁଆଁଇ ଦେଇଛି । ବାଳ ଆଂଶିକ ଧଳା, ଗାଲରୁ ମାଂସତକ ହଜିଯାଇଛି, ଆଖିରେ ଉଦାସ ନୈରାଶ୍ୟ, ହନୁହାଡ଼ ଦୁଇଟି ସ୍ପଷ୍ଟ । ସେଇ ମୁହୂର୍ତ୍ତରେ ସେମିତି ଠିଆ ହେବା ବ୍ୟତୀତ ତା'ର ଅନ୍ୟ କିଛି ଉପାୟ ନ ଥିଲା । ବୁଢ଼ୀର ପ୍ରଶ୍ନଗୁଡ଼ିକୁ ସମ୍ମୁଖୀନ ହେବା ପାଇଁ ତା' ପାଟିରେ କୌଣସି ଉତ୍ତର ନଥିଲା ବର୍ତ୍ତମାନ ।

ଖଣ୍ଡିଏ ଦଉଡ଼ିଆ ଖଟିଆ ଉପରେ ଯେଉଁ ବୁଢ଼ୀଟି ସମ୍ପ୍ରତି ଜାଗତିକ ଓ ପାରମାର୍ଥୀକ ଆକର୍ଷଣରେ ଉବୁଟୁବୁ ହୋଇ କେତେଗୁଡ଼ିଏ ଅନାବଶ୍ୟକ ତଥା ଅବାଞ୍ଛିତ ପ୍ରଶ୍ନ ପଚାରୁଛି, ସେ ତାର ମା । ଆଉ କେତେଘଣ୍ଟା ମଧ୍ୟରେ ମା' ହୁଏତ ଆଖି ବୁଜିଦେବ । ତା' ବଂଶ ଇତିହାସର ଦୀର୍ଘ-ଅଧ୍ୟାୟର ପୂର୍ଣ୍ଣଚ୍ଛେଦ ପଡ଼ିବ । ଅନ୍ୟ ଏକ ନୂଆ ଅଧ୍ୟାୟର ଉପାଦାନ ସେ ନିଜେ; କୃତ୍ତିବାସ ଯେ ସରକାରୀ କଲୋନୀର କୌଣସି କୋଠରୀରେ ଠିଆ

ହୋଇଛି, ବର୍ତ୍ତମାନ ଠିଆ ହୋଇଥିବ ହୁଏତ କିମ୍ବା ଯାଦୁକରର କାଉଁରୀକାଠିର ସ୍ପର୍ଶରେ ଅନ୍ତର୍ଦ୍ଧାନ ହେବା ମଣିଷଟି ପରି ସେଠି ସେ ନ ଥିବ ବା ।

ଅନ୍ୟ ଏକ ନୂଆ ଅଧ୍ୟାୟର ଉପାଦାନ ଅନିଶ୍ଚିତ କୃତ୍ତିବାସ ।

ମା' ଖଟିଆଟି ଉପରେ ପଡ଼ିଛି ଓ ମଝିରେ ମଝିରେ କଡ଼ ଲେଉଟାଇ ଦେବାକୁ ଅସ୍ପଷ୍ଟ ସ୍ୱରରେ କୃତ୍ତିବାସକୁ ଇଙ୍ଗୀତ ଦେଉଛି । କୃତ୍ତିବାସ ଯନ୍ତ୍ରମଣିଷଟିଏ ପରି ସେ ଇଙ୍ଗୀତକୁ କାର୍ଯ୍ୟକାରୀ କରୁଛି, ଯଦିଓ ଏକା ସମୟରେ ସେ ଇଚ୍ଛା କରୁଛି ମା'ର ଅସ୍ପଷ୍ଟ ପ୍ରଶ୍ନ/ସଂଳାପ ଗୁଡ଼ିକ ତା' କାନକୁ ସ୍ପଷ୍ଟ ଶୁଣା ନ ଯାଉ ।

କୃତ୍ତିବାସ ଇଚ୍ଛାକୃତ ଭାବେ ମା'ର ପ୍ରଶ୍ନଗୁଡ଼ିକୁ ନ ଶୁଣିବାକୁ ଚାହୁଁଛି । କାରଣ ସେ ଜାଣେ ମା'ର ପ୍ରଶ୍ନ କ'ଣ ଓ ସେ ସବୁର ଠିକ୍ ଉତ୍ତର ଦେବା ପାଇଁ କୃତ୍ତିବାସ ଉପାୟହୀନ, ଯେହେତୁ ସେ ସବୁ ଉତ୍ତର ପାଇଁ ଅନ୍ୟ ଅନେକ ସରକାରୀ ବେସରକାରୀ ଅନୁଷ୍ଠାନ ଦାୟୀ । ଦୀର୍ଘ ବର୍ଷଧରି ସମସ୍ତ ଅନୁଷ୍ଠାନ ଓ କର୍ମକର୍ତ୍ତାଙ୍କୁ ଭେଟି ସେ ଏମିତି ଏକ ଅନୁଭୂତିରେ ଅତିଷ୍ଠ, କୌଣସି ଉତ୍ତର ଦେବା ଅପେକ୍ଷା ନିଶ୍ଚିତ ପ୍ରତିଶ୍ରୁତିର ଇନ୍ଦ୍ରଧନୁମାନେ କେମିତି ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ସେମାନଙ୍କର ସ୍ଥିତି ହଜାଇ ଦିଅନ୍ତି, ସେଇ କଥା ଭାବି ମୂକ ହେଇଯିବାର ମର୍ମନ୍ତୁଦ ଧାରାଟିଏ ଆପତତଃ ନିଜର ଆଦର୍ଶ ବୋଲି ଗ୍ରହଣ କରିନେଇଛି କୃତ୍ତିବାସ ।

ସେଇ କଡ଼ ଲେଉଟାଇ ଦେଉଥିବାବେଳେ ମା'ର ହାତମୁଠାରେ ଧରାପଡ଼ିଗଲା କୃତ୍ତିବାସର ହାତ । କୃତ୍ତିବାସ ଅସହାୟ ମନେକଲା ନିଜକୁ । ମା' ତା ହାତକୁ ଜାବୁଡ଼ି ଧରି ଚାହୁଁଛି ତା' ମୁହଁକୁ । ମା'ର ମୁହଁ ଅନାବୃଷ୍ଟି ଜନିତ ଫଟାଭୂଇଁ ଅରାଏ । ଯେମିତି... ମୁହଁରେ ଅଜସ୍ର କୁଞ୍ଚ ଠିକ୍ ଶିରାଳ ଫାଟମାନଙ୍କ ପରି । ତା'ରି ଭିତରେ ଗହିଡ଼ା ହେଇ ଦୁଇଟି ଶେତା ଆଖି । ସେ ଆଖିର ଶେଷ ପାଣିତକ ଜକେଇ ଆସି ଆଖି ସହିତ ସଂଯୁକ୍ତ ଫାଟଗୁଡ଼ିକରେ ଚରିଯାଇଛି । ଯେଉଁ ଆଖିର ଉଜ୍ଜ୍ୱଳତା ଅତୀତରେ କୃତ୍ତିବାସ ସାମ୍ନାରେ ଅନେକ ଫୁଲ ଫୁଟାଇ ଦେଇଥିଲା, ସେ ଆଖି ଆଜି କ୍ରମେ ନିସ୍ତେଜ ହୋଇଯାଇଛି ଓ ଚାହୁଁ ଚାହୁଁ ସେ ଦୁଇଟି ହୁଏତ ସ୍ଥିର ହୋଇଯିବ ! ଏବଂ କୃତ୍ତିବାସ ଅନୁଭବ କରିବ ସେ ଶିରାଳ ହାତ ଦୁଇଟି ଦେଇ ବରଫର ଏକ ସ୍ରୋତ ବହିଆସି ତା' ହାତକୁ ଶୀତଳ କରିଦେବ । ସେଇ ଅବସ୍ଥାରେ କେତେବେଳେ ଶୋକ-ସନ୍ତପ୍ତ ମଣିଷଟିଏ କୃତ୍ତିବାସ ଉପରେ ସବାର ହେଇଯାଇଛି ଓ ଦୁଇଟି ଲୁହବିନ୍ଦୁ ମା'ର ଗାଲକୁ ସ୍ପର୍ଶ କରିଛି ।

ମା' ପ୍ରଶ୍ନ ପଚାରୁଛି ଅଥବା ପ୍ରଳାପ କରୁଛି; ସମାନ କଥା କୃତ୍ତିବାସ ପାଇଁ,

ଯେମିତି ତା'ର ସାମ୍ପ୍ରତିକ ଅବସ୍ଥା । ସେ ବୁଝିସାରିଛି ମା' ନାମକ ବୁଢ଼ୀଟି ତା' ବଂଶଲତାର ପତମାନ ମୂଳଟି ଓ ନିଜର ଦୁର୍ବଳ ସ୍ଥିତି ଘୋଷଣା କରୁଥିବା ଶୃଙ୍ଖିଲା ଅଗ୍ରଭାଗଟି ସେ କୃତ୍ତିବାସ, ସେ ବଂଶଲତାର । ତଥାପି ସେଇ ପ୍ରଶ୍ନ ବା ମା'ର ମୃତ୍ୟୁକାଳୀନ ପ୍ରଳାପ ଆଚ୍ଛନ୍ନ ସ୍ୱପ୍ନର ପ୍ରତିଧ୍ୱନୀ ତୋଳୁଛି ତା' କାନରେ-

'ମୋ ବଂଶ ବୁଡ଼ିଗଲାରେ ବାପ, କେତେ କଥା ସେ ଲୋକେ କହିଥିଲେ- ତୋତେ ଚାକିରୀ ଦେବେ, ଜମିଦେବେ, ତୋ ପିଲାଙ୍କ ପାଇଁ ଇସ୍କୁଲ କରିଦେବେ, ଲୋକଙ୍କ ପାଇଁ ଡ଼ାକ୍ତରଖାନା, କଳକାରଖାନା କରିଦେବେ, ସେ ଧାନବିଲ ପାନବରଜ, ଧାଡ଼ି ଧାଡ଼ି ଆମ୍ବ ପଣସ ନଡ଼ିଆଗଛର ରାଜ୍ୟ ଛାଡ଼ିଲେ ତୋ ପାଇଁ ନନ୍ଦନକାନନ କରିଦେବେ; ତୋ ବାପ ବିଶ୍ୱାସ ଗଲାନି ସେ କଥାରେ; ପାଟିକଲା ପଟୁଆର କଲା, ତା' ଛାତିରେ ଗୁଳି ଭେଦିଲାରେ ବାପା ! ତୁ ପାଠପଢ଼ା ସାରି କେତେ ସଭାସମିତି କଲୁ, କେତେ ନେତାଙ୍କ ସଙ୍ଗେ ମିଶିଲୁ, କୁଆଡ଼େ ଗଲେ ସେ ନିଆଗିଳା ଗୁଡ଼ାରେ, ଶେଷରେ ମୋ ବଂଶ ବୁଡ଼ାଇଦେଲେ ! କୁଆଡ଼େ ଗଲେ ମୋ ବୋହୂ, ନାତି ନାତୁଣି ! ମୋ ସଂସାର ସବୁ ସରିଗଲାରେ, ସବୁ ସରିଗଲା ! ଦେ ଦେ ମୋତେ ଦେ ମୋ ମାଟି ମୁଠାକ, ମୋ ମାଟି ମୁଠାକ ଦେଇ ତୁ ଚାଲିଯା, ଚାଲିଯା ତୋର ଯୁଆଡ଼େ ଇଚ୍ଛା ! ମୁଁ ଆଉ ଦେଖିବିନି, ଦେଖିବାକୁ ନଥିବି, ତୋ ପିଲାଛୁଆମାନଙ୍କୁ ! ମୋ ବେଳ ସରିଗଲା, ସରିଗଲାରେ ପୁଅ ! ଦେ ଦେ ମାଟିମୁଠାକ, ତୋ ବାପ ମୋତେ ଡ଼ାକିଲାଣି, ତୋ ଭାଗ୍ୟକୁ ନେଇ ତୁ ରହ, ମୁଁ ଚାଲିଲି-' ଏମିତି କେତେ କଥା ।

କୃତ୍ତିବାସ ଠିଆ ଠିଆ କଳ୍ପନାରେ ଶୁଣିଯାଉଛି ବୁଢ଼ୀର ଅଭିମାନ/ଅନୁଯୋଗ, କ୍ଷୋଭ ଓ ଅସହାୟତାର ପ୍ରତିକ୍ରିୟା ଫୁଟି ବାହାରି ଆସୁଥିବା ଦୁଇଟି ନିସ୍ତେଜ ଆଖିର ଭାଷାରୁ ଓ ଥରିଲା ଓଠରୁ । ସେ କିଛି କରିପାରିବ ନାହିଁ, କେବଳ ଠିଆହେଇ ରହିବ ଓ ରହିଥିବ ବୁଢ଼ୀର ନିଶ୍ୱାସ ନିଶେଷ ହୋଇଯିବା ପର୍ଯ୍ୟନ୍ତ । ନିରୂପାୟ କୃତ୍ତିବାସ, ତା'ର ଅସମାର୍ଥ୍ୟ କେବଳ ଲୁହ ହୋଇ ଠୋପା ଠୋପା ନିଗିଡ଼ି ପଡୁଛି ବୁଢ଼ୀର ଶିରାଳ ଗାଲ ଉପରେ ।

କଲୋନୀର ଲୋକମାନେ ଯାଉଛନ୍ତି, ଆସୁଛନ୍ତି-ଲୌକିକତା । ସେମାନଙ୍କ ଭିତରୁ ଅନେକ ବଡ଼ ହୋଇଗଲେଣି ସ୍ରୋତର ଅନୁକୂଳରେ ଯାଇ ଓ ଦୁଇବଖୁରିଆ ଘରକୁ ମହଲାରେ ପରିଣତ କଲେଣି । ସେମାନେ ଆସୁଛନ୍ତି ଏକ ଅପଦାର୍ଥ କୃତ୍ତିବାସକୁ କିଛି ସହାନୁଭୂତି ସହିତ ନିଜର ପାରିଲାପଣ ଦେଖେଇବାକୁ । ଗାଁମାନଙ୍କରେ ମଧ୍ୟବୟସ୍କା

ବିଧବା ବୁଢ଼ୀମାନଙ୍କ ପରି ସରକାରୀ କଲୋନୀରେ ମଧ୍ୟ କେତେକ ସେମିତି ବୁଢ଼ୀ ଅଛନ୍ତି ଓ ମଝିରେ ମଝିରେ ଆସୁଛନ୍ତି, ବୁଢ଼ୀକୁ ଦେଖୁଛନ୍ତି, ଆ.. ହା କରୁଛନ୍ତି- ଆଉ ନୁହେଁ, ବୁଢ଼ୀର ବେଳ ସରିଆସିଲାଣି। କୃତ୍ତିବାସକୁ ଶାନ୍ତ୍ୱନା ଦେଇଛନ୍ତି: ଆଉ ଲାଭ କ'ଣ! ସେ ତା' ବାଟ ଧରିଲାଣି, ବୁଢ଼ୀର ସତ୍କାର କରିଦେ, କିଛି ଗୋଟେ ଧନ୍ଦା କର। ଆମରି ଆଗର ପିଲା ତୁ, ବୁଢ଼ା-ହଡ଼ା ହୋଇଯାଇନୁ, ଘର-ସଂସାର କର... ମଣିଷ ତ ଦଇବ ହାତରେ ଗାଈ, ଚିନ୍ତାକରି ଲାଭ କ'ଣ ଏମିତି କେତେ କଥା।

ଯଦିଓ ଏଇ ପ୍ରକାର ସହାନୁଭୂତି ପ୍ରକାଶ କରିବା ସେମାନଙ୍କର ଏକ ବେଉସା ଏବଂ ହୃଦୟର ଆବେଗ ଅପେକ୍ଷା ଏକ ଚିରକାଳୀନ ମଜ୍ଜାର ଆସ୍ୱାଦରେ ସେମାନେ ଚଳପ୍ରଚଳ। ଅପେକ୍ଷା କରିଥାନ୍ତି ଏହିସବୁ ବିପଦମାନଙ୍କୁ/ଲୋକମାନଙ୍କର ଯନ୍ତ୍ରଣାମୟ ସମୟକୁ, ଯେତେବେଳେ ନିଜର ଅସନା ପଣତକୁ ଆଖିରେ ଜାକିଧରି କିଛି ସକେଇ ହେବେ, ତମକୁ ଛୁଇଁଲା ପରି ଖେଞ୍ଚିଲା କଥା (ବାହାରକୁ ବଡ଼ ଶାଳୀନ) କହି ପୁଣି ଚାଲିଯିବେ ନିଜ ନିଜ ଧନ୍ଦାରେ। ଏ ସମ୍ପ୍ରଦାୟଟା ସବୁବେଳେ ଭାବନ୍ତି ମୃତ୍ୟୁ ବା ସ୍ୱାଭାବିକ ଦୁଃଖ-କଷ୍ଟ ଏମାନଙ୍କର ନାହିଁ; ଆସିଲେ ଥୋବରା ମନ-ପ୍ରାଣରେ ଆଦରି ନିଅନ୍ତି ତାକୁ।

ଅଭ୍ୟାସ ତ!

ସେମାନେ ଫେରିଯାଇଛନ୍ତି। ସେମାନଙ୍କର ସହାନୁଭୂତି/ଲୌକିକତାର କଥାସବୁ ଫେରିଆସୁଛନ୍ତି ପ୍ରତିଧ୍ୱନି ପରି।

ଅବିଚଳିତ କୃତ୍ତିବାସ।

ଶକ୍ତ କାନ୍ଥକୁ ବୋଲୁଅ ଫିଙ୍ଗି ଦୁର୍ବଳ କରାଯାଇ ନପାରେ। କୃତ୍ତିବାସ ଏସବୁ ଧାରାରେ ପରିପକ୍ୱ... ତା' ମନରେ ଚାଳିଶ ବର୍ଷର ଅଭିଜ୍ଞତା-ଶାନ୍ତ ଓ ଆଲୋଡ଼ିତ ପରିସ୍ଥିତିରେ।

ମା' କୃତ୍ତିବାସର ହାତକୁ କ୍ରମେ ଭିଡୁଛି, ତା' ସ୍ୱର ସ୍ପଷ୍ଟ ହେଉନି, ସେ କ'ଣ ଖୋଜୁଛି- 'ଦେ ଦେରେ ମାଟିମୁଠାକ, ମୁଣ୍ଡତଳେ ଥୋଇ ତାକୁ ଆଖି ବୁଜେ, ନିଜ ଭିଟାମାଟିରେ ଶାନ୍ତିରେ ଟିକେ ଆଖି ବୁଝିବାକୁ ତ ସେମାନେ ସୁଯୋଗ ଦେଲେ ନି, ଅଗତ୍ୟା ମାଟିମୁଠାକ ନେଇ ଆସିଥିଲି ମରିବା ବେଳେ ସାଙ୍ଗରେ ନେବାକୁ, ମାଟିର ମାୟା କିଏ ଛାଡ଼ିପାରେ ଏ ଦୁନିଆରେ, କେତେ ମୁଣ୍ଡ ଫଟାଫଟି, କେତେ ରକ୍ତର

ହୋଲି ଖେଳ ! ତୋ ବାପା ତ ସେଇ ମାଟି ଅରାକ ପାଇଁ ସେ ମାଟିକୁ ନିଜ ଛାତିର ରଙ୍ଗରେ ଲାଲ୍ କରି ଦେଲା ! ଦେ ଶୀଘ୍ର ଦେ ! ସମୟ ନାହିଁ ହାତରେ-'

ସନ୍ଧ୍ୟା ଆସିଯାଇଥିଲା ।

କଲୋନୀ ଭିତରୁ ଶଙ୍ଖ-ଘଣ୍ଟର ଶବ୍ଦ... କ୍ରମେ ରାତି । କୃତ୍ତିବାସ ମା' ହାତରୁ ନିଜ ହାତଟିକୁ ମୁକୁଳେଇ ନେଲା... ଏକ ଅଣାୟତ୍ତ ଦୋଷବୋଧରେ ଘାରିହେଉଥିବା ବେଳେ ଡ଼ିବିରୀଟିରେ ନିଆଁ ଧରାଇଲା । ଆପାତତଃ ସେ ବୁଝିଛି ମା' ଖୋଜୁଥିବା ପଦାର୍ଥଟିକୁ । ସେ ମୁଠାଏ ମାଟି ଘର ଛାଡ଼ିଲା ବେଳେ ବୁଢ଼ୀ କବଟା ଖଣ୍ଡକରେ ବାନ୍ଧି ଛାତିରେ ଜାକି ଧରି କେବଳ ଲୁହ ଗଡ଼ାଉଥିଲା ଓ ଭାଗ୍ୟକୁ ନିନ୍ଦି କାହା ଉଦ୍ଦେଶ୍ୟରେ ମନେ ମନେ ଗୁଡ଼ାଏ ଅଭିସଂପାତ ବର୍ଷଣ କରୁଥିଲା । ଏତେଦିନ ଧରି ସେ ମାଟିମୁଠାକ କଲୋନୀର ସେଇ ଦୁଇବଖୁରୀଆ କୋଠରୀରେ କେଉଁଠି ମାଟି ହେଇଯାଇଛି ହୁଏତ । ତାକୁ ଖୋଜି ପାଇବା କୃତ୍ତିବାସ ପାଇଁ ବର୍ତ୍ତମାନ ସମ୍ଭବ ନୁହେଁ ବୋଲି ଜାଣି ସବୁ ଦୁଃଖ ପରି ସେ ତାକୁ ମଧ୍ୟ ଏଡ଼ାଇ ଯିବାକୁ ଚେଷ୍ଟା କରୁଛି । ସେ ଡ଼ିବିରୀଟି ଧରି ପାଖ ବଖରାକୁ ଗଲା । ତା'ର ବହୁଦିନର ପୁରୁଣା ଜଙ୍କଲଗା ଟ୍ରଙ୍କଟି ଖୋଲିଲା ହୁଏତ ମା'ର ଅତିପ୍ରିୟ ମାଟିମୁଠାକ ସେଇଠି ଥିବ !

କୃତ୍ତିବାସର ଦେହ ଶିତେଇ ଉଠିଲା ଗୋଟିଏ ଦୃଶ୍ୟରେ । କନା ଖଣ୍ଡକ କସରା ପଡ଼ିଯାଇଛି ଓ ଟୁକୁରା ଟୁକୁରା ହେଇ ଟ୍ରଙ୍କ୍ ଦେହରେ ଜଡ଼ିଯାଇଛି; ପୁଣି ମାଟିମୁଠାକ ତଳ ଅଂଶରେ ଟ୍ରଙ୍କ୍‌ର ଜଙ୍କ୍ ସହିତ ମିଶିଯାଇଛି ତା' ଶିକ୍ଷାର ପ୍ରାମାଣିକ ସନ୍ତକ ସାର୍ଟିଫିକେଟ୍‌ମାନଙ୍କ ସହିତ । ସେ ସବୁ ମିଶି ତାକୁ ଲାଗୁଛି ଏକ ପ୍ରାକ୍ ଐତିହାସିକ ସମୃଦ୍ଧ ସହରର ଧ୍ୱଂସାବିଶେଷ ପରି, ଯାହାକୁ ଜଣେ ଜୀର୍ଣ୍ଣ ଐତିହାସିକ ସେ କୃତ୍ତିବାସ ନୂଆ କରି ଆବିଷ୍କାର କରୁଛି । ଏ ଆବିଷ୍କାର ଉଲ୍ଲାସ ଉନ୍ମାଦନର ନୁହେଁ, ଏକ ମର୍ମନ୍ତୁଦ ଅନୁଭୂତିର ।

କୃତ୍ତିବାସ ସ୍ୱପ୍ନ ଦେଖୁଛି.. ରାଜନୀତି ବିଜ୍ଞାନରେ ଏମ୍.ଏ କରି ସେ ଗାଁକୁ ଫେରୁଥାଏ । ସନ୍ଧ୍ୟାରେ ବସ୍‌ରୁ ଓହ୍ଲାଇ ସେ ଗାଁକୁ ମୋହୁଁଥିଲାବେଳେ ତା' ସାଙ୍ଗସାଥୀ ଦଳେ ଟୋକା ପଛରୁ ଡ଼ାକିଦେଲେ- କୁନାଭାଇ ନା କିଏ ହୋ ! (କୃତ୍ତିବାସର ଶ୍ରଦ୍ଧା ନାମ କୁନା) ସେ ଅଟକିଗଲା । ଅଧାବାଟରୁ ପାଠ ବନ୍ଦ କରିଥିବା ସାଙ୍ଗମାନେ; ମୁହଁରେ ସମସ୍ତଙ୍କର ସଂଶୟର ଚିହ୍ନ । କ'ଣ କିଛି ଘଟିଯାଇଛି ବୋଧହୁଏ ଗାଁରେ, ଭାବିଲା କୃତ୍ତିବାସ । ଜଣେ ବାହାରି ଆସି କହିଲା- ଜାଣିଲଣି ଆମ ଗାଁ ଏଠୁ ଉଠିଯିବ । ସରକାର

ଗୋଟିଏ ଗୋଳାବାରୁଦ କାରଖାନା ବସାଇବେ । କଥାଟା ଗୁପ୍ତରେ ରହିଛି । ବିରୋଧୀ ଦଳବାଲା କେଉଁଠି ଗୁପ୍ତ ଖବର ଆଣି ଗାଁର ମୁଖିଆମାନଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିଦେଲେଣି । ତୁମେ କହିଲ କଥାଟା ଯଦି ସତ ହୋଇଥାଏ !

କୃତ୍ତିବାସ ଏମିତି ଗୋଟାଏ ଘଟଣା ଘଟିବାର ସୁରାକ ଅବଶ୍ୟ ପାଇଥିଲା ସମ୍ବାଦପତ୍ରମାନଙ୍କରୁ । ତେବେ ସେହି ସ୍ଥାନଟି ଯେ ତାଙ୍କ ନିଜର ଗାଁ, ଏକଥା ତଥାପି ତା' ଚିନ୍ତାକୁ ଆସି ନଥିଲା । ହଉ, ଦେଖାଯାଉ କ'ଣ ହେଉଛି, କହି କୃତ୍ତିବାସ ଗାଁର ଭଲମନ୍ଦ ପଚାରି ପଚାରି ଚାଲିଲା । ପଛରେ ଆଶଙ୍କା ଓ ଅନିଶ୍ଚିତତାର ଏକ ଛୋଟ ଶୋଭାଯାତ୍ରା ।

ଘଟଣାର କ୍ରମ ବଦଳିବାକୁ ଲାଗିଲା । ସମ୍ବାଦପତ୍ରରେ ସରକାରୀ ଇସ୍ତାହାର ପ୍ରକାଶ ପାଇଲା ଓ ସେଠାରେ କାରଖାନା ହେବାର ଯୁକ୍ତି-ପ୍ରତିଯୁକ୍ତିରେ ଏକ ବୌଦ୍ଧିକ ଲେଖାଲେଖି ସମୟକ୍ରମେ ରାଜନୈତିକ ରୂପରେଖ ନେବାକୁ ଲାଗିଲା । ନିଜର ସ୍ଥିତି ଘୋଷଣା କରିବାକୁ ବିରୋଧୀ ଦଳର ନେତାଙ୍କ ଠାରୁ ଆରମ୍ଭ କରି ସାଧାରଣ କର୍ମୀ ପର୍ଯ୍ୟନ୍ତ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ପ୍ରଥମେ ପ୍ରଥମେ କୃତ୍ତିବାସକୁ ଘଟଣାଟି କେମିତି ଗୋଟାଏ ଆମୋଦ ଦେଇଥିଲା । କିନ୍ତୁ ହଠାତ୍ ଏକ ଅପରାହ୍ଣରେ ତା'ର ସମସ୍ତ ସତ୍ତା ଯେମିତି ବିଦ୍ରୋହୀ ହୋଇପଡ଼ିଲା । ତା' ସାମ୍ନାରେ ଠିଆ ହୋଇଥିଲା, ମାମି, ଶେଷବର୍ଷର ଅନର୍ସ ଛାତ୍ରୀ । ସ୍ଥାନୀୟ କଲେଜର ଓ ଭିନ୍ନ ସଂପ୍ରଦାୟର ଗାଁ ଝିଅଟିଏ ହେଇଥିଲେ ବି କୃତ୍ତିବାସ ତା ସହିତ କେମିତି ଭାଗବତ ସମ୍ପର୍କ ସ୍ଥାପନ କରିଥିଲା କେତେବର୍ଷରୁ । ଅବଶ୍ୟ ପରିଣତିଟା ବିବାହ କି ଆଉକିଛି ସେ ପର୍ଯ୍ୟନ୍ତ ସେ ସ୍ଥିର କରି ନ ଥିଲା । ସେଇ ଅପରାହ୍ଣରେ ସମସ୍ତ ଦୃଶ୍ୟପଟ ଏକ ଭିନ୍ନ ରୂପରେ ତାକୁ ଦେଖାଦେଲେ: ସାମ୍ନାର ଅସଂଖ୍ୟ ଆମ୍ବ ପୋଲାଙ୍ଗ ପଣସ ନଡ଼ିଆଗଛ, କଣ୍ଟିଆରେ ଦିଗନ୍ତକୁ ଛୁଇଁ ଯାଇଥିବା ସୋରିଷ ଧନିଆ କ୍ଷେତର ରାଶି ରାଶି ସୁବର୍ଣ୍ଣ ସ୍ୱଟିକର ଫୁଲ, ଓଢ଼ଣା ଫାଙ୍କରୁ ନବବଧୂର ସଲ୍ଲଜ ଦୃଷ୍ଟି ପରି ପାନବରଜରୁ ଅରାଏ ଅରାଏ ମାଟି ସବୁ ଭିତରେ ଯେମିତି ମାମିର ଅନୁଯୋଗଭରା ଆଖି : କୁନାଭାଇ କେମିତି ଏ ମାଟିର ମୋହ ଛାଡ଼ି ଆମେ ଚାଲିଯିବା କେଉଁ ଏକ ଅନିଶ୍ଚିତ ରାଜ୍ୟକୁ ? କୃତ୍ତିବାସ ସେଦିନ ପ୍ରଥମଥର ପାଇଁ ମାମିକୁ ସ୍ପର୍ଶ କଲା ଏବଂ ଏମିତିକି ପରିବେଶ/ପରିସ୍ଥିତି, ଲୋକ/ଲୌକିକତାକୁ ଭୁଲି ତାକୁ ଜାବୁଡ଼ି ଧରିଲା । ଏଇ ମାଟି ହିଁ ତା'ର ସ୍ୱପ୍ନ, ତା'ର ମାମି... ଗଣତନ୍ତ୍ରର ରାଜ୍ୟରେ ନାଗରିକ ମୁଖ୍ୟ, ସରକାର ଗୌଣ... ମାମି !

ଆମେ ବଞ୍ଚିଲେ ଏଇଠି ବଞ୍ଚିବା, ମରିଲେ ବି ଏଇଠି ମରିବା ।

ସନ୍ଧ୍ୟା ନଇଁ ଆସିଥିଲା । ଦୁଇ ବିପରୀତ ଦିଗରେ ଦୁଇଟି ଶପଥ ପୃଥକ ପୃଥକ ଅନ୍ଧକାରରେ ମିଶିଗଲେ ।

ରାତିରେ ଗଣ୍ଡେ ଖାଇଦେଇ ସେ ଗଡୁଥିଲା ବିଛଣାରେ । ନିଦ ନାହିଁ, ସେଇ ଗୋଟିଏ କଥା, ସେ ମାମିର – ଏ ମାଟି ଆମେ ଛାଡ଼ିବା ନାହିଁ । ବାପାଙ୍କ ସ୍ୱର ଶୁଣାଯାଉଥିଲା । ସେ ଖାଉଥିଲେ ବୋଧହୁଏ । ତାଙ୍କ କଣ୍ଠରେ ଉତ୍ତେଜନା: ଶଳା, ଲୋଭ ଦେଉଛନ୍ତି: କାରଖାନା ହେବ, ସେଥିରେ ଘରପିଛା ଜଣକୁ ଚାକିରୀ ମିଳିବ, ଜମି କ୍ଷତିପୂରଣ ଟଙ୍କା, ଆମ ଭାଗ୍ୟ ବଦଳେଇ ଦେବେ... ଦେଶର ସ୍ୱାର୍ଥ ପାଇଁ ହେଉଛି ତ ହେଉ ସେ ପାଇଁ ଆମେ ମରୁଁ । ଦେଶର ଭଲ ପାଇଁ ଗୋଟେ ପାଞ୍ଚଟା ଗାଁର ଲୋକ ମରିଗଲେ କ'ଣଟା ଏବେ ଭାସିଗଲା ! ବାପା ରାଗରେ ଗାରୁ ଗାରୁ ହେଉଥିଲେ । ମା' ପ୍ରତିବାଦ କଲା: କେଡ଼େ କେଡ଼େ ଟାଣୁଆ ଲୋକ ଅଛନ୍ତି, ସେମାନେ ବୁଝିବେନି, ତମେ କାହିଁକି ମୁଣ୍ଡ ଗରମ କରୁଚ ! ଘର ଢେଙ୍କିତ କୁମ୍ଭୀର, କହିବ କାହାକୁ ମଣିଷ । ବଡ଼ବଡ଼ିଆଙ୍କୁ ସରକାରୀ ଲୋକେ ହାତ କରିନେଲେଣି । ନୂଆ କଲୋନୀ, କାରଖାନାର ସେମାନେ କଣ୍ଟ୍ରାକ୍ଟରୀ ନେବେ... ଆମେ ଠିକ୍ କରିଛୁଁ ସେଥିବେ ଭଳିବୁ ନାହିଁ । ବିଦେଶୀ ସରକାର ଏ ରକ୍ତରେ ହୋରି ଖେଳିଥିଲା, ଏବେ ଦେଶିଆ ସରକାର ଖେଳିବ–ବାପାଙ୍କର ସ୍ୱର କ୍ରମେ କ୍ଷୀଣ ହୋଇଆସିଲା ଓ ମା' ବାହାର ଘର କବାଟ ବନ୍ଦ କଲା ବୋଧହୁଏ ।

ଅକସ୍ମାତ ଦିନେ ଦେଖାଗଲା ଗାଁରେ ଗୋଟିଏ ସରକାରୀ ଅଫିସ୍ ଖୋଲୁଛି, ଲୋକସମ୍ପର୍କ ବିଭାଗର । ମୋଟା ହୋଇ ଗେଡ଼ା ଲୋକଟିଏ ଆସିଲା । ଲୋକଟା ଅବଶ୍ୟ ମଜାଦାରିଆ, ହେଲେ ଆଖି ଦି'ଟା ବାଘ ପରି ଜଳୁଥିଲା । ଅଳ୍ପ କେଇଟାଦିନରେ ସେ ଅଞ୍ଚଳଟାକୁ ନିଜର କରିନେଲା । ବେଶି ବୟସର ନୁହେଁ, ଅଥଚ ବୁଢ଼ାଙ୍କ ପରି କଥାବାର୍ତ୍ତା, ଚାଲିଚଳଣ.... ସମସ୍ତଙ୍କ ମନରେ ସ୍ୱର୍ଗର ଏକ ନୂତନ ଚିତ୍ର ସେ ଆଙ୍କିଦେଲା । କୃତ୍ତିବାସ ଦବିଯାଉଥିଲା, ପ୍ରତିରୋଧଟା ପାଣିଚିଆ ଧରିଯିବ କି !

ନାଁ, ବୋଧହୁଏ ମାଟିର ମାୟାତ !

ଆକାଶରେ ହେଲିକପ୍ଟର ଚକର କାଟୁଛି, ସର୍ଭେ କରୁଛି ଅଞ୍ଚଳଟାକୁ । ଏମିତି ଚାଲୁ ଚାଲୁ ହଠାତ୍ ଦିନେ ଏକ ଜଟିଳ ପରିସ୍ଥିତି ସୃଷ୍ଟି ହେଲା । ସେଦିନ ଅନେକ ପୋଲିସ୍ ଗାଡ଼ି ଗାଁ ମୁଣ୍ଡରେ ଅଟକିଲେ ଓ ସ୍କୁଲ ଘରକୁ ଜବର ଦଖଲ କରି ତିନି ଚାରି ପ୍ଲାଟୁନ ଏପିଆର୍ ଫୋର୍ସ ରହିଗଲେ । ପରେ ପରେ ଗୋଟିଏ ମିଲିଟାରୀ କାର୍ ସହିତ

କେତେକ ସିଭିଲିଆନ୍ କାର୍ ଲାଗିଲା । ଗାଁରେ ଆଲୋଡ଼ନ । ଘରେ ଶୋଇ କୃତ୍ତିବାସ ଶୁଣିଲା କିଛି ସ୍ଲୋଗାନ୍- 'ମରିବୁ ପଛେ ଛାଡ଼ିବୁ ନାହିଁ । ସେଇ ସ୍ଲୋଗାନ୍ ଭିତରେ ତା' ବାପାଙ୍କ ସ୍ୱର ବାରିହୋଇ ପଡୁଥିଲା... କିଛି ହୋ ହୁଲ୍ଲା ଓ ପରେ ପରେ ଗୁଳି ଫୁଟିବାର ଶବ୍ଦ । କୃତ୍ତିବାସ ବାହାରକୁ ଉଠିଆସିଲା... ପିଲା-ଛୁଆ, ସ୍ତ୍ରୀ ପୁରୁଷ ଅନ୍ଧାଧୁନିଆ ଦଉଡୁଛନ୍ତି । ବନ୍ଧୁକ ଗୁଳିରେ ପାଞ୍ଚ ଦଶଟା ଲୋକ କୁଆଡ଼େ ଟଳିପଡ଼ିଛନ୍ତି । କୃତ୍ତିବାସ ଗୋଟିଏ ଦୃଶ୍ୟରେ ସ୍ତବ୍ଧ ହୋଇ ଠିଆହୋଇଥିଲା- ତା' ବାପାର ରକ୍ତ ଜୁଡ଼ବୁଡ଼ ଶରୀରଟାକୁ କେତେକ ଲୋକ ଟେକିଆଣି ତାଙ୍କ ଘର ସାମ୍ନାରେ ଶୋଇଦେଲେ ଓ ତା'ର ମା' ବାହୁନି ବାହୁନି ଅଚେତ ହୋଇଗଲା । କେହି କାହାକୁ ସାହା ଦେବାକୁ ନାହିଁ, ଭୟରେ ଘରେ ତାଟିକବାଟ । ତା' ସହିତ କୃତ୍ତିବାସ ଶୁଣିଲା ସେଇ ଶୋଭାଯାତ୍ରାରେ ତାକୁ ଖୋଜୁ ଖୋଜୁ ମାମି ବି ପୋଲିସ୍ ଗୁଳିର ଶିକାର ହୋଇଛି ।

କିଛିଦିନ ପରେ ପୋଲିସର ତତ୍ତ୍ୱାବଧାନରେ ପ୍ରତି ଘରୁ ଗୋଟିଏ ଯୋଡ଼ାରୁ ପାଞ୍ଚ ଦଶଟା କରି ବଳଦଗାଡ଼ିର ଶୋଭାଯାତ୍ରା ବାହିରାଲା ନୂଆ କରି ଗଢ଼ିଉଠିଥିବା କଲୋନୀକୁ ।

କୃତ୍ତିବାସ ପ୍ରକୃତିସ୍ଥ ହେଲା । ମା'ର ବେଳ ସରି ଆସୁଛି । ଭୂତ ଲାଗିଲା ପରି ଟ୍ରଙ୍କର ଭିତରକୁ ହାତରେ ରାମ୍ପୁଡ଼ି ରାମ୍ପୁଡ଼ି କାଗଜ କନାର ଟୁକୁରା ସହିତ କିଛି ଚୂନା ଜିନିଷ ସଂଗ୍ରହ କଲା ଓ ତାକୁ ଗୋଟାଇ ହାତରେ ଧରି ମା' ଶୋଇଥିବା ବଖୁରୀକୁ ଦଉଡ଼ିଗଲା । ମା'ର ମୁଣ୍ଡ ଢ଼ଳିପଡ଼ିଥିଲା, କୋଟରଗତ ଆଖିଦୁଇଟି ଅଧାମେଲା । କୃତ୍ତିବାସର ଗୋଡ଼ତଳୁ ମାଟି ଗଳିଯାଉଛି । ସେ ପଡ଼ିଉଠି ଖଟିଆ ପାଖକୁ ଗଲା ଓ ହାତରେ ଧରିଥିବା ଜିନିଷତକ ମା'ର ମୁଣ୍ଡ ପାଖରେ ଅଜାଡ଼ି ଦେଇ ମା'ର ଦେହଟିକୁ ଜାବୁଡ଼ି ଧରିଲା, ଯେମିତି ଚର୍ମ ଓ ହାଡ଼ଖଣ୍ଡର ବରଫ ପିଣ୍ଡଟିଏ ।

ନିର୍ବାକ୍ କୃତ୍ତିବାସ । ତା' ଆଖିର ଲୁହ ଓ ହୃଦୟର ଆବେଗ ବରଫର ସଂସ୍ପର୍ଶରେ କଠିନ ହୋଇଯାଇଥିଲା ।

ସେଦିନ ରାତିରେ ଅବଶିଷ୍ଟ ଯାହା ଘଟିଲା, ତାହା କୃତ୍ତିବାସ ଓ ସେଇ ମଲାବୁଢ଼ୀର ଶବ ଖବର ରଖିଥିବେ ।

କିନ୍ତୁ ପରଦିନ ସକାଳୁ ଦେଖାଗଲା କଲୋନୀର ପୁରୁଷ-ସ୍ତ୍ରୀ ଲୋକମାନଙ୍କର ଭିଡ଼ ଜମିଛି । ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ- କୃତ୍ତିବାସ କୁଆଡ଼େ ଗଲା ? ଶ୍ମଶାନରେ

ଶବ ସତ୍କାରର ଚିହ୍ନ ରହିଛି । କୃତ୍ତିବାସ !

ସେମାନଙ୍କ ଭିତରେ କଥାବାର୍ତ୍ତା ହେଲା କୃତ୍ତିବାସ ନକ୍‌ସଲାଇଟ୍ ହୋଇଯିବ ! ଆଉ କେହି କହିଲେ-ନାଁ ଟୋକାଟା କମ୍ ଜିଦ୍‌ବାଜ ନୁହେଁ, ନିଶ୍ଚୟ ସେ ଯା'ର ପ୍ରତିଶୋଧ ନେବ । ଦେଖ, ସାବଧାନ ! କଲୋନୀକୁ ନୂଆ ବିପଦ ଘନେଇ ଆସିଲା-ସେ ସନ୍ତ୍ରାସବାଦୀ ହେବ ତ ଗୋଟି ଗୋଟି କରି ଚିହ୍ନି ରଖିଛି, ଗୁଳି ମାରି ଶେଷ କରିବ । ସାମାନ୍ୟ ଦୂରରେ ବସିଥିବା ବୁଢ଼ାଟିଏ ବଡ଼ ହାଇଟାଏ ମାରି ଖୁଁ ଖୁଁ କାଶିଲା ଓ ଉଠିପଡ଼ି ନାଲିଗାମୁଛାଟା ଝାଡ଼ିଦେଇ କାନ୍ଧରେ ପକାଇ କଲୋନୀର ତା' ଘରକୁ ଫେରିବାକୁ ବାହାରୁଥିଲାବେଳେ କହୁଥିଲା- ଯେ ଗଲା- ସେ ଗଲା ଜାଣ-ଆଉ ଗୁଳି ମାରିବ, ନକ୍‌ସଲାଇଟ୍ ହେବ ! ମା'ଟା ଚାଲିଗଲା ସେ କାହିଁକି ରହନ୍ତା... ବିଚାରା ଦେଶାନ୍ତରୀ ହେଲା... ଜାଣ ଅଗଣି ଦାସର ବଂଶ ବୁଡ଼ିଗଲା; ବୁଢ଼ାର କଣ୍ଠସ୍ୱର କ୍ରମେ ଭାରି ଜଣାଯାଉଥିଲା ।

ଏଇପରି ଦ୍ୱନ୍ଦ୍ୱ/ଆଶଙ୍କା/ଚିରାଚରିତ ଅଭ୍ୟାସର ମଣିଷମାନେ ଗୋଟିଏ ଗୋଟିଏ ସେ ସ୍ଥାନ ଛାଡୁଥିଲେ ଓ କେହି ସେ ଘର ଉପରେ ଆଖି ରଖିଥିଲା-ଆଉ କ'ଣ କୃତ୍ତିବାସ ଫେରିବ, ବରଂ ଘରଟିକୁ ଯଥାଶୀଘ୍ର ତାଲା ପକେଇ ଦେଲେ କଥା ସରିବ ।

ଠିକ୍ ସେତିକିବେଳେ କୌଣସି କଥାକୁ ଖାତିରି ନ କରି ପଡ଼ିଶା ପିଣ୍ଡାର କଅଁଳ ଖରାରେ ପିଲାଟିଏ ବସି 'ନଗରବିଜ୍ଞାନ' ବହିଟି ବଡ଼ ପାଟିରେ ପଢୁଥିଲା: ଭାରତ ଗୋଟିଏ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର । ଏହାର ଏକ ସମ୍ବିଧାନ ରହିଛି । ଏହି ସମ୍ବିଧାନରେ ନାଗରିକମାନଙ୍କ ପାଇଁ କେତେକ ମୌଳିକ ଅଧିକାର ରହିଛି । ଏକରେ ସମ୍ପତ୍ତିର ଆଇନଗତ ଅଧିକାର, ଦୁଇରେ କହିବାର ଅଧିକାର, ତିନିରେ ତିନିରେ, ହଁ ତିନିରେ ଶୋଷଣ ବିରୁଦ୍ଧରେ ଅଧିକାର... ।



# ରଘୁନାଥ ହସୁଛି କେମିତି

ରଘୁନାଥ ପ୍ରବଳ ହସେ ।

ଏମିତିକି ସେ ହସୁଥିବାବେଳେ ତା' ସହକର୍ମୀମାନେ ଆଶ୍ଚର୍ଯ୍ୟ ହୁଅନ୍ତି ଓ ରଘୁନାଥ ଏକ ସୁସ୍ଥ ମାନସିକତାର ମଣିଷ କି ନୁହେଁ ସେ ସମ୍ପର୍କରେ ନିଜ ନିଜ ମଧ୍ୟରେ ଏକ ଫୁସ୍‌ଫାସ୍ ଆଲୋଚନା ଦେଇ ଅନିଶ୍ଚିତତାର ଏକ ରାଜ୍ୟକୁ ଠେଲି ହୋଇଯାନ୍ତି ।

ରଘୁନାଥ କଣେଇ କଣେଇ ସେମାନଙ୍କୁ ଲକ୍ଷ୍ୟକରି ଓ ପୁନର୍ବାର କୌଣସି ନୂଆ ପ୍ରସଙ୍ଗ ଉଠାଇ ସେମାନଙ୍କ ଆଲୋଚନାକୁ ପାଣି ଫଟାଇ ଦିଏ ତା' ଠୋ... ଠୋ... ହସ ଭିତରେ ।

ରଘୁନାଥ କୌଣସି ଆମେରିକାନ୍ ସାଇଣ୍ଟିଷ୍ଟର ନୂତନ ଆବିଷ୍କାର, 'ମଣିଷ ଦିନରେ ଦୁଇ ଘଣ୍ଟା ହସିଲେ ତା'ର ସ୍ୱାଭାବିକ ଆୟୁଷ ଠାରୁ ଅଧିକ ଡ଼ଂ ବର୍ଷ ବଞ୍ଚିପାରେ', ଦ୍ୱାରା ପ୍ରଭାବିତ ହୋଇ ନୁହେଁ; ବରଂ ତା ପିଲାକାଳରୁ ହସର ଏକ ପରମ୍ପରା ଦେଇ ବୁଝି ପାରିଛି, ହସ ବଞ୍ଚିବାର ଏକ ସଫଳ ବଟିକା ଓ ଉତ୍ତରାଧିକାର ସୂତ୍ରରେ ତାକୁ ହାସଲ କରି ଏବେ ବୟସର ଦ୍ୱିତୀୟାର୍ଦ୍ଧରେ ଏଇ ଅଭ୍ୟାସଟିକୁ ବଞ୍ଚାଇ ପାରିଥିବାରୁ ଏଇ ପରମ୍ପରାର ଦୁଇଜଣ ପ୍ରତିନିଧି ତା'ର ବାପା ଓ ବଡ଼ବାପାଙ୍କ ପ୍ରତି ମନେମନେ କୃତଜ୍ଞତା ପ୍ରକାଶ କରେ ।

ଶୂନ୍‌ଠାରୁ ଆରମ୍ଭ ସେଇ ରାସ୍ତାଧାରରେ କେତେ ରଙ୍ଗର ଫୁଲ, ଟାଙ୍ଗର ଭୂଇଁ,

ସବୁଜପ୍ରାନ୍ତର, ଖୋଲା ପଡ଼ିଆର ଝଙ୍କାଳିଆ ବରଗଛ, ନଈ ବନ୍ଧର ପଥର ଚଟାଣ, ଗୋରୁ-ଗାଈ, ମଣିଷ-ମଟରର ସାର୍ବଜନୀନ ରାସ୍ତା ଓ ସେଇ ପଥର ଚଟାଣ ତଳେ ପରୁଷ-ସ୍ତ୍ରୀ ମାନଙ୍କର ଗାଧୁଆ ଦୃଶ୍ୟ ଭିତରେ ଛନ୍ଦିହୋଇ ପଡୁଥିବା କିଶୋର ରଘୁନାଥ ସବୁକଥା ଭୁଲିଯାଏ; ଆସନ୍ନ ସନ୍ଧ୍ୟାରେ ଦୁଇଜଣ ପ୍ରୌଢ଼ଙ୍କର ଘର ଲେଉଟାଣି କଥାବାର୍ତ୍ତା ଓ ମଝିରେ ମଝିରେ ଠୋ...ଠୋ.. ହସର ଶବ୍ଦରେ ସେମାନଙ୍କ ନିକଟକୁ ଦଉଡ଼ିଯାଇ ଦୁଇଟି ଛତାକୁ କାନ୍ଧରେ ପକାଇ 'ଗାର୍ଡ୍ ଅଫ୍ ଅନର୍' ସହିତ ଯେମିତି ପାଛୋଟି ଆଣେ ଗାଁ ଆରମ୍ଭର ସେଇ ବୁଢ଼ୀ ଠାକୁରାଣୀ ମନ୍ଦିର ନିକଟକୁ । ସେ ଭଲଭାବରେ ଜାଣିଥାଏ ଏ ପର୍ବ ଏତିକିରୁ ଶେଷ ନୁହେଁ, ପୁଣି ସନ୍ଧ୍ୟା ଆସରରେ ସାମିଲ୍ ହୋଇ ପୁନର୍ବାର ଆହ୍ଲାଦିତ ହେବ ସେ ।

ସାଁବାଳୁଆର କୋଷ ମଧ୍ୟରୁ ଚିତ୍ରିତ ପ୍ରଜାପତି ମୁକୁଳିଗଲା ପରି ଏବକୁ ସିନା ରଘୁନାଥ ସାମ୍ନା କରି ଆସିଲା ପ୍ରାୟ ଅର୍ଦ୍ଧ ଶତାବ୍ଦୀର ସ୍ୱପ୍ନ ଓ ସ୍ୱପ୍ନଭଂଗର ସମୟକୁ; କିନ୍ତୁ କିଶୋରର ସେ ଶୀତଳ ଛାଇରୁ ଯେ ସେ ମୁକ୍ତ ହୋଇ ପାରିନି ଏକଥା କାହାକୁ ସେ ବୁଝାଇବ ଏଇ ବ୍ୟକ୍ତିକୈନ୍ଦ୍ରିକ-ସ୍ୱାର୍ଥସର୍ବସ୍ୱ ସମୟରେ ।

ସମକର୍ମୀମାନଙ୍କର ବୌଦ୍ଧିକ ଆଲୋଚନା: ବେସିକ୍ ପେ- ସିଲେକସନ୍ ଗ୍ରେଡ୍-ରିଡ଼ର - ସିନିଅର ଅଧ୍ୟାପକ ଝିଅ ବାହାଘରରେ ଆବସେଲୁଟ୍ଲି ନୋ ଡ଼ାଉରୀ (କେବଳ ପାଶ୍‌ବୁକ୍‌ରେ ପଚାଶ ହଜାର ଟଙ୍କା) ତୁ ଶଳା ତୋ ଜୀବନରେ କିଛି କରିପାରିବୁନି, ଏଟେଣ୍ଡାନ୍‌ସ ରେଜିଷ୍ଟାରଗୁଡ଼ାକୁ ବିକ୍ଷିପ୍ତଭାବରେ ଖେଳାଇ ଦେଇ ମାସ ଶେଷରେ ଗତମାସର ଦରମା ବିଷୟରେ ସ୍ୱପ୍ନ ଦେଖୁଥିବା ପିଅନ, ପାନପିକରେ ସେଡ୍ରେଡ୍ ବେଶିନ୍, ଲୁହା ଆଲମାରି ଉପରେ ପେଟେଇ ପଡ଼ିଥିବା ଭଙ୍ଗାଚେୟାର ଓ ଭାବୀ ଛାତ୍ରନେତାଙ୍କ କ୍ଲାସ୍ ଅବହେଳାର ମୁରବୀତ୍ୱ ଭିତରେ ରଘୁନାଥ ହଠାତ୍ କେମିତି ଘୁମେଇ ପଡ଼ିଲା ଏବଂ ସେଇ ସ୍ୱଳ୍ପକାଳରେ ଲୀଳାୟିତ ସୁବର୍ଣ୍ଣ ଛାଲର ହରୀଣ ଶିଶୁଟି ଟାଣିନେଲା ବିଚରା ରଘୁନାଥକୁ ସ୍ରୋତର ପ୍ରତିକୂଳରେ; ପୁଣି ସାମ୍ନା ସାମ୍ନି କରିଦେଲା ସେଇ ହଜିଯାଇଥିବା ଦିନମାନଙ୍କ ସହିତ... ଛାଇ ଛାଇ କୁହୁଡ଼ିରେ ଅନ୍ଧାରିଆ ପରକୁ ପର ଗାଁମାନଙ୍କର ଛବି ସହିତ ଆଧିପତ୍ୟ ବିସ୍ତାର କରିଥିବା ଦୁଇଜଣ ବ୍ୟକ୍ତିଙ୍କ ସହିତ ତା ବାପା, ବଡ଼ବାପା ।

ରଘୁନାଥ ଅତୀତର ପରସ୍ତ ପରସ୍ତ ଆସ୍ତରଣକୁ ଖୋଲି ପଶୁଥିଲା ତା'ର କୈଶୋରର ରାଜ୍ୟ ମଧ୍ୟକୁ - କେତେ ଅବୁଝା କଥା/ଦୃଶ୍ୟ/ରହସ୍ୟ/ରୋମାଞ୍ଚ, ସବୁଗୁଡ଼ା

ଖାଲି ମନଟାକୁ ଏକ ଉନ୍ମାଦନାରେ ଭରିଦିଏ; ଅଥଚ ତା'ର ହେତୁ ଖୋଜିଲା ବେଳକୁ ସେ ଯେମିତି ଗୁଡ଼ାଏ ଅତୁଆ ତଡୁଆ ଜାଲରେ ଛନ୍ଦିହୋଇ ନିସ୍ତେଜ ହୋଇ ପଡ଼ିଯାଏ କେମିତି । ସେଇ ପଡ଼ିଥିବା ଅବସ୍ଥାରେ ସେ ଦେଖେ ଦୃଶ୍ୟାବଳୀ: ବାପା-ବଡ଼ବାପା ଓ ସେମାନଙ୍କ ସହିତ ସଂପୃକ୍ତ ଅନେକ ମୁହଁ, ହସହସ, କୃତଜ୍ଞ ଓ ଆନ୍ତରିକତାରେ ଭରପୁର ! ସକାଳୁ ସକାଳୁ ବାହାରି ପଡ଼ନ୍ତି... 'ଆହା... ସଖା ସଙ୍ଗେ ବଳରାମ...' ହାପ୍‌ସାର୍ଟ ପିନ୍ଧା ବାଙ୍ଗର ହୋଇ ଲୋକଟି- ତା'ର ବାପା । ଲଙ୍ଗଳା ପାଦ, ଗେଣ୍ଡା ଭାତର ଗୋଡ଼ି ଗୋଡ଼ି ମାଟି ରଗଡ଼ାକୁ ଖାତିର ନକରି; ଆଉ ଅନ୍ୟ ଜଣକ ସମ୍ପୂର୍ଣ୍ଣ ସମ୍ଭ୍ରାନ୍ତ ଧୋତି-ପଂଜାବୀ, ଗୋଡ଼ରେ ଚପଲ, କାନ୍ଧରେ ଉତ୍ତରୀୟ । ଠାକୁରାଣୀ ମନ୍ଦିର ପାଖରୁ ଯାତ୍ରା ଆରମ୍ଭ ହସର ଲହରେଇ ଲହରେଇ ଧ୍ୱନି ମଧ୍ୟରେ । କୁଆଡ଼େ ଯାତ୍ରାର ଲକ୍ଷ୍ୟ, କେଉଁ ଦିଗକୁ ଗୁଆ ଗଡ଼ିଛି, କାହାର ଭାଙ୍ଗିଯାଇଥିବା ଘରକୁ ଯୋଡ଼ିଦେବେ । କାହା ମୁଣ୍ଡର ଗହିଡ଼ା କ୍ଷେତକୁ ଆନ୍ତରିକତାର ପୁଟ ଦେଇ ଉପସମ କରିଦେବେ ଓ ସେମାନଙ୍କୁ ପ୍ରେମର ସୂତ୍ରରେ ଛନ୍ଦିଦେଇ କଳା କୋର୍ଟ ପିନ୍ଧା ମତଲବୀ ଲୋକମାନଙ୍କ ନିକଟକୁ ଯାଇ ସର୍ବସ୍ୱାନ୍ତ ନହେବାକୁ ପରାମର୍ଶ ଦେବେ । କି ଆନନ୍ଦ ସେଥିରେ- ବିଡ଼ା ମଧ୍ୟରୁ ଖୋଲି ଯାଇଥିବା ଲୋକମାନଙ୍କୁ ଧରିଆଣି ପୁନର୍ବାର ସେହି ବିଡ଼ାରେ ବାନ୍ଧିଦେବା- କିଶୋର ରଘୁନାଥ ବୁଝେନା ସେସବୁ କିଛି; କେବଳ ଦେଖେ ସନ୍ଧ୍ୟା ଲେଉଟାଣି ସେହି ଦୁଇଜଣଙ୍କୁ ଗାଁ ପର୍ଯ୍ୟନ୍ତ ବଳାଇଦେବାକୁ ସାଙ୍ଗରେ କିଛି ଲୋକ, ଥଟ୍ଟା-ପରିହାସ ଯେମିତି ଏକ ସନ୍ତୁଷ୍ଟ ସମାଜର ସାଙ୍କେତିକ ରୂପ ସେହି କେତେଜଣ । ଚିନ୍ତା ନାହିଁ ବନ୍ୟା ଘରତଳି ଛୁଇଁଲାଣି, ଶୀତ କାକୁସ୍ଥ କରିଦେଲାଣି ଓ ଜ୍ୟେଷ୍ଠର ଖରା ଶରୀରକୁ କାଙ୍କୁଆ ବାଇଗଣ ପରି ତମ୍ଭାଳିଆ କରିଦେଲାଣି- କୁହାଟଟେ ଛାଡ଼ିଦେଲେ ଅର୍ଜୁନ ଦାସ, ମଣି ସେଠି, ଦୁର୍ଲଭ ଜେନା ଖେଦି ଆସୁଛନ୍ତି ଚାରିଆଡୁ ମଣିଷ ଡଙ୍ଗା ସହିତ, ଛାତିରେ ହାତ ଛନ୍ଦି କୁହୁଡ଼ି ଭେଦକରି କଳା କଳା ମଣିଷ, ପୁଣି ଝାଳ ଗମ୍ ଗମ୍ ଆଫ୍ରିକୀୟ ମଣିଷ ମୁଣ୍ଡରେ କରିଆ ଖଣ୍ଡେ ଖଣ୍ଡେ; ସେମାନେ ଏକୁଟିଆ ନଥିଲେ ବ୍ୟଷ୍ଟି ଚେତନାର ସାଙ୍କେତିକ ମଣିଷ ଦୁଇଜଣ, ହସୁଥିଲେ ହସାଉଥିଲେ- ଦୁଃଖ ସମସ୍ୟା ବାଡ଼ିପଟର କେଉଁ ଅନ୍ଧାର ଭିତରେ ଛକିକରି ଅପେକ୍ଷା କରିଥିଲେ ସନ୍ଦେହୀ ମଣିଷମାନଙ୍କ ପରି, ଅଥଚ ସେମାନଙ୍କୁ ଛୁଇଁ ପାରୁନଥିଲେ । ଛୁଇଁ ପାରୁଥିଲେ ସେମାନେ କ'ଣ ପାଞ୍ଚ ଦଶ ଟଙ୍କା ମାଗଣାକରି ଏଡ଼େବଡ଼ ସ୍କୁଲଟା ଠିଆକରାଇ ପାରିଥାନ୍ତେ ସେ ଅଞ୍ଚଳରେ । ଏତେସବୁ କଥା ଭିତରେ ସେମାନେ ଠୋ... ଠୋ... ହସୁଥିଲେ, ସନ୍ଧ୍ୟାରେ ପରିବାରକୁ ସାରା ଦିନର ଅଭିଜ୍ଞତା

କହି ତାଙ୍କ ହସ ସହିତ ସାମିଲ କରିଦେଉଥିଲେ କେମିତି !

ରଘୁନାଥ ସେଇ ହସରେ ସାମିଲ୍ ହୋଇଯାଏ, ଭାବେ - ସେମାନଙ୍କ ବାପାମାନେ କଣ ଏମିତି ହସୁଥିଲେ, ସେ ଅଞ୍ଚଳର ଗାଁମାନଙ୍କୁ ନିଜ ଗାଁ ବୋଲି ଭାବୁଥିଲେ ଓ ସେ ଲୋକମାନଙ୍କୁ ନିଜ ପରିବାରର ବୋଲି ! କେଜାଣି ହସୁଥିବେ.... ସେମାନଙ୍କୁ ତ ସେ ପ୍ରତ୍ୟକ୍ଷ କରିନାହିଁ, କେବଳ ନାମବାଚକ ବିଶେଷ ହିସାବରେ ସେମାନଙ୍କର ପରିଚୟ ତା'ର ସଜ୍ଞାନ, ଅବଚେତନରେ । ହସୁଥିବେ, ହସୁଥିବେ ସେମାନେ, ଅନ୍ୟଥା ସଂକ୍ରାମକ ରୋଗ ପରି କେମିତି ସେ ଧାରାଟି ଗଡ଼ି ଆସିଲା ସେମାନଙ୍କ ଭିତର ଦେଇ କିଶୋର ରଘୁନାଥ ଭିତରକୁ !

ରଘୁନାଥ ଆଜି ପ୍ରାୟ ଅର୍ଦ୍ଧଶତାବ୍ଦୀର ମଣିଷଟିଏ । ଦଶ ବାର ଜଣଙ୍କୁ ନେଇ ଏବକା ବିଚାରରେ ବିରାଟ ଏକ ସଂସାର । ସାମ୍ପ୍ରତିକ ଯୁଗରୁଚି ଓ ସରକାରୀ ପରିସଂଖ୍ୟାନକୁ ନେଇ ବିଚାର କଲେ ତା'ର ଅନ୍ୟୁନ ତିନିଥର ପରିବାର ନିୟନ୍ତ୍ରଣ କରିବାର ଥିଲା । ଅଥଚ ସେ ସେ ସମ୍ପର୍କରେ ଉଦାସୀନ । ପିଲା ହେବା, ନହେବା ଯେମିତି ତା' ବିଚାର ବା ଚିନ୍ତାର କଥା ନୁହେଁ, କେବଳ ଗୋଟାଏ ତମ୍ବାଳିଆ ଶରୀର ଭିତରେ ଆନନ୍ଦ ଖୋଜିବା ତା'ର କାମ ଥିଲା । ତେବେ ଅସ୍ପଷ୍ଟ ହୋଇ କଥାଟିଏ ଆସୁଛି ତା' ମନ ଭିତରକୁ... ସେତେବେଳେ ତା'ର ବୟସ ଚବିଶ୍ ନା ଚାଳିଶ୍ ! ପ୍ରଥମଟି ବୋଧହୁଏ । ଅଫିସରୁ ଛୁଟି ନେଇ ବନ୍ଧୁମାନଙ୍କ ପରାମର୍ଶରେ ଚାଲିଯାଇଥିଲା କୌଣସି ଡ଼ାକ୍ତରଖାନାକୁ ଏବଂ ତା'ର ଚେହେରା ଓ ବୟସକୁ ଦେଖି ସେ ଟୋକା ଡ଼ାକ୍ତରଟି ହସିଦେଇ କହିଲା: ଏତେ ଶୀଘ୍ର କ'ଣ ମୁଁ ! ଯାଆନ୍ତୁ, ଯାଆନ୍ତୁ ସଂଯମ ରକ୍ଷା କରନ୍ତୁ । ସେତେବେଳେ ରଘୁନାଥ ସାଙ୍ଗମାନଙ୍କ ସହିତ ଡ଼ାକ୍ତରଙ୍କ ସାମନାରେ ବହେ ହସିଥିଲା । ସତେକି ଡ଼ାକ୍ତରଙ୍କ କଥା କେଇପଦ ତାକୁ ଶକ୍ତ କୁତୁରୁକାଳିଆ ଦେଲା ଯାହାର ପ୍ରଭାବକୁ ସେ ଏଡ଼ାଇ ପାରିଲା ନାହିଁ ।

ଶଳା ବିଷମ ସମସ୍ୟା !

ସଂଯମ ! କି କଥା ସେଇଟା... ଋଷ୍ୟଶୃଙ୍ଗଙ୍କ ପରି ଆଜନ୍ମ ବ୍ରହ୍ମଚାରୀ- ସଦ୍ୟ ଶରୀରର ତ୍ୱକ୍, ପାଚିଲା ଆମ୍ବ ପରି ଦୁଇଟି ମାଂସପିଣ୍ଡ ଓ ହଳଟିଏ ନିବେଦିତ ଆନତ ଚକ୍ଷୁ ଖୋଲିଦେଲା ତାଙ୍କ ସଂଯମ ବ୍ରହ୍ମଚର୍ଯ୍ୟର ସମସ୍ତ ଡ଼ୋରିକୁ; ବାପତ ପୁଣି ଘନ ଜଙ୍ଗଲରେ ଖେଳୁଥିବା ମୃଗୁଣୀଟି ସହିତ ରାତି କଲାଯେ, ଯେଉଁ ଖେଳରୁ ଖସି ପଡ଼ିଥିଲା ବିଚାରା ବ୍ରହ୍ମଚାରୀଟି । ଏ ଶାଳା ଡ଼ାକ୍ତର ରଘୁନାଥ ପରି ଖାମ୍‌ଖେୟାଲ୍ ଯୁବକକୁ ନୀତିବାଣୀ

ଶୁଣାଉଛି... ସଂଯମ ରକ୍ଷାକର । ଏୟାତ... ମାନେ ଅପରାଧୀଟିଏ ପରି ଛାଇ ଅନ୍ଧାରରେ କୌଣସି ଔଷଧ ଦୋକାନର ପିଲାକୁ ପାଖକୁ ଡ଼ାକିନେଇ ତାକୁ ଉତ୍କୋଚ ଦେଲାପରି ତା' ହାତରେ କେତୋଟି ଟଙ୍କା ଗୁଞ୍ଜିଦେଇ ଓଲଟା ଲାଲ୍ ତ୍ରିଭୂଜ ଚିହ୍ନଥିବା ପ୍ୟାକେଟ୍ ଗୁପ୍ତରେ ଦେଇ ଦେବାକୁ ଫୁସ୍‌ଫୁସ୍ କରି କହିବା । ମାର୍ ସେ ସଂଯମକୁ । ବିନା ସଂଯମରେ କେମିତି ଲୋକଙ୍କର ଗୋଟିଏ ଦୁଇଟି ପରେ ଠୁକ୍‌କି ଚାବିଟା ପଡ଼ିଯାଉଛି ।

ସେଇ ହସ ଓ ଖାମ୍‌ଖେୟାଲ୍ ମେଜାଜ ଭିତରେ ଚାଲିଲା ରଘୁନାଥର ଲୀଳାଖେଳା, ସାଂସାରିକ ଜୀବନ... ଆହା ! କି ରଙ୍ଗବେରଙ୍ଗର ବେଲୁନ୍ ଅନ୍ଧକାରରୁ ଉଡ଼ିଯାଏ ଆଲୋକକୁ, ଆଲୋକରୁ କୁହୁଡ଼ିକୁ; ପୁଣି କୁହୁଡ଼ିରୁ ଇନ୍ଦ୍ରଧନୁରେ ସଂଯୁକ୍ତ ହୋଇଯାଇ ଝରିପଡ଼େ ରଙ୍ଗର ବିନ୍ଦୁସବୁ... ଗୁମ୍‌ସୁମ୍ ଝାଳ, ନିଶ୍ୱାସ-ପ୍ରଶ୍ୱାସ, ଗ୍ଳାନୀ ଓ ଅନୁଶୋଚନାର କୋଠରୀରେ ଫୁଟିଯାଏ ବହୁବର୍ଣ୍ଣର ଫୁଲସବୁ । ବିହ୍ୱଳ ରଘୁନାଥ ବିସ୍ମୟ ଓ ରହସ୍ୟର ଜାଲରେ ଛନ୍ଦିହୋଇ ହସିଦିଏ ଓ ଭାବେ କିଏ ସେହି ଅଜଣା କାରିଗର, ମଣିଷର ଇଚ୍ଛା-ଅନିଚ୍ଛାକୁ ଅସ୍ୱୀକାର କରି ଗଢ଼ିଯାଏ ମଣିଷ ପିତୁଳାମାନଙ୍କୁ ତା' ନିଜସ୍ୱ ଖେୟାଲ୍‌ରେ । ରଘୁନାଥ ନିଜକୁ ଟେକିଦିଏ ସେଇ ଅଜଣା କାରୀଗର ହାତକୁ ।

ରଘୁନାଥ ପୁନର୍ବାର ଫେରିଆସେ ସେଇ ବୌଦ୍ଧିକ ସମାବେଶକୁ ଯେଉଁଠି ସର୍ବୋଚ୍ଚ ବୁଦ୍ଧିଜୀବୀମାନେ ହିସାବ ଖାତାକୁ ଛାତିରେ ଜାବୁଡ଼ି ଧରି ନୂତନ ବ୍ୟାଖ୍ୟାର ଜୀବନ ଧାରାର ମହାସ୍ରୋତରେ ଭାସିଚାଲନ୍ତି ଯେ କୌଣସି ସାଧାରଣ ମଣିଷଟିଏ ପରି । ଠାଏ ଦୁଇ ତିନି ଜଣିଆ ଦଳରେ ଏକତ୍ରିତ ହୋଇଯାଆନ୍ତି ସେମାନେ.. ଚାଲେ ବୌଦ୍ଧିକ ଆଲୋଚନା... ଏଥର କେତେଜଣଙ୍କର ବଦଳି ହେଲା, ନାୟକ ମାରିଦେଇଛି ଶକ୍ତ କୀଳା ଶଳା ଘୁରୁଚି ଚକ୍ରୀ ପରି... କ'ଣ ଟିକିଏ ପାୱାର ହାତରେ ପଡ଼ିଗଲା ପରେ ଇନ୍ଦ୍ର-ଚନ୍ଦ୍ର ମାନିଲା ନାହିଁ । କ' ଶୁଣାଯାଉଛି ପ୍ରିନ୍‌ସିପାଲ୍ ଆହୁରି ଏଗାର ଜଣଙ୍କ ଲିଷ୍ଟ ପଠାଇଛି... ଜଣାପଡୁଛି ଏଥର କିଛି ହେବ । ଆଉ ଜଣେ ପାଟିକରି ଉଠେ... ଯାଆନ୍ତୁ ଯିଏ ଯାଉଛନ୍ତି (ଯେମିତି ସେମାନେ ପୀଠ ଠାକୁରାଣୀ ସବୁ ବନ୍ୟା-ବତାସରେ ତାଙ୍କ ପୀଠଟି ସୁରକ୍ଷିତ), ହଇହୋ ! ସେ ଏରିଅର କଥା କ'ଣ ହେଲା ? ଏଇ ପ୍ରଶ୍ନଟିରେ ଚମକି ପଡ଼େ ଏ ପର୍ଯ୍ୟନ୍ତ ତ୍ରିଭଙ୍ଗୀ ଠାଣୀରେ (ସବୁବେଳେ ସେ ଏମିତି ଠିଆ ହୁଅନ୍ତି) ଠିଆ ହୋଇଥିବା ଅସମୟରେ ପ୍ରୌଢ଼ ବ୍ୟକ୍ତିଟି, ଯତ୍ନ ଅଭାବରୁ ଯାହାଙ୍କର ସାମ୍ନାପଟର ତଳଦାନ୍ତ ଦୁଇଟି ଖସିପଡ଼ିଛି କେତେବେଳେ । ହବ... ହବ... ସମୟ ହେଲେ... କହି

ଖସିଯାଉଥିବାବେଳେ ଧରିପକାନ୍ତି ଅନ୍ୟ ଦୁଇଜଣ: ଯାଉଛ କୁଆଡ଼େ ! ଏଯାଏଁ ଆସୋସିଏସନ୍‌ର ହିସାବ ଦେଲନି । ସେହି ଟଙ୍କାରୁ ଅଫିସ୍‌ବାଲାଙ୍କ ଜଳଖିଆ ଖର୍ଚ୍ଚ ଦୁଇଶ ତିନିଶ ଥୋଇଦେଲେ କାମଟା ହୋଇଯାଆନ୍ତାନି ! ହବ... ଦୁଇଶ ନା ଦୁଇ ହଜାର; ହ୍ୟାପ୍ ହାତରୁ ପାଞ୍ଚଶ ଗଲାଣି କହିଲେ, ଦୁଇଶ ତିନିଶ ଟୋକା ଲୋକଟା ମାଡ଼ିବସେ: ହିସାବ ଦଉନ- ନଉନ, ମନା କଲା କିଏ- କହି ହାତରେ ଝୁଲୁଥିବା ବିରାଟ ହାଟ ବ୍ୟାଗ୍‌ଟା ଧରି ସେ ଆଗକୁ ଧୀରେ ଧୀରେ ପାଦ ବଢ଼ାନ୍ତି । ବହୁ ପୂର୍ବରୁ ତାଙ୍କର ଚାଲିଯିବା ଉଚିତ୍ ଥିଲା । କାରଣ ଆଳୁ ବାଇଗଣ ଚାପାରେ ବ୍ୟାଗ୍‌ର ସବା ତଳରେ ଥିବା ଚିଙ୍ଗୁଡ଼ି ପୁଡ଼ିଆଟିରୁ ପାଣି ଗଡ଼ି ଗଡ଼ି ମାଛଗୁଡ଼ିକ ଡିହାଇଡ୍ରେଟେଡ୍ ଅବସ୍ଥାକୁ ଆସିଯାଇଥିଲେ ସେତେବେଳକୁ । ରଘୁନାଥ ପହଞ୍ଚିଯାଇ ଅବସ୍ଥାକୁ ସମ୍ଭାଳିନିଏ ସମୟରେ- ହେଲେ, ତମେ ହିସାବ ନଦେଲ ନାହିଁ, ସମସ୍ତଙ୍କୁ ପାନ ଖୁଆଇଲ । ପାନ ! ମୋ ନାଁ କହି ଖାଇଦିଅ- ଝିଅ ବାହାଘର ଧାର୍‌ରୁ ଏଯାଏ ପାଞ୍ଚହଜାର ବାକି, ଯାଙ୍କର ପାନଖିଆ ସଉକ୍ ବାହାରୁଛି ।

ଭଦ୍ରଲୋକ ଚାଲିଗଲେ ।

ରଘୁନାଥ ଠିଆହୋଇ ତାଙ୍କୁ ଲକ୍ଷ୍ୟ କରିଥିଲା ଆଉ ଛକ ଷ୍ଟେସନାରୀ ଦୋକାନରେ ପହଞ୍ଚି ତାଙ୍କ ହିସାବ ଖାତା ଦେଖିବା ପର୍ଯ୍ୟନ୍ତ । ଅନ୍ୟମାନେ ଚାଲିଗଲେ ଆଉ କେଉଁ ପଥପ୍ରାନ୍ତ ଆସର ଜମାଇବାକୁ । ରଘୁନାଥ ବୁଲିପଡ଼ିଲା ବେଳେ ଦେଖିଲା ବୁଦ୍ଧିଆ, ଚା' ଦୋକାନୀ, ହସୁଛି । ଅର୍ଥ, ଆସନ୍ତୁ କପେ ହେଇଯାଉ ।

ରଘୁନାଥ ବୁଦ୍ଧିଆ ପାଖକୁ ଲାଗି ବସିଲା । ମାତ୍ର କପେ ଚା' । ବୁଦ୍ଧିଆର ବରାଦିରେ ଦୋକାନୀ ପିଲା ଦଉଡ଼ିଯାଏ ଦି'ଖଣ୍ଡ ପାନ ପାଇଁ । ଆସ୍ତେ ଆସ୍ତେ ଚା' ଢୋକି ରଘୁନାଥ ପଚାରେ, କେତେବର୍ଷ ହେଲା ବାପାଙ୍କର କାଳ ହେଲା ? ଅନ୍ୟମାନଙ୍କ ଠାରୁ ପଇସା ରଖୁ ରଖୁ ବୁଦ୍ଧିଆ କହେ, ଆଇଲା ଭାଦ୍ରବକୁ ପାଞ୍ଚବର୍ଷ ପୁରିଯିବ । ଚମକିପଡ଼େ ରଘୁନାଥ; ଦୃଶ୍ୟପଟ ବଦଳି ଯାଉଛି, ବୁଦ୍ଧିଆ ହେଇଯାଉଛି ତା' ବାପା, କଳା ହୋଇ ହାଡ଼ୁଆ ମଣିଷଟିଏ ବୟସ ଚାପରୁ ମୁକ୍ତି ପାଇଁ ଅଫିମ ଟିକକ ବୁଢ଼ାକୁ ଅଣ୍ଟାଠାରୁ ସାମ୍ନାକୁ ଝୁଲାଇ ରଖିଥାଏ ଚିତ୍ରର ମଣିଷଟିଏ ପରି । କାନକୁ ଆସିଯାଏ ମଧୁରିଆ ଆତ୍ମୀୟ କଥା ଦି'ପଦ- ସାର୍‌ଙ୍କୁ ଚା' ଦେରେ... କପେ ଚା' ପଇସାରେ ମୁଁ କୋଠା ବାଡ଼େଇବି; ନିଜଲୋକ କ'ଣ ଗଛରୁ ଫଳନ୍ତି, ଏମିତି ମିଶୁ ମିଶୁ ମଣିଷତ ପରିବାର ଲୋକ ହୋଇଯାଏ । ବୁଦ୍ଧିଆ କିନ୍ତୁ ରଘୁନାଥ ଠାରୁ ପଇସାନିଏ ଓ ସମୟ

ସମୟରେ ଜଳଖିଆ ଖାଇଲେ ପଚାଶ ପଇସା ଟଙ୍କାଟିଏ କାଟିଦିଏ। ରଘୁନାଥ ଉଠି ଠିଆ ହେଲା ଓ ବୁଢ଼ାର ସ୍ମୃତି ତାକୁ ଟିକେ ବିମର୍ଷ କରିଦେଲା। ରଘୁନାଥ ଅନୁଭବ କରିଛି ଏସବୁ ଭାବାନ୍ତର ପ୍ରକୃତ ଦୁଃଖ ନୁହେଁ, ବରଂ ଦୁଃଖ ଦେଇ ଆନନ୍ଦର ପାହାଚରେ ପାଦ ରଖିବାର ଏକ ଏକ ମାଧ୍ୟମ ମାତ୍ର।

ରଘୁନାଥ କିଛି ସମୟ ଠିଆ ହୋଇଥିଲା ବୁଢ଼ିଆର ବାପା କଥା ଚିନ୍ତାକରି ଓ ସେଇ ବାଟେ ଚାଲିଗଲେ କେତେଜଣ ତଥାକଥିତ ବନ୍ଧୁ। ଚା' ଖାଇବାକୁ ଇସାରା କଲା ରଘୁନାଥ ସେମାନଙ୍କୁ। ସେମାନେ ମଧ୍ୟ ପି'ଥିବାର ଇଙ୍ଗିତ କରି ଚାଲିଲେ ଆଗକୁ ଏବଂ ଜଣେ ଅଧେ ରଘୁନାଥକୁ ଫେରି ଫେରି ଚାହୁଁଥିଲେ ଓ ପରସ୍ପରକୁ ଆଙ୍ଗୁଳି ଖେଞ୍ଚି ହସାହସି ହେଉଥିଲେ। ରଘୁନାଥ ବୁଝିଗଲା ସେମାନଙ୍କ ତରଙ୍ଗ ତରଙ୍ଗ ଭାବକୁ- ସେମାନେ ସବୁ ଉଚ୍ଚଦରର ବୁଦ୍ଧିଜୀବୀ। ସେମାନେ ନିଶ୍ଚୟ ଆଲୋଚନା କରୁଥିବେ- ରଘୁନାଥ ଏଠି କାହିଁକି ? ଏ ସମୟରେ ସେ ତ ଶଙ୍କର ଷ୍ଟୋରରେ ଆଡ଼୍ଡ଼ା ଦେବାକଥା, ଦୁଇଗ୍ଲାସ୍ ସଫ୍ଟ ଡ୍ରିଙ୍କସ୍ ମିକ୍ସଚର ପ୍ୟାକେଟ୍‌ରୁ ଗୋଟିଏ ଗୋଟିଏ ବାଦାମ ଦାନା ଟୁଙ୍କୁ ଟୁଙ୍କୁ ଚିହ୍ନା ଲୋକମାନଙ୍କ ସହିତ କିଛି ଗାଲୁ ମାରୁଥିବା କଥା କିମ୍ବା ତାକୁ ଘେରି କରି ତା' ବକ୍ତବ୍ୟ ଶୁଣୁଥିବା ସ୍ତାବକମାନଙ୍କ ହାତକୁ କାଜୁର ଗୋଟିଏ ଗୋଟିଏ ଦାନା ବଢ଼ାଉଥିବା କଥା। ଅଥଚ ଶଳା-ବାନାଟାଏ।

ରଘୁନାଥ ହସିଦିଏ, ପ୍ରକୃତରେ ସେ ବାନାଟିଏ। ଝିଅଟିଏ ଭୂମିଷ୍ଠ ହେଲାପରେ ସେ ପୋଷ୍ଟ ଅଫିସ୍‌କୁ ଦଉଡ଼ି ଯାଉନି ଡ଼୫-୨୦ ବର୍ଷିଆ ସି.ଟି.ଡି ଆକାଉଣ୍ଟ ଖୋଲିବାକୁ କିମ୍ବା ନାଲି ନୀଳ ରଙ୍ଗର ପାଞ୍ଚଟି ରେକରିଂ ଡ଼ିପୋଜିଟର ପାଶ୍ ବୁକ୍ ଧରି ଷ୍ଟେଟ୍ ବ୍ୟାଙ୍କକୁ। ସେ ସମ୍ପୂର୍ଣ୍ଣ ବର୍ତ୍ତମାନ ସର୍ବସ୍ୱ ଲୋକଟିଏ (ଆହା, ଫକୀର ମୋହନ ବିଚାରା ଆଉ ଇହ ଜଗତରେ ନାହାନ୍ତି) ବରଂ କେବେ କେବେ ଅତୀତକୁ ନେଇ ସ୍ୱପ୍ନ ଦେଖେ ମୂଲ୍ୟ ଓ ମୂଲ୍ୟବୋଧର ମଣିଷମାନଙ୍କୁ, ସମାଜକୁ ସ୍ନେହ-ପ୍ରୀତି-ଆନ୍ତରିକତାର ଏକ ବିରାଟ ଜଗତକୁ। ଯାହା ସେ ଦେଖି ପାରୁନି ଯାହା ସମ୍ପୂର୍ଣ୍ଣ ଅନିଶ୍ଚିତ ସେ ସମ୍ପର୍କରେ କେବେ ରଘୁନାଥ ସଚେତନ ହୋଇନାହିଁ। ବର୍ତ୍ତମାନକୁ ସାମ୍ନାକରିବା ତା'ର ଏକ ସହଜାତ ଆନନ୍ଦ ଓ କୌତୁହଳ। ସେ ଆଜିବି ମଧ୍ୟ ସେଇ ଧାରାରୁ ମୁକ୍ତ ହୋଇପାରୁନି। ହେଇପାରେ ରଘୁନାଥ ସାମ୍ପ୍ରତିକ ସମୟ ପାଇଁ ଅଚଳ ମଣିଷଟିଏ। ହେଲା ଏବେ ଚଳ ହେଉ କି ଅଚଳ ହେଉ, ସେ ମଣିଷଟିଏ ତ। ସେତିକି ତା'ର ଆତ୍ମସନ୍ତୋଷ।

ରଘୁନାଥ ମଣିଷଟିଏ- ସେ ଗୋପୀ ମହାନ୍ତିଙ୍କ 'ପୋଳହମଡ଼ାର' ଟିକମ୍ ଦାସ

ବାବାଜୀ, ଯେ ଦିନେ ନିର୍ଜନ ଧୂ ଧୂ ଖରାବେଳେ ଶୋଇ ଚତୁର୍ଦ୍ଦିଗକୁ ଚାହିଁଥିଲା ଓ ନିର୍ଜନତା ଭିତରେ ଅନେକ ସ୍ୱର ତା' କାନରେ ଅନୁରଣିତ ହୋଇଥିଲା: ଛାଡ଼ି ଦେ, ଛାଡ଼ିଦେରେ ଛୋଟିଆ ସଂକୀର୍ଣ୍ଣ ଗଣ୍ଡିଟିକୁ, ଦେଖ ! କେମିତି ଲମ୍ବା ହାତସବୁ ବଢ଼ିଆସିଛନ୍ତି ତୋତେ କୋଳେଇ ନେବାକୁ ଆପଣେଇ ନେବାକୁ... ଗୋଟିଏ ଘର ଛାଡ଼ିଲେ କୋଟିଏ ଘର, କୋଟିଏ ଲୋକ, ଗୋଟିଏ ସମାଜ ସ୍ନେହ-ପ୍ରେମ-ଆନ୍ତରିକତା... ମୋର ମୋର ହେଇ ବାୟା ହେଉଛୁ... ମନେ ପକା ମନବୋଧ ଚଉତିଶାକୁ, ତୋ ଜ୍ୟେଷ୍ଠ ଅମାବାସ୍ୟାର ସାବିତ୍ରୀଟି କେମିତି 'ଦେହ କିଳାଉଛି'... ସବୁଥିରେ ଥିବୁ କେଉଁଥିରେ ନଥିବୁ, ସଂସାରକୁ ପଛ କରିବୁନି କିମ୍ବା ଭିଡ଼ି ଧରିବୁନି, ପୁରୁଷ ପଣିଆରେ ଯେତିକି ପାରିବୁ ସେତିକି କରିଯିବୁ । ଈର୍ଷା ନାହିଁ, ଦ୍ୱେଷ ନାହିଁ... ତା ଜୋଇଁ ଏଲାଏଡ୍ ହେଲା ସେ ପାଇଁ ମରିଯିବୁନି, ତା' ପୁଅ ଯୌତୁକରେ ଘର ଭରିଦେଲା ସେଥିରେ ଜଳିଯିବୁନି, ତୁ ଜାଣିନୁରେ ସେ ଦୁଷ୍ଟ ନିୟତିର କଥା... ଜୀବନର ସଞ୍ଚୟକୁ ଘରଟିଏରେ ଠିଆ କରାଇ ପ୍ରତିଷ୍ଠା କଲାବେଳକୁ ତୋ ଶବ ହୁଏତ ସେ ଘରୁ ବାହାରି ଯାଇଥିବ... କୁଦ୍ ନାଁ, ନାଚ୍ ନାଁ... ଜଳିପୋଡ଼ି ମରିଯାନା, ଯେତିକି ପାରୁଛୁ ସେତିକିରେ ସନ୍ତୁଷ୍ଟ ହ... ବାପ ଜେଜେ ହସିବାର ଯେଉଁ ମନ୍ତ୍ରଟି ତୋ କାନରେ ଛାଡ଼ିଦେଇ ଯାଇଛନ୍ତି, ପାରୁଛୁତ ଭିଡ଼ି ଆଣେ ଅନ୍ୟ ମୁହଁକୁ ସେ ହସକୁ, ତୋ କଥାରେ କାମରେ, ତୋ ମଣିଷ ପଣିଆରେ, ଜୀବନ ଜୀବନ ଜୀବନ... ଅସଲ ଜୀବନ ସେଇଠିରେ ରଘୁନାଥ ।

ସେମାନେ କେମିତି ଜାଣିଥାନ୍ତେ ରଘୁନାଥ କାହିଁକି ହସିପାରୁଛି ! ସେମାନେ କ'ଣ ତାଙ୍କ ପରିବେଶ ବାହାରର ମଣିଷକୁ ଦେଖିପାରିଛନ୍ତି, ସେମାନଙ୍କୁ ଛୁଇଁ ପାରିଛନ୍ତି ! ଅଧ୍ୟାପକଟି ତା ବୃତ୍ତିକୁ ଅବହେଳା କରି ଦୁଇ-ତିନୋଟି ପଞ୍ଚାୟତର ଲୋକଙ୍କୁ ଧରି ଏମ୍‌ଏଲ୍‌ଏଙ୍କ ପାଖ ଲୋକ ବୋଲି ନିଜକୁ ପ୍ରମାଣ କରୁଥିବାରୁ ତା ପଛରେ ସେମାନେ ବାଲି କଙ୍କଡ଼ା ପରି ଡ଼ଗ ଡ଼ଗ ଚାଲି ତୋଷାମଦ କରୁଥିବାବେଳେ, କେମିତି ବା ସେମାନେ ବୁଝିପାରନ୍ତେ ଆଳୁ କିଲୋଟେ ରଘୁନାଥର ବ୍ୟାଗ୍‌ରେ ଅଜାଡ଼ୁ ଅଡ଼ାଡ଼ୁ କାହିଁକି ଅଇଁଠୁ ସାହୁ ସ୍ୱଗତୋକ୍ତି ଗଲା... ସାର୍ ତ ଦେଖା ନଥିଲେ କିମ୍ବା ବାଇଗଣ କିଲୋଟେ ବାଛୁ ବାଛୁ କାହିଁକି ମଜା କଥାରେ ଦୋକାନୀ ବୁଢ଼ାକୁ ହସାଇଦିଏ ରଘୁନାଥ । କିଲୋଟିଏ ଆଳୁ ରଘୁନାଥ କିଣି ନଥିଲେ ଅଇଁଠୁ ସାହୁର ବ୍ୟବସାୟ ବନ୍ଦ ହୋଇ ଯାଇଥାନ୍ତା ନାଁ ବାଇଗଣ ଚାଷୀଟି ତା ବାଡ଼ିରେ ଆଉ ସାର ଦେଇ ନଥାନ୍ତା ! ରଘୁନାଥ ସେମାନଙ୍କୁ ସେମାନଙ୍କ ଧାରାରେ ଗ୍ରହଣ କରିନିଏ... ଅଥଚ ସେମାନେ ବୁଦ୍ଧିଜୀବୀ,

ସାଧାରଣ ଚା’ ଦୋକାନୀ ଠାରୁ ଆରମ୍ଭ କରି ଆଳୁ ବା ବାଇଗଣ ଦୋକାନୀ ସହିତ କେମିତି ମିଶି ପାରନ୍ତେ ଅବା !

ରଘୁନାଥ ସେମାନଙ୍କ ଉଦ୍ଦେଶ୍ୟରେ ସାଲ୍ୟୁଟ୍ କଲା... ସେମାନେ ଦେଶର ମସ୍ତିଷ୍କ, ବୁଦ୍ଧିଜୀବୀ ଓ ନିଜ ଭଡ଼ାଘରକୁ ଫେରିଆସିଲା ।

ଘରେ ପଶୁ ପଶୁ ତା’ର ମନହେଲା ସେ ଏକ ବିରାଟ ଶୂନ୍ୟତାର ରାଜ୍ୟରେ ପ୍ରବେଶ କରୁଛି । ଘରେ କେହି ନାହିଁ-- ପିଲାମାନେ ପଢ଼ାପଢ଼ି ପାଇଁ ଦୂର ଦୂରାନ୍ତକୁ ଚାଲିଯାଇଛନ୍ତି । ଆପାତତଃ ! ରଘୁନାଥ ଯେମିତି ନିଃସଙ୍ଗ ବୃଦ୍ଧଟିଏ । ହସୁ ହସୁ କେଉଁ ଏକ ଅଜଣା ଶୋକରେ ହସଟି ଆସ୍ତେ ଆସ୍ତେ ମଉଳି ଯାଉଛି ତେଲ ସରିଯାଇଥିବା ଲନ୍‌ଠନ୍‌ର ଆଲୋକ ଶିଖାଟି ପରି ।

ରଘୁନାଥ ସେଲ୍‌ଫରୁ ମାଗାଜିନ୍‌ଟିଏ ଟାଣି ଆଣିଲା ଓ ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଚାଲିଲା । ପଢ଼ିବାର ଆଗ୍ରହକୁ ଯେମିତି ଏ ଅସ୍ୱାଭାବିକ ଶୂନ୍ୟତା ଶୋଷି ନେଉଛି । ଗୋଟିଏ ପୃଷ୍ଠାରେ ଆଖି ପକାଉ ପକାଉ ଅଟକି ଗଲା-- ବିଚିତ୍ର ଲେଖାଟିଏ । ଏକ ନିଃଶ୍ୱାସରେ ପଢ଼ିଗଲା, ସବୁ ନୂଆ ନୂଆ କଥା ଏଇ ଆମେରିକାରେ । କେତୋଟି ଡଲାରରେ ଟିକଟ କାଟି ସିନେମା ଦେଖିଲା ପରି ଦଶରୁ ପନ୍ଦର ମିନିଟ୍ ହସିବ ‘ଲାଫିଙ୍ଗ ପାର୍ଲର’ରେ । କେଡ଼େ ଅଦ୍ଭୁତ କଥାଟାଏ ମଁ, ରଘୁନାଥକୁ କେମିତି ଅଡୁଆ ଲାଗିଲା । ହସିବା ପାଇଁ ‘ପାର୍ଲର’ ବି ଖୋଲିଲାଣି । ରଘୁନାଥ ମନକୁ ପୁନର୍ବାର ଭେଟି ଆସିଥିବା ଲୋକଙ୍କ କଥା ଆସିଲା । ସେମାନେ କ’ଣ ଏ ସମ୍ବାଦଟି ଜାଣିଥିବେ । ଜାଣିଥିଲେ ସେମାନଙ୍କ ପ୍ରତିକ୍ରିୟା କଣ ହୋଇଥିବ ! ନାଁ ଏକ ମାମୁଲି ସମ୍ବାଦ ହିସାବରେ ଏଡ଼ାଇ ଯାଇଥିବେ । ଯାଇ ନଥିବେ କିଏ ବା କହିବ । କେତେ ଘଟଣା ବିଦେଶ ଠାରୁ ଆରମ୍ଭ କରି ଏ ଦେଶରେ ଘଟି ଯାଉଛି । ଖବରକାଗଜ, ରେଡ଼ିଓ, ଟିଭି ଚବିଶ ଘଣ୍ଟା ବିବରଣୀ । ଅଥଚ ସାତ ଆଠଘଣ୍ଟା ଶୋଇଗଲା ପରେ ଅବଶିଷ୍ଟ ସମୟ ଆମ ଟିପା ଖାତା ସହିତ ଆମର କଥାବାର୍ତ୍ତା !

ରଘୁନାଥ ପତ୍ରିକାଟି ଯଥାସ୍ଥାନରେ ଥୋଇଦେଲା । ଦୁଇ ପାପୁଲିରେ ମୁହଁଟିକୁ ପୋଛିନେଲା ଓ ସୋଫା-କମ୍ ବେଡ୍ ଟି ଉପରେ ଚିତ୍ ହୋଇ ଛାତ ଉପରେ ଦୃଷ୍ଟି ରଖିଲା । କାନ୍ଥରେ ଅନେକ ଗୁଡ଼ାଏ ଝିଟିପିଟି । ଛକି ଛକି ପୋକମାନଙ୍କୁ ଟକ୍ କରି ଗିଳି ଦେଉଛନ୍ତି । ସୂତା ପରି ଲମ୍ବା ଲମ୍ବା ଗୋଡ଼ରେ ବୁଢ଼ିଆଣୀ ତା ଜାଲ ବୁଣୁଛି ଓ ଚାହାଳି ଶିଶୁର ଅଛିଣ୍ଡା ପଣକିଆ ଡ଼ାକପରି ସିଲିଂ ଫେନ୍‌ଟି ଶବ୍ଦକରି ଘୁରୁଛି । କୀଟ

ପତଙ୍ଗ, ମେସିନ୍ ତାଙ୍କ ରୋଟିନ୍‌ରେ ଠିକ୍ ଚାଲିଥିଲାବେଳେ ଆମ ହସର ସ୍ୱାଭାବିକ ଧାରାଟିକୁ କିଏ କାହିଁକି ଚୋରାଇ ନେଇଛି । କିଏ ସେ । ନାଁ ଆମେ ନିଜେ !

ରଘୁନାଥ ସିଧା ହୋଇ ବସିଲା । ଉଠି ଠିଆ ହେଲା ଓ କୋଠରୀଟି ପ୍ରଦକ୍ଷିଣ କଲା । ଶୂନ୍ୟତାର ଗୋଟିଏ ବିରାଟ ବୋଝ ଯେମିତି ତାକୁ ମାଡ଼ି ବସୁଛି । ତାକୁ କାରୁଣ୍ୟ କାବୁ କରିବାକୁ ଯାଉଛି... ସେ କଣ ଆଉ ହସି ପାରିବ ନାହିଁ । କିଛିଟା ଭୟ ଭିତରେ ରଘୁନାଥ ଟିଭିର ସୁଇଚ୍ ଅନ୍ କଲା, ସମ୍ବାଦ ଚାଲିଛି । ତିନିଦିନ ଅସଫଳ କୁ ପରେ ଗୋର୍ବାଚୋଭ୍ ମସ୍କୋ ଫେରୁଛନ୍ତି, ମୁହଁରେ ଫିକା ହସ, ହାତଟି ଯେମିତି ସୌଜନ୍ୟ ଦୃଷ୍ଟିରୁ ଉଠିବା ପାଇଁ ବାଧ୍- ସେଥିରେ ସ୍ୱାଭାବିକତା ନାହିଁ, କ୍ରୋଏସିଆରେ ଘମାଘୋଟ ଲଢ଼େଇ ! ପୁଣି ପଞ୍ଜାବରେ କେଉଁ ରେଲୱେ ଷ୍ଟେସନ୍‌ରେ ସନ୍ତ୍ରାସବାଦୀଙ୍କ ଆଖିବୁଜା ଗୁଳିମାଡ଼ରେ ନିରୀହ ନାଗରିକମାନଙ୍କ ଶବର ଧାଡ଼ି ।

ରଘୁନାଥ ଭିତରେ କାନ୍ଦ ଯେମିତି ଜମାଟ ବାନ୍ଧି ଆସିଲା । ସେ ଆଉ ହସିପାରିବ ନାହିଁ । ଏଇ ସମୟରେ ସେ ଦେଖିଲା ଲାଞ୍ଜ ନଥିବା ବୁଢ଼ା ଝିଟିପିଟି ଗୋଟିଏ କୋଣରୁ ଅନ୍ୟ କୋଣକୁ ଝପଟି ଆସିଲା ଓ ସେଠାରେ ବସିଥିବା ମଥିଟିକୁ ଟାକ୍ କରି ଗିଳିଦେଲା । ତା ପାଖକୁ ସେଇ ୱାଲ୍ ପ୍ଲେଟ୍‌ଟି ଉପରେ ରଘୁନାଥର ଦୃଷ୍ଟି ପଡ଼ିଲା--- ଦଶ ବାର ବର୍ଷର ଶିଶୁଟିଏ ପାଟିମେଲା କରି ହସିଦେଇଛି । ସେଥିରେ ଇଂରାଜୀରେ ଲେଖାଅଛି 'ବି ହାପି' । ରଘୁନାଥକୁ ପ୍ଲେଟ୍‌ଟି ଖୁବ୍ ଭଲ ଲାଗିଥିଲା । ସେଇଟି ସେ କୌଣସି ସହରର ଫୁଟ୍‌ପାଥ୍‌ରୁ କିଣିଥିଲା ।

ଟିଭି ସ୍ୱିଚ୍ ଅଫ୍ କରି ସେ ଫଟୋଟି ଉପରେ ଦୃଷ୍ଟି ରଖିଲା । ରଘୁନାଥ ଫଟୋଟି ସହିତ ଅନ୍ତରଙ୍ଗ ସମ୍ପର୍କ ସ୍ଥାପନ କରୁଛି । ରଘୁନାଥ କ୍ରମେ ହଜିଯାଉଛି । ଆଶ୍ଚର୍ଯ୍ୟ ! ସେ ପିଲାଟି କ୍ରମେ ଛବିରୁ ବାହାରି ଆସୁଛି ଓ ସତକୁ ସତ ଖୁବ୍ ଜୋରରେ ହସୁଛି । ରଘୁନାଥ ଜଡ଼ ମୂର୍ତ୍ତିଟିଏ ପରି ତାକୁ ଚାହିଁଛି କେବଳ । ସେ ଯେମିତି ଫଟୋ ଭିତରୁ ଓହ୍ଲାଇ ଆସି ରଘୁନାଥର ଦୁଇକାନ୍ଧରେ ହାତ ରଖି ଜୋର୍‌ରେ ଝାଙ୍କ ଦେଉଛି । କହୁଛି: ହଇହୋ ବୁଢ଼ା ! ... ଏଇ ଟିକକ ଆଗରୁ ମୋତେ କେମିତି ବଜାର ଛକରେ ଛାଡ଼ିଆସିଲ କହିଲ ? ମୋତେ ସେ ବୁଦ୍ଧିଜୀବୀମାନେ ମୁହୂର୍ତ୍ତକରେ ମାରି ଦେବେନି !

ରଘୁନାଥ ନିଜ ଭିତରକୁ ଫେରି ଆସୁଥିଲା- ସମ୍ପୂର୍ଣ୍ଣ ରଘୁନାଥ । କାନ୍ଥରେ ହସୁଥିବା ପିଲାଟିର ପ୍ଲେଟ୍ । ରଘୁନାଥ ଦେହରେ ଯେମିତି ଶକ୍ତ ଶକ୍‌ଟାଏ କିଏ ମାରିଦେଲା ଓ ସେ ପ୍ଲେଟ୍‌ଟି ନିକଟକୁ ଯାଇ ତାଳ ଦେଇ ଜୋର୍ ହସିଲା । ରାତିର ନିରବତାକୁ

ଭାଙ୍ଗି ରଘୁନାଥ ଏମିତି ଜୋରରେ ହସିଲା ଯେ, ଆରଘରେ ଢ଼ୋଳେଇ ପଡ଼ିଥିବା ତା ସ୍ତ୍ରୀ ହଠାତ୍ କ'ଣ ହେଲା ବୋଲି ଉଠି ଆସିଲା ଓ ରଘୁନାଥକୁ ଏମିତି ଅବସ୍ଥାରେ ଦେଖି କିଛି ବୁଝିପାରିଲା ନାହିଁ । ଏମିତି ହସୁ ହସୁ ରଘୁନାଥ ଆଖିରୁ କେତେବେଳେ କେଇଟୋପା ଲୁହ ଗଡ଼ିଆସିଛି, ସେ ଜାଣିପାରିନି । ଲୁହ ପୋଛୁ ପୋଛୁ ଦେଖିଲା ତା ସ୍ତ୍ରୀ ନିଦ ଛଡ଼ାଇ ହସିବାକୁ ଆରମ୍ଭ କରିଛି । ରଘୁନାଥ ତା ପାଖକୁ ଚାଲିଯାଇ ତାକୁ ଭିଡ଼ି ଧରିଲା ଓ କହିଲା: ବୁଝିଲ ! ଏ ଦୁଷ୍ଟ ଟୋକାଟାକୁ ବଜାର ଛକରେ ଭୁଲ୍‌ରେ ମୁଁ ଛାଡ଼ି ଆସିଥିଲି ।

(୧୯୯୦)



# ଅନ୍ୟ ଏକ ଅନନ୍ତା

ଅନନ୍ତା ଓରଫ ଅନନ୍ତ ଦାସ ଲଛିପୁର ନାମକ ଏକ ମଫସଲ ଗ୍ରାମଦେଇ ଲମ୍ବି ଯାଇଥିବା  ପକ୍କା ସଡ଼କ ରାସ୍ତାର ଠିକ୍ ପାଖକୁ ଲାଗି ତା' ପିତା କର୍ତ୍ତୃକ ନିର୍ମିତ ତିନିବଖରା ଚାଳଘର ଭିତରୁ ମଝି ଘରଟିରେ ବିରାଟ ଏକ ସାଇନ୍‌ବୋର୍ଡ଼ ଲଟକାଇ ଅଞ୍ଚଳଟିର ଆଧୁନିକତା ଉପରେ ବସ୍‌ଯାତ୍ରୀ ତଥା ସେଠାରେ ଅପେକ୍ଷା କରୁଥିବା ଯାତ୍ରୀମାନଙ୍କୁ ଧାରଣା ଦେବାକୁ ଉଦ୍ୟମ କରୁଥିବାବେଳେ, ପିତା ପାଣୁ ଦାସ ରାସ୍ତାର ଅପର ପାର୍ଶ୍ୱରେ ଗୋଟିଏ ନାଲି ଚା' ଦୋକାନରେ ଛୋଟ କାଚଗ୍ଲାସ୍‌ର କସରା ଚା'ରୁ ଢ଼ୋକେ ଢୋକେ ପିଉଥିଲା ଏବଂ ଅନ୍ତୁର ଏତାଦୃଶ୍ୟ କାର୍ଯ୍ୟ ପଛରେ ଥିବା ଉତ୍ସାହ ବା ଉଦ୍ଦେଶ୍ୟ ସମ୍ପର୍କରେ କିଛି ବୁଝିନପାରି ଜଟିଳ ଅଙ୍କଟିର ଧାରା ବୁଝି ନପାରୁଥିବା ସ୍କୁଲ ପିଲାଟି ପରି ସେ କାର୍ଯ୍ୟଟିକୁ ବଲ୍‌ବଲ୍ କରି ଚାହୁଁଥିଲା କେବଳ ।

ଅନନ୍ତା କାମଟି ଶେଷକରି ସିଡ଼ିଦେଇ ତଳକୁ ଓହ୍ଲାଇ ଆସିଲା । ତା ସହିତ ଗାଁର ଅନ୍ୟ କେଇଜଣ ଉତ୍ସାହୀ ଯୁବକ ଯେଉଁମାନେ ଆପାତତଃ ଅନନ୍ତାର ଗାଁଟିକୁ ଆଧୁନିକ କରିବାର ପ୍ରୟାସକୁ ସର୍ବାନ୍ତକରଣରେ ସମର୍ଥନ କରନ୍ତି ଓ ତା'ର ନେତୃତ୍ୱ ପଛରେ କେତେଜଣ ପେଶାଦାର କର୍ମୀ ପରି ତାକୁ ଆନୁଧାବନ କରନ୍ତି, ସେମାନେ ବାନା, କାଳିଆ, ବୁଦ୍ଧିଆ ଇତ୍ୟାଦି । ଅନନ୍ତା ସକାଳୁ ସକାଳୁ ସେମାନଙ୍କୁ ଡ଼ାକି ଆଣିଥିଲା ଗାଁକୁ ଆଧୁନିକ କରିବାର ପ୍ରଥମ କାର୍ଯ୍ୟରେ ତାକୁ ସାହାଯ୍ୟ କରିବାକୁ ।

ଅନନ୍ତା ସେ ଘରଟିଠାରୁ ସାମାନ୍ୟ ଦୂରରେ ଆସି ଠିଆହେଲା ଓ ତା କର୍ମୀମାନେ

ଆଗପଛ ହୋଇ ତା ପାଖରେ ଠିଆହେଲେ । ଅନନ୍ତା ଗୋଟିଏ ଆତ୍ମତୃପ୍ତିରେ ସାଇନ୍‌ବୋର୍ଡ଼ଟିକୁ ତନ୍ମୟ ହୋଇ ଚାହିଁଥିବାବେଳେ ଅଭ୍ୟସ୍ତ ବାନା ପାଖ ଚା ଦୋକାନରେ କେତୋଟି ଚା’ ବରାଦ କରିଦେଇଥିଲା, ଓ ସେ ମଳିକୋଚଟ ପେଣ୍ଟର ଗାଣ୍ଡିରେ ଗୋଟିଏ ବିରାଟ ଫାଙ୍କକୁ କେୟାର୍ ନକରି ଟୋକାଟି ପପୁଲାର ସଙ୍ଗ୍‌ର ପଦୁଟେ ଗୁଣୁ ଗୁଣୁ କରି ଦୋହରାଇ ଚା ଗ୍ଲାସ୍‌ଗୁଡ଼ିକୁ ସେମାନଙ୍କ ହାତକୁ ବଢ଼ାଇଦେଲା । ସେମାନେ ଚା’ ପିଇଲେ ଓ ସାଇନ୍ ବୋର୍ଡ଼ଟିକୁ ଚାହିଁଲେ ।

ପାଣୁଦାସର ସେ କସରା ଚା ଅନେକବେଳୁ ସରିଯାଇଥିଲେ ବି ସେ ନାତି ଟୋକାକୁ ପାଖରେ ଜାକିଧରିଲା ପରି ଅଇଁଠା ଗ୍ଲାସ୍‌ଟିକୁ ପାଖରେ ଥୋଇ ବଂଶଲତାର ଆଗାମୀ ଶାଖାଟିର ଗତିବିଧିକୁ ଲକ୍ଷ୍ୟ କରୁଥିଲା । ସେ ଇଁରାଜୀ ପଢ଼ିନି । ଫଳରେ କାଠ ଫ୍ରେମ୍‌ର ଟିଣ ପଟାଟି ଉପରେ କଣ ଲେଖାଯାଇଛି ସେ ବୁଝି ପାରୁନି । ତଥାପି ଏକ କଳା ପ୍ରଚ୍ଛଦରେ ନାଲି, ହଳଦୀ, ସବୁଜ ରଙ୍ଗ ମିଶି ଏମିତି କିଛି ଚିତ୍ର ସୃଷ୍ଟି କରୁଛି ଯାହା ବୁଢ଼ାକୁ ଭଲ ଲାଗୁଛି ଓ ସେ ଏପରି ଏକ ସିଦ୍ଧାନ୍ତରେ ପହଞ୍ଚୁଛି: ଗାଁରେ ଏସବୁ କେବେ ସେ ଦେଖିନଥିଲା ତା’ ଚାରିକୋଡ଼ି ଦୁଇବର୍ଷ ଭିତରେ । ହୁଏତ ତା’ ପୁଅ ଅନ୍ତୁ ଏଇସବୁ ଚିତ୍ର ଦେଇ ଗାଁରେ କିଛି କଥା କରୁଛି ନିଶ୍ଚୟ ।

ଅନନ୍ତା ସାଇନ୍ ବୋର୍ଡ଼ଟିକୁ ପାଟିକରି ପଢ଼ିଲା:

ହରଗୌରୀ ମାଡ଼ାମ୍ ଟେଲର୍ସ ଆଣ୍ଡ ଲେଡ଼ିସ୍ କର୍ଣ୍ଣର

ଏ ପ୍ରମିଶ୍ ଟୁ ବିଉଟିଫୁଲ୍ ଲେଡ଼ିସ୍ ଚଏସ୍

ଲଛିପୁର, ବାଲେଶ୍ୱର ।

ଅନନ୍ତା ଏତକ ପଢ଼ିସାରି ବନ୍ଧୁମାନଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନଟିଏ ମାରିଦେଲା; ଶାଳା, କେମିତି ହେଲାବେ ! ବଢ଼ିଆ, ବୋଲି ଗୋଟିଏ କୋରସ୍ ଶୁଣାଗଲାବେଳେ ବୁଦ୍ଧିଆ ଥଙ୍ଗ ଥଙ୍ଗ ହେଇ କିଛି କହିବାକୁ ଚେଷ୍ଟା କଲା । କଥାଟା ବୁଝିନେଲା ଅନନ୍ତା: କିବେ ବୁଦ୍ଧିଆ ! ତୋ ମନକୁ ପାଉନାହିଁ ନାଁ କ’ଣ ?

ବୁଦ୍ଧିଆ ଗଳା ଝାଡ଼ିଲା ଓ ସନ୍ତର୍ପଣରେ କହିଲା: “କଥା କଣ କି ଅନ୍ତା’ଇ ସବୁ ଠିକ୍ ହେଲା ଯେ... ସେ ଯେଉଁ ଶିବପାର୍ବତୀ ମୂର୍ତ୍ତି ହଳକ କଲା ପାର୍ବତୀଙ୍କୁ ଟିକେ ଭେରସା କରିଦେଲା । ଦେଖୁନ ଶଳା ଦେବୀଟାର ଯୌବନକୁ କେଇଁତି ଫୁଟେଇ ଦେଖେଇ ଦେଇଛି । ଠାକୁରାଣୀଙ୍କୁ ଏମିତି ଭେସଡ଼ା କରନ୍ତି !”

ଅନନ୍ତାର ସମସ୍ତ ଉତ୍ସାହ ଓ ସୌନ୍ଦର୍ଯ୍ୟବୋଧକୁ ଯେମିତି ବୁଦ୍ଧିଆର ଏଇ କଥା ପଦକ ଦବାଇଦେଲା ମୁହୂର୍ତ୍ତକ ପାଇଁ । ସେ ଚିଡ଼ିଗଲା ଓ କହିଲା: ତୁ ତ ଶଳା ହାଇଓ୍ୱେ ଦେଖିନୁ, ତୁ କୁଆଡୁ ଏ ମୂର୍ତ୍ତିର କିମତ ବୁଝିବୁ? ଦେଖିଛୁ କଟକର ଦେବୀ ମୂର୍ତ୍ତି, ଭୁବନେଶ୍ୱରର ବଡ଼ ବଡ଼ ଦୋକାନମାନଙ୍କର ମଡ଼େଲ୍‌କୁ । ଆରେ ସେ ମୂର୍ତ୍ତିରେ କିଛି ଅଛି ? ଖାଲି ଯୌବନ । ଆଉ ତତେ ହ୍ୟାପ୍ ଯୌବନଟା ପିତା ଲାଗିଲା । କହିଲୁ ଟୋକୀ ସବୁ ସ୍କୁଲ୍ କଲେଜ ଗଲାବେଳେ ତୁ କୋଉଠିକୁ ଚାହୁଁ, କି ନଈ କୂଳରେ ଗାଧୋଉଥିବାବେଳେ ତୋ ଆଖି କୋଉଠିକି ଚାଲିଯାଏ । ଶଳା ବୁଢ଼ା ହେଉ କି ଟୋକା ହେଉ, ସମସ୍ତଙ୍କର ସେଇ ଗୋଟିଏ ଇନ୍ଦ୍ରିରୋଗ- ଆଉ ତୋତେ ସେ ଚିତ୍ରଟା ଭେସଡ଼ା ଲାଗିଲା । ଦେଖିବୁ, ଏଇ ସାଇନ୍ ବୋର୍ଡ଼ କେବଳ ଲୋକ ଟାଣିବ ।

ଏତକ କ୍ଷୋଭ ପ୍ରକାଶ କରି ସାରିଲା ପରେ ଅନନ୍ତା ପୁଣି ଥରେ ନିଘା ରଖି ସାଇନ୍‌ବୋର୍ଡ଼୍‌କୁ ଚାହିଁଲା-ଶଳା ଖତଗଦାରେ ପଦ୍ମଫୁଲ । କିଏ କହି ପାରେ ନାରାୟଣ ଯଦି ସହରରେ ଜନ୍ମିଥାନ୍ତା ତା'ର କଳା ପାଇଁ କିଛି ଗୋଟିଏ ପୁରସ୍କାର ପାଇଯାଇନଥାନ୍ତା । ତା'ର ଦୁର୍ଭାଗ୍ୟ ଏଇ ଅପାଣ୍ଡବା ଗାଁରେ ଜନ୍ମ ନେଲା । କି ଆଇଡ଼ିଆ ଖଟେଇ ନଦେଇଛି ! ହରଗୌରୀ ନାମ ସାଙ୍ଗକୁ ଠିକ୍ ଉପରେ ଶିବପାର୍ବତୀ ଚିତ୍ର ଆଙ୍କି ଦେଇଛି, ଅକ୍ଷରଗୁଡ଼ିକ ଏମିତି ସଜାଣ କରିଛି ଯେମିତି ଟିଣ ପାତ ଉପରେ ସେଗୁଡ଼ିକ ଠିଆହୋଇ ରହିଛନ୍ତି, ଆଉ ଦୁଇ କଡ଼ରେ ପଦ୍ମଫୁଲ ଯୋଡ଼ିକ, ଆହା, ଯେମିତି ସତରେ ଫୁଟିଛନ୍ତି । ଶେଷରେ ତା' ନାଁର ଠାର 'ନାସା'- ନାରାୟଣ ସାହାଣୀ । ଅନନ୍ତାର ମନେହେଲା ତା' ଆଇଡ଼ିଆକୁ 'ନାସା' ଠିକ୍ ଠିକ୍ ତୁଳୀରେ ଫୁଟାଇ ଦେଇଛି ।

ଅନନ୍ତାର ସାଇନ୍‌ବୋର୍ଡ଼୍‌ଟିକୁ ନେଇ ତାରିଫ୍ କରିବାର ଚିନ୍ତା ଭିତରେ ବୁଦ୍ଧିଆ ସମେତ ଅନ୍ୟମାନେ ସେଥିପ୍ରତି ଆଗ୍ରହୀ ବୋଲି ସେମାନଙ୍କ ଭାବରେ ପ୍ରକାଶ କରୁଥିଲେ । ଅକ୍ଷରଗୁଡ଼ିକ ବଡ଼ ବଡ଼ ହୋଇଥିବାରୁ ଶିଶୁର ଫଳା ଚିହ୍ନିଲା ପରି ଅକ୍ଷରଗୁଡ଼ିକୁ ଗୋଟି ଗୋଟି ଚିହ୍ନୁଥିଲେ । କିନ୍ତୁ ସେ ଅକ୍ଷର ସବୁ ମିଶି ଯେଉଁ ଶବ୍ଦ ବା ବାକ୍ୟ ସୃଷ୍ଟି କରିଥିଲେ ତାକୁ ବୁଝିବା ସେମାନଙ୍କ ଶକ୍ତିର ବାହାରେ ଥିଲା । ଅନ୍ୟଥା ସେମାନେ ଅନନ୍ତାର ସ୍ତାବକ ନହୋଇ ନିଜେ ଜଣେ ଜଣେ ଅନନ୍ତା ହୋଇଥାନ୍ତେ ଓ ଲଛିପୁର ଗ୍ରାମଟିକୁ ସହର ବାସ୍ନା ଦେବାକୁ ନିଜେ ଉଦ୍ୟମ କରିଥାନ୍ତେ ନିଶ୍ଚୟ ।

ପାଣ୍ଡୁଦାସ କାଠବେଞ୍ଚରୁ ଉଠି ଠିଆହେଲା, ଗ୍ଲାସ୍‌ଟିକୁ ଦୋକାନୀକୁ ଫେରାଇ ଅଣ୍ଟାରୁ ଖୋଲି ଦୁଇଟି ଦଶ ପଇସି ଦୋକାନୀ ହାତକୁ ବଢ଼ାଇଦେଲା । ଦୋକାନୀଟି

ବୁଢ଼ାକୁ ତୋଷାମଦ କରିବାକୁ ହେଉ କିମ୍ବା ଅନନ୍ତାର କାର୍ଯ୍ୟପ୍ରତି ଶ୍ରଦ୍ଧାରୁ ହେଉ, ପଇସାକୁ ବାକ୍‌ସରେ ରଖୁ ରଖୁ କହିଲା, ଘଡ଼ି ମୂଳରେ ପୁଅଟିକୁ ଜନ୍ମ ଦେଇଥିଲ । ଏ ଯେଉଁ ଦୋକାନ ଖୋଲିଲା ଆମ ଅଞ୍ଚଳର ନୂଆ । କିଏ କହିବ କାଲି ଆଉ ଦୁଇ ଚାରୋଟି ଦୋକାନ ଖୋଲାନଯିବ ଓ ଲଛିପୁର ଛକଟି ଲଛିପୁର ବଜାର ନହେବ ! ପ୍ରକୃତରେ ଦୋକାନୀର ସେ କଥାରେ ଯେମିତି ସନ୍ଥ କବିଙ୍କର ମାଳିକାର ଭବିଷ୍ୟତବାଣୀ ଓ ସତ୍ୟ ଲୁଚି ରହିଥିଲା ଯାହା ପ୍ରାଚୀନ କାଳରେ ଲେଖା ହୋଇଥିଲେ ମଧ ଏବକୁ ଫଳୁଛି ସବୁ ସତକୁସତ । ତା' ଦୋକାନୀଟି ଯେମିତି ସେଇସବୁ ଭବିଷ୍ୟତ ଦ୍ରଷ୍ଟାଙ୍କ ମଧ୍ୟରୁ ଜଣେ । ଏଇ କଥାରେ ପାଣୁଦାସର ବିଶେଷ କିଛି ପ୍ରତିକ୍ରିୟା ନଥିଲା ଯେହେତୁ ଗାଁ କଲକତା ମିଶାଇ ବାଷଠି ବର୍ଷର ଅଭିଜ୍ଞତା ତାକୁ ଶିଖାଇଛି ନିନ୍ଦା ବା ପ୍ରଶଂସା ଟଙ୍କାର ଦୁଇପଟ ପରି; ପୁଣି ଆପେକ୍ଷିକ ବି । ତେଣୁ ସୌଜନ୍ୟ ଦୃଷ୍ଟିରୁ ସେ ସାମାନ୍ୟ ହସିଦେଲା ଓ ଉପରକୁ ଠାରି ଅଳ୍ପ କେତୋଟି ଶବ୍ଦ ଉଚ୍ଚାରଣ କଲା, ଯାହାର ଅର୍ଥ ହେଲା: ସବୁ ତା'ରି ଇଚ୍ଛା, ମଣିଷ ନିମିତ୍ତ ମାତ୍ର । ପାଣୁଦାସ ଲଛିପୁର ଗାଁ ଆଡ଼େ ପାଦ ବଢ଼ାଇଲା ।

ଅନନ୍ତା ଭାବଜଗତରୁ ଫେରିଆସିଲା ଓ ଉପସ୍ଥିତ ଦାୟିତ୍ୱ ସମ୍ପର୍କରେ ସଚେତନ ହେଲା । ଆଜି ସନ୍ଧ୍ୟାରେ ଲେଡ଼ିସ୍ କର୍ଣ୍ଣରର୍ ଉଦ୍‌ଘାଟନ ଉତ୍ସବ । ଅତିଥି ସ୍ଥାନୀୟ ବିଧାନସଭା ସଦସ୍ୟ ଓ ସରପଞ୍ଚ । ନିର୍ଦ୍ଧାରିତ ସମୟ ପୂର୍ବରୁ ସବୁ କାମ ଠିକ୍ ରୂପେ ମୁଣ୍ଡ ଲଗାଇବା କଥା । ସେ ତା'ର ସାଙ୍ଗମାନଙ୍କୁ ଦାୟିତ୍ୱ ବାଣ୍ଟିଦେଲା: ବାନା ଦୁଇଟି କଦଳୀ ଗଛ ପୋତିବ, ଦୁଇଟି ଚିତ୍ରିତ କଳସ ବସାଇବ ଓ ଆମ୍ରପତ୍ର ଦେବଦାରୁ ପତ୍ରରେ ଝାଲର୍ ଟାଙ୍ଗିବ ଦୋକାନ ସାମ୍ନାରେ; କାଳିଆ ଦୋକାନଘର ଭିତର ସଜାଇବ ଓ ତାକୁ ନିଜେ ଅନନ୍ତା ତଦାରଖ କରିବ ଏବଂ ବୁଦ୍ଧିଆ ଶୀଘ୍ର ଯାଇ ଯମୁନା, ମାଳତୀକୁ ଗାଁରୁ ଡାକି ଆଣିବ ।

ଅନନ୍ତାର ନିର୍ଦ୍ଦେଶରେ ବନ୍ଧୁମାନେ ନିଜ ନିଜ ଦାୟିତ୍ୱ ତୁଲାଇବାକୁ ବାହାରିଗଲେ । ଅଥଚ ବୁଦ୍ଧିଆ ସେଠାରେ ଠିଆ ହୋଇ ମୁଣ୍ଡରେ ହାତ ବୁଲାଇଲା । ଅନନ୍ତା ଠିକ୍ ଧରିନେଲା ବୁଦ୍ଧିଆର ରୋଗଟା । ସେ ଚିଡ଼ିଗଲା-ଶାଳା ମାଇଚିଆଟା । ଅନ୍ୟବେଳେ ଟୋକୀ ଟୋକୀ ହେଇ ପ୍ରାଣଯିବ, ଏବେ ଉପସ୍ଥିତ କ୍ଷେତ୍ରରେ ଶଳାକୁ 'ଏକ' ଦେଖଉଛି- ଯାବେ କହିବୁ ଅନ୍ତା'ଇ କହିଲା ଶୀଘ୍ର ଦୋକାନକୁ ଆସ ।

ବୁଦ୍ଧିଆ ଚାଲିଗଲା । ଅନନ୍ତା ପାଖ ଚା ଦୋକାନରେ ବସି ଗ୍ଲାସେ ଚା ଧରି

କାଳିଆର ସଜଡ଼ାସଜଡ଼ି କାମ ଉପରେ ଦୃଷ୍ଟି ରଖିଲା । ହଠାତ୍ ଝଲକାଏ ବସନ୍ତ ପବନ କରି ତା' ମନ ଭିତରେ ଏକ କଅଁଳ ସ୍ୱପ୍ନ ସଞ୍ଚରିଗଲା ଧୀରେ – ତା ପିଲାବେଳ:

ବାପା କଲିକତାରେ ରହୁଥିଲେ । ଘରେ ସେ ଆଉ ମା' ଦୁଇଜଣ ପ୍ରାଣୀ ମାତ୍ର । ସରସ୍ୱତୀ ତା ପ୍ରତି ବିମୁଖ ହେଲେ । ତଥାପି କୌଣସି ପ୍ରକାର ପେଲି ଚାଲିଲା ମେଟ୍ରିକ୍ ପର୍ଯ୍ୟନ୍ତ । ଥର ଥର କରି ଚାରିଥର ସେ ବାଡ଼ଟି ଡ଼େଇଁବାକୁ ସେ ଚେଷ୍ଟାକଲା । ପାରିଲା ନାହିଁ । କଡ଼ା ସେଣ୍ଟର । ଶେଷରେ ବାପା ପାଣ୍ଡୁଦାସ ଗଙ୍ଗାକାଳୀ ଶରଣ ନେଇ ଚିଠିଦେଲା: ତା'ର ପାଠ ସରିଲା । ଇଚ୍ଛା କଲେ କମ୍ପାନୀକୁ କହି ମୋ ଜାଗାରେ ଅନ୍ତୁକୁ ମୁକରୀର କରିଦିଅନ୍ତି । ହେଲେ ସେ ତ ସାପଜିଭ ପରି ଗୋଟିଏନାକୁ ପିଲା । ଏ ଚପଟ କାମ ପାରିବନି । ମୁଁ ସର୍ଭିସ୍ ଉଠେଇବି ପଇଁତ୍ରିଶ ହଜାର ଟଙ୍କା । ତା ପାଇଁ ଗୋଟିଏ ସଂସ୍ଥା ଖଞ୍ଜିଦେଲେ ସେ ଉଠିଯିବ... ଇତ୍ୟାଦି । ବାପର ପଇଁତ୍ରୀଶ ହଜାର ଟଙ୍କା ସାଙ୍ଗକୁ ଗାଁରେ ଗୋଟିଏ ମାତୃମଙ୍ଗଳ କେନ୍ଦ୍ର ଖୋଲାଯିବା ଓ ସେଥିରେ ଗ୍ରାମସେବିକା ତଥା ଧାଇ ଭାବେ ଜମୁନା ଆଉ ମାଳତୀର ଆବିର୍ଭାବ ଅନନ୍ତା ଆଗରେ ଏକ ବିସ୍ତାରୀତ ଦିଗନ୍ତର ଚିତ୍ର ଖୋଲିଦେଲା । ଅନନ୍ତା ଦିନେ ଠିଆ ହୋଇଗଲା ମାତୃମଙ୍ଗଳ କେନ୍ଦ୍ର ସାମ୍ନାରେ । ସେ ଠିଆ ହୋଇଗଲା ଯେ, ତାକୁ ଲାଗିଲା ସେ ଏକମାତ୍ର ଲୋକ ଏଇ ଗାଁରେ ଯେ ଅତୀତକୁ ନେଇ କାନ୍ଦେନା ବା ଭବିଷ୍ୟତର ଅନିଶ୍ଚିତତା ନେଇ ଆତଙ୍କିତ ହୁଏନାହିଁ, ବର୍ତ୍ତମାନଟାକୁ କେବଳ ଦୃଢ଼ଭାବରେ ସାମ୍ନାକରେ । ସେ ଠିଆହେଲା ଏବଂ ଡାକିଲା ଯମୁନା ଓ ମାଳତୀକୁ । ସେତେବେଳେ ସେ ମନେ ହେଉଥାଏ ଯେମିତି ଏକ ଅବତାର ପୁରୁଷ; ଗୋଟିଏ କିଛି ନୂଆ କରିବାକୁ ତା'ର ଆବିର୍ଭାବ । ଯମୁନା ଏବଂ ମାଳତୀ କିଛିଟା ସଙ୍କୁଚିତ ଅବସ୍ଥାରେ ଆସି ଠିଆହେଲେ । ଅନନ୍ତା ସମୟ ନଷ୍ଟ ନକରି ତା ଯୋଜନାର ଏକ ସଂକ୍ଷିପ୍ତ ବିବରଣୀ ସେମାନଙ୍କ ଆଗରେ ପ୍ରକାଶ କରି ସେମାନଙ୍କର ପୂର୍ଣ୍ଣ ସମର୍ଥନ ଓ ସହଯୋଗ କାମନା କଲା । କାରଣ ଗୋଟାଏ ଲେଡ଼ିଜ୍ କର୍ଣ୍ଣର ସହିତ ଯଦି କିଛି ଲେଡ଼ିଜ୍ ସମ୍ପୃକ୍ତ ନହୁଅନ୍ତି ତେବେ ଯୋଜନାଟିର ଅର୍ଥ କିଛି ରହିବନି । ୟା ମଧ୍ୟରେ ସେମାନେ ଅନନ୍ତାକୁ ସିଧା ଚାହିଁ ସାରିଥିଲେ । ଅନନ୍ତାର ଦୁଇଟି ଉଜ୍ଜ୍ୱଳ ଆଖି; ଚାଳିଶ୍ ଇଞ୍ଚର ଛାତି ଓ ନାକତଳେ ଗଜୁରୀ ଉଠୁଥିବା ନିଶ ପ୍ରମାଣ କରୁଥିଲା ହୁଏତ ପ୍ରତ୍ୟୟର ଗୋଟିଏ ମଣିଷ ଠିଆହୋଇଛି ବହୁତ ସମ୍ଭାବନାର ସ୍ୱପ୍ନକୁ ଆଖିରେ ଧରି । ପୁଣି ସେ ଶାସକ ଦଳର ଜଣେ ଗ୍ରାମ୍ୟ ଯୁବକର୍ମୀ । ସେମାନଙ୍କୁ ମନେହେଲା ଏଇ ଭଦ୍ରୋଚିତ ବ୍ୟବହାର ମଧ୍ୟରେ ଗୋଟାଏ କଡ଼ା ନିର୍ଦ୍ଦେଶ ଲୁଚି ରହିଛି । ତାକୁ ଫାଙ୍କିବାର

ନୁହେଁ, ଫାଙ୍କିଲେ ହୁଏତ ନିଶ୍ଚିତ ବିପଦକୁ ଡାକିଆଣିବା ।

ତଥାପି ସେମାନେ ଚାହିଁଲେ ଗାଁର ବୟସ୍କ ମୁରବୀମାନଙ୍କୁ ଓ ପୋଖରୀ ବା ନଈ ତୁଠରେ ଅଭିଆଡ଼ୀ ଟୋକୀମାନଙ୍କୁ ନେଇ ଆଲୋଚନା କରୁଥିବା ବିଧବା ବା ବୟସ୍କା ସ୍ତ୍ରୀ ଲୋକମାନଙ୍କୁ । ସେମାନେ ସନ୍ତର୍ପଣରେ କହିଲେ; ବୁଝିକି କହିବୁ ।

ଅନନ୍ତାର ପୀତ ମୁଣ୍ଡ ଉପରକୁ ଉଠିଗଲା । ସେ ଗର୍ଜିଉଠିଲା, ହେ, ତମେ ଏ ଅନନ୍ତା ଦାସକୁ ଚିହ୍ନିଛ ! ଏ ଗାଁର ଝିଅବୋହୂଙ୍କୁ ନେଇ ତା'ର ଢ଼େର ଦୁର୍ନାମ, ଖାଲି ମିଛଟାରେ... ସେ ଏଯାଏ କାହାର ଇଜ୍ଜତ ନେଇନି । ତୁମକୁ ଫାଇନାଲ୍ ପଚାରୁଛି, ତମର ଶଳା ଶଶୁର ଅଛି, ନାଁ ଶଶୁର ପୁଅ- ମୋ ସାଙ୍ଗରେ ସହଯୋଗ କର । ନହେଲେ ଶଳା ଏ ଲଛିପୁର ଗାଁ ଦାଣ୍ଡରେ ଦିନ ଦି' ପହରେ ତମ ଇଜ୍ଜତ ନେବି, କଉ ଶଳା ପିଠିରେ ପଡ଼ିବ ଦେଖିବି ।

ଏତକ କହି ଅନନ୍ତା ଫେରିଆସିଲା ଓ ଠିକ୍ ସନ୍ଧ୍ୟାବେଳକୁ ଯମୁନା, ମାଳତୀ ତା ଘରେ ଯାଇ ହାଜର । ଅନନ୍ତା ଗୁମ୍ ମାରି ତା ଘର ପିଣ୍ଡାରେ ବସିଥାଏ । କି ଶଳା ବେଶ ! ଯୌବନକୁ ଛ'ଇଞ୍ଚ ଭିଡ଼ି ଉପରକୁ ଟେକିଛନ୍ତି; ମୁହଁରେ ପାଉଡ଼ର, ମୁଣ୍ଡରେ ଟୋପା... ଯେମିତି ଶଳା ଶିବଙ୍କର ଧ୍ୟାନଭଙ୍ଗ କରିବାକୁ ଉର୍ବଶୀ କି ମେନକା ଛଦ୍ମରେ ଆସିଗଲେ । ଅନନ୍ତା ସେମିତି ବସିଥାଏ । ସ୍ତ୍ରୀ ଲୋକଙ୍କ ପାଖରେ ମୁଣ୍ଡ ଭାଙ୍ଗିବା ତା ନୀତି ବିରୁଦ୍ଧ । ସେମାନେ ସନ୍ତର୍ପଣରେ ଅନନ୍ତାର ଯୋଜନା ପ୍ରତି ସେମାନଙ୍କର ସମର୍ଥନ ଜଣାଇଲେ । ଅନନ୍ତା କହିଲା: ହଉ ଯାଅ, ରାତି ହେଲାଣି ।

ସେଇ ବାପ ପାଣ୍ଡୁଦାସର ସର୍ଭିସ୍ ଟଙ୍କାର କିଛି ଅଂଶ ଓ ଯମୁନା ମାଳତୀର ସହଯୋଗରେ ଲଛିପୁର ଗାଁ ଛକରେ ବଜାର ପରିକଳ୍ପନା- 'ହରଗୌରୀ ମାଡ଼ାମ୍ ଟେଲର୍ସ' ମାଧ୍ୟମରେ !

ଅନନ୍ତା ପ୍ରକୃତିସ୍ଥ ହେଲା । ହାତରେ ଅଳ୍ପ କେତେ ଘଣ୍ଟା । ଦୋକାନ ଘର ସଜାଣ ଆଗେଇ ଚାଲିଛି । ସେ ଚା'ଗ୍ଲାସ୍ ବେଞ୍ଚରେ ଥୋଇ ଦେଇ ଦୋକାନ ଘରେ ପଶିଲା । ସେତେବେଳକୁ କାଳିଆ ଉଷା ମେସିନ୍ ଦୁଇଟିକୁ ଦରଜାର ସାମ୍ନାପଟକୁ ଥୋଇ ଦେଇଥାଏ ଯେଉଁଠି ବସି 'ମାଡ଼ାମ ଟେଲର୍ସ'ର ଦୁଇଜଣ ତାଲିମପ୍ରାପ୍ତ ମହିଳା, ଯଥା ଯମୁନା ଓ ମାଳତୀ ପୋଷାକପତ୍ର ତିଆରି କରିବେ । ଅନ୍ୟ କଡ଼ରେ ବିରାଟ ଏକ କାଠର ରେକ୍ । ସେଥିରେ ନାରୀମାନଙ୍କର କେତେକ ଆବଶ୍ୟକୀୟ ପଦାର୍ଥକୁ କାଳିଆ

ସଜାଡ଼ି ଦେଇ ରଙ୍ଗ କାଗଜରେ ପଟି ଓ ଝାଲର ସେଥିରେ ମାରୁଥାଏ । ଅନନ୍ତ ସନ୍ତୁଷ୍ଟ ହେଲା- ଉଦ୍‌ଘାଟନବେଳକୁ ସବୁ କାମ ସମ୍ପୂର୍ଣ୍ଣ ହୋଇ ସାରିଥାଏ ।

ଉଦ୍‌ଘାଟନର ସେଇ ପ୍ରତୀକ୍ଷିତ ମୁହୂର୍ତ୍ତଟି ଆସିଗଲା । ଅନନ୍ତା ପୋଷାକ ବଦଳାଇ ସାରିଥିଲା- ଧୋତି ପଞ୍ଜାବୀ; ବାନା, କାଳିଆ, ବୁଦ୍ଧିଆ ଚେକ୍ ଖୁର୍ଦ୍ଧା ଲୁଙ୍ଗୀ ସାଙ୍ଗକୁ ସାଣ୍ଡୋଜ୍ ବାନିଅନ୍ ଓ ଟାଓ୍ୱେଲ୍‌ରୁ ଖଣ୍ଡେ ଲେଖା । ଯମୁନା ଓ ମାଳତୀଙ୍କ ପୋଷାକ ଗାର୍ଲସ୍କୁଲର ଶିକ୍ଷୟିତ୍ରୀଙ୍କ ପରି: ଧଳା ଶାଢ଼ୀ, ନୀଳ ବଡ଼ର । ଯମୁନା ହାତରେ ପଟେ ଥାଳୀ, କଇଁଚି, ଦୀପ ଓ କିଛି ଫୁଲ, ମାଳତୀ ହାତରେ ଶଙ୍ଖ । ଲଛିପୁର ଗାଁର ଅନେକ ଲୋକ ଜମିଗଲେଣି... ଗାଁର ଗୋଟିଏ ନବଜାଗରଣର ଯୁଗ ଆରମ୍ଭ ହେଲା ହୁଏତ । ଅନନ୍ତା ବ୍ୟସ୍ତ, ଯେ କୌଣସି ସମୟରେ ଏମ୍‌ଏଲ୍‌ଏ ପହଞ୍ଚି ଯାଇପାରନ୍ତି । ଅନେକ ପୂର୍ବରୁ ସ୍ଥାନୀୟ ସରପଞ୍ଚ ଅନନ୍ତା ସହିତ ସମସ୍ତ ଆୟୋଜନର ଏକ ପୂର୍ଣ୍ଣ ବିବରଣୀ ନେଇ କାଠ ବେଞ୍ଚ ଉପରେ ଦୁଇଗୋଡ଼ ଟେକି ଚା' ପିଉଛନ୍ତି ଓ ପାଖରେ କେତେକ ଡ଼ିଲର୍ ଚାଟୁ ବାକ୍ୟରେ ତାଙ୍କୁ ଆପ୍ୟାୟିତ କରୁଛନ୍ତି ।

ଅନନ୍ତା ଚଞ୍ଚଳ । ସେ ତା ସାଥୀମାନଙ୍କୁ ଯଥାରୀତି ପରାମର୍ଶ ଦେଇଛି ଓ ବେଶି ସମୟ ଯମୁନା ଓ ମାଳତୀଙ୍କୁ, ଯେହେତୁ 'ମାଡ଼ାମ୍ ଟେଲର୍ସ'ର ଏକମାତ୍ର ଆକର୍ଷଣ ସେ ଯୁବତୀ ଦିଇଟି । ଦୋକାନ ସାମ୍ନାରେ ତିନୋଟି ଚେୟାର ଓ ଟେବୁଲ୍ ସଜା ହୋଇ ଟେବୁଲ ଉପରେ କିଛି ଆମ୍ବପତ୍ର ଆଉ କାଗଜଫୁଲ ସହିତ ଦୁଇଟି ଫୁଲଦାନୀ ରଖାଯାଇଛି । ଗାଁର ତିନୋଟି ଛୋଟ ଝିଅ ତିନୋଟି ଫୁଲମାଳ ଧରି ଗୋଟିଏ କଡ଼କୁ ଠିଆ ହୋଇଛନ୍ତି । ଲୋକ ଗହଳିର ପଛକୁ ପାଣ୍ଡୁଦାସ ନୀରବରେ ବସିଯାଇଛି । ତା' ଆଖିରେ ଲୁହ ଜକେଇ ଆସୁଥିଲା । ସେ କଲକତାରେ ଥିବାବେଳେ ଜାଗୁଳାଇଙ୍କ ଶରଣ ନେଇ ଅନ୍ତୁ ମା'ର ଚିଠି... ଅନ୍ତୁ ବାପ ଜାଣିବ: ଅନ୍ତୁର ଉତ୍ପାତ ଆଉ ସହିହେବନି, କାହା ଘରେ ବେନାମୀ ଚିଠି ପଡ଼ିଲାଣି ତ, କାହା ସାଙ୍ଗରେ ଫଉଜଦାରୀ, ଏଥିକୁ ତମେ ବିଚାର କର, ନଚେତ୍ ଏ ଗାଁରେ ମୁହଁ ଟେକିପାରିବି ନାହିଁ... । ପାଣ୍ଡୁଦାସ ଅନ୍ଧାରରେ ଲୁହ ପୋଛି ନେଇ ଠାକୁରଙ୍କୁ ମନେ ମନେ ଜୁହାର କଲା: ଫକୀର ମୋହନଙ୍କ ଅନନ୍ତା ଥିଲା ରାଣ୍ଡୀପୁଅ, ଗାଁର କଳଙ୍କ, ସେ ନଈ ଘାଇରେ ପୋତି ହୋଇପଡ଼ିଲା ଓ ଗାଁ ଶାନ୍ତ ହେଲା । ହେଲେ ଆମ ଅନ୍ତୁ- ସେ ତ ଗୋଟିଏ ନୂଆ ଅବତାର । ନହେଲେ ଲଛିପୁର ଗାଁରେ କେତେ ଟୋକା ନଥିଲେ ବା କେତେ ଧନୀ ଲୋକ ନଥିଲେ ! କାହା ମୁଣ୍ଡକୁ ତ ଏ କଥା ଢୁକୁ ନଥିଲା... ପାଣ୍ଡୁଦାସର ଏଇ ଭାବନା ଭିତରେ ଏମ୍‌ଏଲ୍‌ଏ ଆସିଗଲେ

ଓ ସାଙ୍ଗେ ସାଙ୍ଗେ ସରପଞ୍ଚ ଅଧା ଚା' ଗ୍ଲାସ୍‌କୁ ପ୍ରାୟ ଫିଙ୍ଗିଦେଇ ଅତିଥିଙ୍କ ପାଖକୁ ଦଉଡ଼ିଗଲେ । ସାଙ୍ଗେ ସାଙ୍ଗେ ଅନନ୍ତା ମଧ୍ୟ ।

ବୁଦ୍ଧିଆ ଗୋଟାଏ କୁହାଟ ମାରିଲା: ବେ ବନା ଲଗା, ଶଳା ଡ଼େରି ହୋଇଗଲା । ପ୍ରକୃତରେ ବିଳମ୍ବ ହୋଇଗଲା । କାରଣ ଅନ୍ତା'ଇର ନିର୍ଦ୍ଦେଶ ଥିଲା ସମସ୍ତଙ୍କ ବେକରେ ଫୁଲହାର ଗଳାଯାଉଥିବାବେଳେ ଶଙ୍ଖ ବାଜିବ ଓ ତୋପ ଫୁଟିବ । ଯଦିଓ ମାଳତୀ ଠିକ୍ ସମୟରେ ଶଙ୍ଖ ଫୁଙ୍କିଦେଲା ଏବଂ ଯମୁନା ଥାଳିରୁ କଇଁଚି ଉଠାଇ ଫିତା କାଟିବାରେ ସାହାଯ୍ୟ କଲା, ବନା କିନ୍ତୁ ଚା' ଗ୍ଲାସ୍‌ର ମୋହ ଛାଡ଼ି ନପାରି ଚଞ୍ଚଳ ଚଞ୍ଚଳ ଢ଼ୋକ ମାରିବା ସତ୍ତ୍ୱେ ବି ତୋପଟି ଠିକ୍ ସମୟରେ ଫୁଟି ପାରିଲା ନାହିଁ । ଏ ବ୍ୟତିକ୍ରମ ଯୋଗୁଁ ଅନନ୍ତା ଚେୟାରରେ ବସି ମଧ୍ୟ ଆଖି ତରାଟି କାହାକୁ ଯେମିତି ଖୋଜୁଥିଲା ।

କାର୍ଯ୍ୟସୂଚୀର ପ୍ରଥମ ପର୍ଯ୍ୟାୟରେ ଅନନ୍ତାର ସ୍ୱାଗତ ଭାଷଣ । ଅନନ୍ତା ଠିଆହେଲା ଓ ଯୋଡ଼ ହସ୍ତରେ ସମସ୍ତଙ୍କୁ ଅଭିବାଦନ ଜଣାଇଲା । ବୁଦ୍ଧିଆ ଚୁପ୍ ଚୁପ୍ କାଳିଆ କାନରେ କହିଲା: ଦେଖିବେ ଟେବୁଲ ତଳକୁ, ଅନ୍ତାଇର ଗୋଡ଼ ଦି'ଟା କେମିତି ଥରୁଛି । କାଳିଆ ରୋଆବଟେ ହାଙ୍କିଲା, ଶଳା ସେ କ'ଣ ଡ଼ରୁଛି ବେ ! ତା'ର ଭାବ ଆସିଗଲାଣି ଦେଖୁନି । ଅନନ୍ତା ଆରମ୍ଭ କଲା:

ସ୍ପୁଟ୍‌ନିକ୍ ଯୁଗର ଭାଇଭଉଣୀ ଓ ଅତିଥିମାନେ... । ଆଜିର ଏ ସଭା... ସଭା... ସଭା, ତାର ଅନେକ ଅନେକ ଲକ୍ଷ୍ୟ । ଆମେ ଗାନ୍ଧୀ, ନେହେରୁ, ସୁବାଷ୍ ବୋଷ... ଏମିତି କେତେ ବଡ଼ ବଡ଼ ନେତା ଦେଶ ପାଇଁ ଜୀବନ ଦେଇଦେଲେ, ଦେଶକୁ ପ୍ରଗତିବାଦୀ ରାଷ୍ଟ୍ର କରିଦେଲେ । ଆଣେ ଓଡ଼ିଆ ମାଡ଼ ଖାଇଲେ... କଇଁଛ ପରି ଖୋଳପାରେ ରହିଲେ.. ମୁଁ ସେ ପୁରୁଣା ଓଡ଼ିଆ, ନିଜକୁ ଚିହ୍ନିଛି... ନିଜ ଶକ୍ତିରେ ଏ ଗାଁକୁ ସହର କରିବି (ଘନ ଘନ କରତାଳି ଓ ଅନନ୍ତା ଚୁପ୍ ହୋଇଯିବା) ମୁଁ ଯମୁନା ଦେବୀ ଓ ମାଳତୀ ଦେବୀଙ୍କ ପ୍ରତି କୃତଜ୍ଞ- ଝିଅ ବୋହୂ ଆଗେଇ ଆସନ୍ତୁ- ମୋ ହାତରେ ହାତ ମିଳାଇ 'ହରଗୌରୀ ମାଡ଼ାମ୍ ଟେଲର୍ସ ଆଣ୍ଡ ଲେଡ଼ିସ୍ କର୍ଣ୍ଣର'ର ମହତ ଲକ୍ଷ୍ୟକୁ ପୂରଣ କରନ୍ତୁ । ମୋର ବେଶୀ କିଛି କହିବାର ନାହିଁ । ଶେଷରେ ମୋର ଏତିକି ଅନୁରୋଧ ମୁଁ ଯେତେବେଳେ 'ଇନ୍ କିଲାବ୍' କହିବି, ଆପଣ ମୋ ସହିତ ସ୍ୱର ମିଳାଇ କହିବେ 'ଜିନ୍ଦାବାଦ୍'...

ଅନନ୍ତାର ତିନିଥର 'ଇନ୍ କିଲାପ୍'ର ପ୍ରତିଧ୍ୱନୀ 'ଜିନ୍ଦାବାଦ୍' ଜନତାଙ୍କଠାରୁ ମିଳିଲା ଓ ସେ 'ଜୟହିନ୍ଦ୍' କହି ଚେୟାର୍‌ରେ ବସିପଡ଼ିଲା । ମୁଖ୍ୟ ଅତିଥି ତାଙ୍କ

ଭାଷଣରେ ଗାନ୍ଧୀଜୀଙ୍କର ଗ୍ରାମ ଉନ୍ନୟନ ଯୋଜନାର ଆଭିମୁଖ୍ୟ ଓ ସେଥିରେ ଯୁବକମାନଙ୍କର ଭୂମିକା ସମ୍ପର୍କରେ ଗୁରୁତ୍ୱ ଦେଇ ଅନନ୍ତବାବୁଙ୍କର ଏବଂବିଧ ଉଦ୍ୟମ ପାଇଁ ସାଧୁବାଦ ଜଣାଇଲେ । ପରେ ପରେ ସରପଞ୍ଚ ଗ୍ରାମକୁ ସହରରେ ପରିଣତ କରିବାରେ ଗାନ୍ଧୀ ମାହାତ୍ମାଙ୍କ ସ୍ୱପ୍ନକୁ ଅନନ୍ତ ସଫଳ କରିଥିବାରୁ ତା' ପ୍ରତି ମୁଖ୍ୟ ଅତିଥିଙ୍କର ଚିରକାଳୀନ ସହଯୋଗ ଓ ଆଶୀର୍ବାଦ ଭିକ୍ଷା କଲେ ।

ସେ ଦିନର ସଭା ସରିଲା ଏବଂ ଗ୍ରାମବାସୀମାନେ ଲଛିପୁର ଗାଁ ଭିତରକୁ ଫେରୁଥିବାବେଳେ କେମିତି ଗୋଟିଏ ନୂତନ ଉତ୍ତେଜନାରେ ଫାଟି ପଡୁଥିଲେ- ପ୍ରକୃତରେ ଅନନ୍ତା ଜଣେ କରିତ୍‌କର୍ମା ଯୁବକ ଏବଂ ତା'ର ଉଦ୍ୟମରେ ଏ ଅପାଣ୍ଡବା ଲଛିପୁର ଗାଁ ଗୋଟିଏ ଛୋଟକାଟର ସହରରେ ପରିଣତ ହେବ ।

ସମୟ ତା' ବାଟରେ । ଲଛିପୁରର ସେ ଚଉମୁହାଣୀ ଛକଟି କେତେ ମାସରେ ସ୍ୱତଃ ନାମିତ ହେଲାଣି ଲଛିପୁର ବଜାରରେ । ଆଉ କେତୋଟି ଦୋକାନ ଖୋଲିଗଲାଣି 'ସୁବାସିନୀ ମିଷ୍ଟାନ୍ନ ଭଣ୍ଡାର', 'ମୋହିନୀ ବିଟଲ୍ ସପ୍', 'ଶଙ୍କର କ୍ଲଥ୍ ଷ୍ଟୋର୍' ଇତ୍ୟାଦି । ଏଥି ସହିତ ଗାନ୍ଧୀଜୀଙ୍କ କୁଟୀର ଶିଳ୍ପ ଯୋଜନାର ପରିପ୍ରେକ୍ଷୀରେ ଗୋଟିଏ ଚୂଡ଼ାକୁଟା କଳ । ତେଣୁ ଛକଟିରେ ଜନଗହଳୀ । ବିଶେଷ କରି ସୁବାସିନୀ ମିଷ୍ଟାନ୍ନ ଭଣ୍ଡାର, ମୋହିନୀ ବିଟଲ୍ ସପ୍ ଓ ଶଙ୍କର କ୍ଲଥ୍ ଷ୍ଟୋରରେ । ମିଷ୍ଟାନ ଭଣ୍ଡାର ତଥା ବିଟଲ୍ ସପ୍‌ରେ ଚଉଦ ପନ୍ଦର ବର୍ଷର ଫ୍ଲାପ୍ ନଥିବା ଏକପରସ୍ତ ଫ୍ରକ୍ ଭିତରେ ଶରୀରକୁ ଏମିତି ଦୋହଲାଉଛନ୍ତି, ଯାତ୍ରୀ ସ୍ୱତଃ ଟାଣି ହୋଇଯାଉଛନ୍ତି କିଛି ଖାଇବାକୁ ବା ଦୁଇଖଣ୍ଡ ପାନ ପାଇଁ । ସେଠାରେ ସବୁବେଳେ ଗହଳୀ । ପୁଣି ଶଙ୍କର କ୍ଲଥ୍ ଷ୍ଟୋର୍ 'ମାଡ଼ାମ୍ ଟେଲର୍ସ' ପାଇଁ ବିଭିନ୍ନ ପ୍ରିଣ୍ଟର କନା ମାଧ୍ୟମରେ କଞ୍ଚାମାଲ୍ ଯୋଗାଇବାରେ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ । ଅନନ୍ତା ଦୋକାନ ସାମ୍ନାରେ ବସେ ଓ କାର୍ଯ୍ୟରେ ତଦାରଖ କରେ । ଝିଅପିଲାମାନେ  ପୋଷାକ ମେଜରମେଣ୍ଟ ଦେଲାବେଳେ ଅନନ୍ତା ସତର୍କ ହୁଏ ଓ ଯମୁନାକୁ ଠିକ୍ ଠିକ୍ ମାପ ପାଇଁ ସତର୍କ କରାଏ ।

ଏମିତି ସବୁ ଠିକ୍ ଚାଲୁଥିଲା, କିନ୍ତୁ କଣ ଗୋଟାଏ ହଠାତ୍ ଗଣ୍ଡଗୋଳ ହୋଇଗଲା ଯାହାଫଳରେ ଲଛିପୁର ଗାଁ ଭିତରେ ଗୋଟାଏ ମୃଦୁ ଆଲୋଡ଼ନ ଦେଖାଦେଇ ତାହା ଏକ ବିରାଟ ଚ୍ୟାଲେଞ୍ଜର ରୂପ ନେଲା, ଯେମିତି କ୍ଷୁଦ୍ର ଏକ ଅଗ୍ନିକଣା ସମୁଦାୟ ଗ୍ରାମକୁ ଭସ୍ମ କରିଦିଏ । କଥାଟି ଉଠିଲା ଗାଁ ନଈ ତୁଠରୁ ମାଇକିନାଙ୍କୁ ଭିତ୍ତିକରି ଓ ତାଙ୍କ ତାଙ୍କ ଭିତରୁ କ୍ରମେ ପୁରୁଷମାନଙ୍କ କାନକୁ ଗଲା । ଯେଉଁମାନେ

ଅନନ୍ତାର ଯମୁନା ଓ ମାଳତୀ ସହିତ ସମ୍ପର୍କ ପାଇଁ ଈର୍ଷାରେ କିମ୍ବା ଅନନ୍ତାର ଉନ୍ନତିରେ ଅସହିଷ୍ଣୁ ଥିଲେ ସେମାନେ ଉପସ୍ଥିତ ଘଟଣାର ଗୋଟାଏ ସୁଯୋଗ ନେଇ ଅନନ୍ତାକୁ ଚାପି ଦେବାକୁ ଉଦ୍ୟମ କଲେ ।

ଯମୁନାର ପାପଗର୍ଭ ହେଇଛି । ସେଥିପାଇଁ ଅନନ୍ତା ଉପରେ ସମୁଦାୟ ଗ୍ରାମବାସୀଙ୍କର ଦୋଷାରୋପ । ପାଣ୍ଡୁଦାସ ମୁଣ୍ଡରେ ହାତ ଦେଇ ଘରେ ବସିଥିଲା । ପ୍ରତ୍ୟେକ ଘରଠାରୁ ଗାଁ ଦାଣ୍ଡରେ ଗୋଟିଏ କଥା । ଗ୍ରାମବାସୀଙ୍କର ସିଦ୍ଧାନ୍ତ- ଆଜି ସନ୍ଧ୍ୟାରେ ଏ କଥାର ବିଚାର ହେବ । ଗାଁର ଗ୍ରାମରକ୍ଷୀ ଆସିବ ଓ ବିଚାର ପରେ ଅନନ୍ତାକୁ ସାତବେଣ୍ଟିଆ କରି ସାତଖଣ୍ଡ ମୌଜାରେ ଗଧ ଉପରେ ବସାଇ ବୁଲାଯିବ । ଅନନ୍ତା କାନରେ କଥାଟି ପଡ଼ିଯାଇଥିଲା ଓ ସେ ବିବ୍ରତ ହେବା ପରିବର୍ତ୍ତେ ତା' ପେଣ୍ଟ ପକେଟରେ ହାତ ପୂରାଇ ମୁରୁକୀ ମୁରୁକୀ ହସୁଥିଲା ।

ନିର୍ଦ୍ଧାରିତ ସମୟରେ 'ମାଡ଼ାମ ଟେଲର୍ସ' ସାମ୍ନାରେ କ୍ରମେ ଗ୍ରାମବାସୀଙ୍କର ଭିଡ଼ ହେଲା । ସେଇ ଅନ୍ଧାରରେ ଅତି ସନ୍ତର୍ପଣରେ ପାଣ୍ଡୁଦାସ ପଛରେ ଗୋଟିଏ ଛୋଟ ବରଗଛ ମୂଳେ ବସିଥାଏ । ଅନନ୍ତା ସ୍ୱାଭାବିକ ରୀତିରେ ଦୋକାନରେ କିଣାବିକା ସହିତ ପୋଷାକ ତିଆରି ତଦାରଖ କରୁଥାଏ । ଗ୍ରାମରକ୍ଷୀ ଦୋକାନ ଦୁଆରେ ଅନନ୍ତାକୁ ଡ଼ାକିଲା- ଗ୍ରାମବାସୀ ତାକୁ ଅପେକ୍ଷା କରିଛନ୍ତି । ଅନନ୍ତା ବାହାରିଆସିଲା ଓ ଦୋକାନ ସାମ୍ନାରେ ଚକା ପାରି ବସିଥିବା ଗ୍ରାମବାସୀଙ୍କ ଉପରେ ଥରେ ଆଖି ବୁଲାଇଦେଲା । ସେତେବେଳେ ତା'ର ରୂପ ଗମ୍ଭୀର ଦେଖାଯାଉଥିଲେ ବି ଉଜ୍ଜ୍ୱଳ ଥିଲା । ଗାଁର ଜଣେ ପୁରୁଖା ଲୋକ କହିଲେ, ଅନନ୍ତ ଦାସ । ତମ ସହିତ ଆମର କିଛି ଆଲୋଚନା ଅଛି । ଅନ୍ତା ଗମ୍ଭୀର ହୋଇ କହିଲା, କ'ଣ ଆଲୋଚନା କରିବେ କରନ୍ତୁ, ମୁଁ ଠିଆହୋଇଛି ।

ଏତିକିରେ ନିଜ ନିଜ ଭିତରେ ସମସ୍ତେ ମୁହଁ ଚାହାଚାହିଁ ହେଉଥାନ୍ତି ଓ ଜଣେ ଗଳା ଝାଡ଼ି ଆରମ୍ଭ କଲା, ଆମେ ଜାଣିଲୁ ତୁମ ଆଡୁ ଯମୁନା ଦେବୀଙ୍କର ପାପଗର୍ଭ ହୋଇଛି । ଏଇଟା ଆମ ଗାଁ ପାଇଁ କେବଳ ନୁହେଁ, ସମାଜ ପାଇଁ କଳଙ୍କ । ଏହା ଯଦି ସତ୍ୟ ହୋଇଥାଏ ତମେ ସ୍ୱୀକାର କର ଓ ପଞ୍ଚଙ୍କର ନ୍ୟାୟ ମାନିନିଅ ।

"ହଁ ମୋ ଦ୍ୱାରା ଯମୁନା ଗର୍ଭବତୀ କିନ୍ତୁ ସେଇଟା ପାପ କେମିତି ହେଲା । ଗୋଟିଏ ଯୁବତୀ ଯୁବକ ଦ୍ୱାରା ଗର୍ଭବତୀ ହେବନି, ଆଉ କ'ଣ ଘୋଡ଼ା ହାତୀ ଦ୍ୱାରା ହେବ !"

ଅନନ୍ତର ଏ ଉତ୍ତରରେ କେତେକ ଦବିଗଲେଣି ସେତେବେଳକୁ । କିନ୍ତୁ ଗୋଟିଏ

ଟିଙ୍ଗ୍‌ଶୂଳିଆ ବୁଢ଼ା ହଠାତ୍ ବଡ଼ ପାଟିକରି ଅନନ୍ତାକୁ ଦାବି ଦବାକୁ ଚେଷ୍ଟାକଲା- "ତୁମ ମୁହଁରେ ଲଜ୍ୟା ନାହିଁ ଏକଥା କହୁଚ ! ଆମେ ଗାଁରେ ଝିଅବୋହୂ ନେଇ ରହିବୁଟି ? ଯଦି ତମେ ମାନୁଛ ଯମୁନା ପାପ ଗର୍ଭ ପାଇଁ ତମେ ଦାୟୀ, ତେବେ ସମାଜର ନ୍ୟାୟ ଅନୁସାରେ ତୁମକୁ ସାତବେଣ୍ଟିଆ କରାଯିବ ।"

ଏତକ କହି ଗ୍ରାମରକ୍ଷୀକୁ ନିର୍ଦ୍ଦେଶ ଦେଲେ ଅନନ୍ତାକୁ ଆୟତ୍ତ କରିବାକୁ । ବିଚାରା ଗ୍ରାମରକ୍ଷୀ ଅଧାଜଳା ବିଡ଼ିଟିକୁ ଲିଭାଇ ଠିଆ ହେଉଥିବାବେଳେ ଅନନ୍ତା ଦୋକାନ ବାରଣ୍ଡା ଉପରୁ ଗର୍ଜିଉଠିଲା, "ଶଳେ ଭାଡୁଆ ସମାଜ ଚୋଦଉଚ ! ଶଳା ଏ ଗାଁର ରାଣ୍ଡ ଖଣ୍ଡିଙ୍କଠୁ ତମ ରକ୍ତ ଚିହ୍ନ ଲିଭିନଥିବ, ଆଉ ତମେ ଆସିଛ ମୋର ବିଚାର କରିବାକୁ ।"

ଶୁଣ, ସେ ଆହୁରି ଜୋରରେ ଚିତ୍କାର କଲା- ମୁଁ ଯମୁନାକୁ ବାହାହେବି, ଦରକାର ହେଲେ ମାଳତୀକୁ ବି । ମୁଁ ସମାଜ ମାନେନା... ବେ ଶଳେ ସମାଜ ଆଉ ଅଛି । ମଣିଷ ଗୋଟାକୁ ତ ସମାଜ ଗୋଟିଏ... ତମେ କେବେଠୁ ପାଞ୍ଚଜଣ ମିଶି ସମାଜ ଗଢ଼ିଲଣି ।

ତାପରେ ଅନନ୍ତା ପକେଟରୁ କଣଟେ ବାହାର କରି ବୁଢ଼ା ଆଙ୍ଗୁଳିରେ ଟିପିଦେଲା ଯେ ହାତେ ଲମ୍ବାର ଗୋଟିଏ ଛୁରୀ ବାହାରି ଦୋକାନ ବାର୍‌ଲାଇଟ୍ ଆଲୋକରେ ଚକ୍ ଚକ୍ କଲା, ଶଳା, ଏଇଥିରେ ସମସ୍ତଙ୍କୁ ଶେଷ କରିବି - ଶୀଘ୍ର ଫୁଟ ଏଠୁ ।

ଗୋଟାଏ ହୋ ହଲ୍ଲା ଭିତରେ ପଞ୍ଚ ଭାଙ୍ଗିଗଲା ଓ କିଏ କୁଆଡ଼େ ଅନ୍ଧାରରେ ମିଶିଗଲେ । ଅନନ୍ତା ଗୋଟାଏ ଲଢୁଆ ଷଣ୍ଢ ପରି ସଁ ସଁ ହୋଇ ଦୋକାନ ଭିତରେ ଚେୟାରରେ ବସିଗଲା । ଯମୁନା, ମାଳତୀ ଯଥାରୀତି ସିଲାଇ କାମ ଚାଲୁ ରଖୁଥିଲେ ଏବଂ ଦୋକାନ ବାରଣ୍ଡାର ଗୋଟିଏ କଣକୁ ବାନା, କାଳିଆ, ବୁଦ୍ଧିଆ ଠିଆ ହୋଇ ମଜା ଦେଖୁଥିଲେ ।

ଅଥଚ ସେଇ ଅନ୍ଧାର ଭିତରେ ପାଣ୍ଡୁଦାସ ଆଶ୍ୱସ୍ତ ହୋଇ ଗାଁକୁ ଫେରୁଛି । କେବଳ ମନେହେଉଥିଲା ରେଖାଚିତ୍ରରେ ଗାନ୍ଧୀ ମାହାତ୍ମା ଯେପରି ପଛକରି ଚାଲି ଯାଉଛନ୍ତି ପରମ ଆତ୍ମସନ୍ତୋଷରେ, ଦେଶକୁ ସମ୍ଭାଳିବା ପାଇଁ ତାଙ୍କ ଯଥାର୍ଥ ଉତ୍ତରାଧିକାରୀମାନେ ଅଣ୍ଟା ଭିଡ଼ି ବାହାରିଲେଣି ବୋଲି ।

(୧୯୮୪)



## ଠେକୁଆ, ହ୍ୱାପ୍‌ପ୍ୟାଣ୍ଟ ପିନ୍ଧା କିଶୋରର୍ ମୃତ୍ୟୁ ଓ ଡାକ୍ତର୍ ସାମନ୍ତରାୟ

ଡାକ୍ତର ସାମନ୍ତରାୟ ଠିକ୍ କାଲ୍‌କାଟାରୁ ଫେରିଥାନ୍ତି । ଏବଂ ତାଙ୍କ ଏଚିଭ୍‌ମେଣ୍ଟର ବିବରଣୀ ଏମିତି ପ୍ରାଞ୍ଜଳଭାବେ ସ୍ତ୍ରୀ ଦୀପା ଓ ପରିବାରର ଅନ୍ୟମାନଙ୍କୁ ବୁଝାଉଥାନ୍ତି, ତାଙ୍କ ଉଦ୍ଦୀପନାକୁ ଅନୁଧ୍ୟାନ କଲେ ଜଣାଯିବ ସେ ଯେମିତି ଲସ୍‌ଏଞ୍ଜେଲସ୍ ଅଲିଂପିକ୍‌ରୁ ଏଇ ମାତ୍ର ସ୍ୱର୍ଣ୍ଣପଦକଟିଏ ଧରି ଭାରତ ଭୂଇଁରେ ପାଦ ଦେଇଛନ୍ତି ।

ଠେକୁଆ ଚାରୋଟି ସେମାନଙ୍କ କାଚ ଆଖିରେ ଜୁଳୁଜୁଳୁ କରି ଚାହିଁଥାନ୍ତି ଲୁହାର ପିଞ୍ଜରା ମଧ୍ୟରୁ । ପଶୁ ପକ୍ଷୀ ଯେ ଯେହେତୁ ମଣିଷ ନୁହନ୍ତି; କୌଣସି ଆସନ୍ନ ବିପଦ ପାଇଁ ମଣିଷ ବୁଝିଲା ପରି କୌଣସି ଭାବାନ୍ତର ନଥାଏ ସେମାନଙ୍କର ।

ସାମନ୍ତରାୟଙ୍କ ଏମିତି ଉଲ୍ଲସିତ ହେବାର କାରଣ ରହିଛି ।

ସ୍ତ୍ରୀ ଦୀପା ମନ୍ତବ୍ୟ କଲା– ଆହା ହା, ଯେମିତି ଗୋଟାଏ ଗଡ଼ ଜିତିଛ, କିମ୍ବା ପଙ୍କଚର ହେଇଥିବା ସ୍କୁଟରକୁ ସାତ / ଆଠ କିଲୋମିଟର ପେଲି ପେଲି ଆଣିଛ । ହେଇ ହେଇ ଏବେ ଦିଟା ଠେକୁଆ ନେଇ ଆସିଛ । ବାଣୀବିହାର ପାଖ ବୁଦା ଜଙ୍ଗଲରେ ସନ୍ଧ୍ୟାରେ ଥରେ ବୁଲିଗଲେ ଯାହାକୁ ଯେତେ; ସେଥିରେ ପୁଣି ବାହାଦୁରୀ ।

ସାମନ୍ତରାୟ ଅସ୍ଥି-ଶଲ୍ୟ ବିଭାଗର ସ୍ନାତକୋତ୍ତର ଛାତ୍ର । ଠେକୁଆ ଉପରେ ଥେସିସ୍ କରିବା ପାଇଁ ବିଭାଗୀୟ ମୁଖ୍ୟଙ୍କଠାରୁ ତାଙ୍କୁ ଅନେକ ଭର୍ତ୍ସନା ଶୁଣିବାକୁ

ପଡ଼ିଲା । ସେ ମୁଖ୍ୟଙ୍କ ଆଗରେ କାକୁସ୍ଥ ହୋଇ ଠେକୁଆ ମିଳିବାର ଅସୁବିଧା ସମ୍ପର୍କରେ କିଛି ବୁଝାଇବା ପରି କଥା କହିଲେ: ଯଥା ଡ଼ିପାର୍ଟମେଣ୍ଟରେ ଠେକୁଆ ରଖି ତା ଉପରେ ଷଡ଼ି କରିବା ଗୋଟାଏ କଠିନ ବ୍ୟାପାର । ଏଇଥି ପାଇଁ ମୁଖୀ ନାମକ ବେହେରା ପ୍ରତି ସକାଳେ ରିପୋର୍ଟ କରିବ ଠେକୁଆ ରାତିରେ ଗୋଟିଏ କରି ମରୁଛନ୍ତି; ଷଡ଼ିବେଳକୁ ଠେକୁଆଙ୍କର ସତ୍ତା ନଥିବ । ମୃତ ଠେକୁଆ କିନ୍ତୁ କୌଣସି ସକାଳରେ ଦେଖିବାକୁ ମିଳନ୍ତି ନାହିଁ ।

ସାମନ୍ତରାୟ ପୁଣି ଛେପ ଢୋକି କହିଲେ, "ସେ ମୁଖୀ ସାର୍ ! ପୁରା ହାଡ଼ିଟାଏ, ନହେଲେ ଡିସେକ୍‌ସନ ପାଇଁ ଗୋଟିଏ ହେଲେ ଠେକୁଆ ରଖାଇ ଦିଅନ୍ତା ନାହିଁ ।" ଏମିତି ଠିଆ ହୋଇ ସେ ଥରେ ଦୁଇଥର ତିନିଥର ଅନେକଥର ମିଛ କଥା କହିଗଲେ ଠେକୁଆ ଯୋଗାଡ଼ କରିବାର ତାଙ୍କ ଅସାମର୍ଥ୍ୟ ଯୋଗୁଁ ।

ବିଭାଗୀୟ ମୁଖ୍ୟ ଡାକ୍ତର ପଟ୍ଟନାୟକ ସାମନ୍ତରାୟଙ୍କ ଆଡ଼କୁ ଦୃଷ୍ଟିଦେଲେ ଓ କୃତ୍ରିମ କ୍ରୋଧ ପ୍ରକାଶ କରି କିଛିଟା ବିରକ୍ତ ହେଲେ: ବୁଝିଲ ସାମନ୍ତରାୟ, ତୁମେ ପାଞ୍ଚଜଣ ପି.ଜି. ଛାତ୍ର ଅଛ- ଏ ବିଭାଗରେ ମୋ ସମୟରେ କେବେ ସେଣ୍ଟ ପରସେଣ୍ଟ ରେଜଲ୍ଟ ହୋଇନାହିଁ । ମୋ କଥାରେ ଗୁରୁତ୍ୱ ନଦେଇ ମୋତେ ମିଛ କହୁଛ... ହୁଏତ ଏଇ ପିଜି ଡ଼ିଗ୍ରୀଟି ପାଇଁ ତୁମକୁ ଆହୁରି ଦୁଇଟା ଚାନ୍‌ସ୍ ଅପେକ୍ଷା କରିବାରୁ ପଡ଼ିପାରେ । ସାମନ୍ତରାୟ ମୁଣ୍ଡରେ ହାତ ବୁଲାଉ ବୁଲାଉ ହୁଏତ କହିପାରିଥାନ୍ତେ: ସାର୍ ! ଆପଣଙ୍କ ଦୟା ! କିନ୍ତୁ କିଛି କହିଲେ ନାହିଁ, ସେ ଠିକ୍ ଜାଣିଛନ୍ତି ଏଇଟା ତାଙ୍କର ମିଛ କ୍ରୋଧ ଏବଂ ତାଙ୍କ ଉପରେ ସେ ରାଗି ପାରିବେନି । ସେ ରାଗି ପାରିବେନି ଯେହେତୁ ୟୁନିଭରସିଟିରେ ତାଙ୍କ ଝିଅର ସ୍କଲାରସିପ୍ ଠାରୁ ତାଙ୍କ ଘର ତିଆରିର ଅନେକ ଯତ୍ନ ସେ ନେଇଛନ୍ତି । ତଥାପି ସୌଜନ୍ୟ ଦୃଷ୍ଟିରୁ ସେ କହିଲେ: ଠେକୁଆ ଏଠି ଭଲ ମିଳୁନାହାନ୍ତି, ମୁଁ କ'ଣ କରିବି ସାର୍ । ତା'ଛଡ଼ା ଆପଣ ଜାଣିଛନ୍ତି ସରକାର ଆମକୁ କେତେ କମ୍ ଷ୍ଟାଇପେଣ୍ଡ ଦେଉଛନ୍ତି । ଏତେ ଷ୍ଟ୍ରାଇକ୍ କଲୁ, ସୁପ୍ରିମ କୋର୍ଟ କଲୁ । କିଛି ଫଳ ହେଲା ନାହିଁ । ଏତେ କମ୍ ପଇସାରେ କେଉଁଠୁ ବାହାରକୁ ଯାଇ ମୁଁ ଠେକୁଆ ଯୋଗାଡ଼ କରିବି !

ଡ଼ାକ୍ତର ପଟ୍ଟନାୟକଙ୍କ ମୁହଁର ଭାବ ବଦଳିଲା । ସେ ହସିଲେ ଓ ସାମନ୍ତରାୟଙ୍କ ଗୋଡ଼ଠାରୁ ଗୋଟିଏ କୁଳକୁଳିଆ ଭାବ ସୃଷ୍ଟି ହୋଇ ସମୁଦାୟ ଶରୀରକୁ ଛାଇ ଦେଲା । ସେ ମଧ୍ୟ ତାଙ୍କ ରସିକ ଆଖିରେ କିଛିଟା ଆଶ୍ୱସ୍ତ ଭାବ ପ୍ରକାଶ କଲେ । ପ୍ରାଣୀର

ବୋନ୍‌ଷଡି ପର୍‌ଫେକ୍ଟ ହେବନି । କାରଣ ଠେକୁଆ ମାମାଲ ପ୍ରାଣୀ କି ନାଁ, ତା'ର ବୋନ୍ ଆପାତତଃ ଦୁଇଟା ଅନ୍ତରଙ୍ଗ ଲୋକ ପାଖାପାଖି ।

ଡାକ୍ତର ପଟ୍ଟନାୟକ କହିଲେ- ଦେଖ, ଚେଷ୍ଟାର ହାଓ୍ୱଡା ମାର୍କେଟ୍‌ରେ ଇଚ୍ଛାମୁତାବକ ଠେକୁଆ । ତା'ଛଡ଼ା କାଲକାଟା ଯିବାଟା ବିଶେଷ କିଛି ବ୍ୟୟ ସାପେକ୍ଷ ନୁହେଁ । ତୁମେ ଜାଣିଛ ଠେକୁଆ ବ୍ୟତୀତ ଅନ୍ୟ କୌଣସି ଷ୍ଟ୍ରକ୍‌ଚର ମଣିଷ ଅନୁରୂପ । ଗୋ - ହରି ଅପ୍ ।

ଆର୍କମେଡ଼ିସ୍ ସୂତ୍ର ଆବିଷ୍କାରର ଆନନ୍ଦ ନେଇ ଡ଼ାକ୍ତର ସାମନ୍ତରାୟ ପଟ୍ଟନାୟକଙ୍କ କୋଠରୀରୁ ଡ଼ିଆଁଟେ ମାରି ଦେଇଥାନ୍ତେ । କିନ୍ତୁ ସେମିତି କିଛି ନ କରି ସେ ତରଳି ଗଲେ ମୁଣ୍ଡାଏ ବରଫ ପରି ଓ ତାଙ୍କ ସ୍ୱଭାବସୁଲଭ ଚଞ୍ଚଳତାରେ ପ୍ରକାଶ କଲେ - ମୁଁ ପାରିବି - ମୁଁ ପାରିବି, ଆପଣଙ୍କ ଅନୁଗତ ଛାତ୍ର ଏଇଠୁ ଏଇ ସିଧା ଚାଲିଲି କାଲ୍‌କାଟାର ହାଓଡ଼ା ମାର୍କେଟ୍‌କୁ ଏବଂ ନିଜ ତତ୍ତ୍ୱାବଧାନରେ ଠେକୁଆ ଗୁଡ଼ିକୁ କଞ୍ଚା ଘାସ ଦେଇ ମୋ ଥେସିସ୍ ସାରିବି । ଯଦିଓ ସେ ମନେ ମନେ ଠିକ୍ କରିନେଇଥିଲେ ଏ ବୋକା ପଟ୍ଟନାୟକଟିକୁ ଠକାଇବା ପାଇଁ ଯଥେଷ୍ଟ ଉପାୟମାନଙ୍କ ମଧ୍ୟରୁ ମୁଖୀକୁ ହାତ କରି କିଛି ଲେଗ୍ ବୋନ୍ ସଂଗ୍ରହ କରାଯାଇ ପାରେ ଓ ନି ଜଏଣ୍ଟରେ ସାଗୁ ଦାନାଟିଏ ଥୋଇ ପର୍‌ଫେକ୍ଟ ଆଲୋକଚିତ୍ର ଉଠାଇ ଥେସିସ୍‌ରେ ଜୀବନ୍ତ ଟଚ୍ ଦିଆଯାଇପାରେ ।

ତଥାପି ସେ ଠିକ୍ କଲେ ସେ ହାଓ୍ୱଡ଼ା ମାର୍କେଟ୍ ଯିବେ ଓ କେତୋଟି କୌତୁକିଆ ଠେକୁଆ ଆଣି କିଛି ସମୟ ପାଇଁ ପଟ୍ଟନାୟକଙ୍କୁ ମଜଗୁଲ କରିଦେଇ ଗୋଟିଏ ଇମ୍ପ୍ରେସନ୍ ସୃଷ୍ଟି କରିବେ । ସେ ଯଥେଷ୍ଟ ସିନିଅର ଏବଂ ଫିଫ୍‌ଟି ପର୍‌ସେଣ୍ଟ ରେଜଲ୍ଟ ମଧ୍ୟରୁ ତାଙ୍କ ସ୍ଥାନ ସୁରକ୍ଷିତ ।

ହାଓଡ଼ା ମାର୍କେଟ୍ ପ୍ରସ୍ତାବ ସାମନ୍ତରାୟଙ୍କର କାର୍ଯ୍ୟକାରୀ ହେଲା । ପୁତ୍ରଠାରୁ କିଛି ପ୍ରତ୍ୟାଶା ଆଶା କରୁନଥିବା ହିପୋକ୍ରାଟ୍ ପିତାମାନଙ୍କ ପରି ତାଙ୍କ ପିତା ମଧ୍ୟ ସେ ଦିଗରେ ତାଙ୍କୁ ଉତ୍ସାହିତ କଲେ ଯଦିଓ ଅନ୍ତରର କେଉଁ ଅବଦମିତ ଇଚ୍ଛା ଆଶାର ଏକ କ୍ଷୀଣ ସ୍ରୋତ ଭିତରେ ପ୍ରକାଶ କରି ପାଖକୁ ପୁଅଟା ହୁଏତ କିଛି ଦିନ ପରେ ଭିଡ଼ି ଆସିବ ।

ଏଇ ସେଇ ସାମନ୍ତରାୟ ଠେକୁଆମାନଙ୍କ ସହିତ ସକାଳ ଟ୍ରେନ୍‌ରୁ ସିଧା ଘରେ ପହଞ୍ଚିଛନ୍ତି ।

ଘରେ ଛୋଟକାଟର ପ୍ରଦର୍ଶନୀ-ଠେକୁଆ ନେଇ । ଡ଼ାକ୍ତର ସାମନ୍ତରାୟ ମଣିଷ

ଶରୀରର ଏନାଟୋମି ଜ୍ଞାନ ସତ୍ତ୍ୱେ ବି ହୃଦୟର ରୋମାଣ୍ଟିକ୍ ଭାବକୁ ଦୂରବନ୍ଧୁ ପରି ସି-ଅଫ୍ କରିପାରି ନଥିଲେ । ସେ ସେଇ ସମୟରେ କବିଟିଏ ହୋଇଗଲେ- ମେଞ୍ଚାଏ କପା ତୁଳା ପରି ଠେକୁଆ ଗୁଡ଼ିକ ଓ ଲାଲ୍ ଛବିର ସେମାନଙ୍କର ଢ଼ଳଢ଼ଳ ଆଖି ଯୋଡ଼ିକ । ତାଙ୍କ ଆକ୍ଷି ସାମ୍ନାରେ ନୀଳ ଆକାଶ, ସବୁଜ ବନାନୀ, ବନଝରଣା ଓ ସର୍ବୋପରି କାକରଭିଜା ସକାଳର କାବ୍ୟିକ ପରିବେଶ ।

ସେତେବେଳକୁ ସାମନ୍ତରାୟଙ୍କ ଛୋଟ ପିଲା ଦୁଇଟି, ଲିଟୁ ଓ ଲିଟୁ, ସେମାନଙ୍କର ଖେଳ ଆରମ୍ଭ କରିଦେଲେଣି । ଏ ପର୍ଯ୍ୟନ୍ତ ସେମାନେ ନକଲି ଖେଳଣାମାନଙ୍କରେ ଖେଳୁଥିଲେ । ଅଥଚ ସେମାନଙ୍କୁ ଖେଳଣା ପରି ବ୍ୟବହାର କରୁଥିବା ବାପାଟି ଜୀବନ୍ତ ଖେଳଣା ଧରି ଆଣିଲେ । ସେମାନେ ଖାଇବା ପିଇବା ଭୁଲିଗଲେ ।

ସ୍ୱାଭାବିକ ଚଞ୍ଚଳ ସ୍ୱଭାବର ଡ଼ାକ୍ତର ସାମନ୍ତରାୟ ଗମ୍ଭୀର ହେଲେ । ଦୀପାର ଖାମ୍‌ଖେୟାଲ୍ ମେଜାଜ ଭିତରେ ତାଙ୍କୁ ଆକର୍ଷିତ କରିବାର ଉଦ୍ୟମ କେମିତି ପାଣି ଫାଟିଗଲା । ଏଇ ମାତ୍ର ବିରାଟ ସଫଳତାର ଆନନ୍ଦ ମୁଖର ଲୋକଟା କେମିତି ଅନ୍ୟମନସ୍କ ହୋଇପଡୁଛି । ସକାଳର ପ୍ରାତଃକର୍ମ ସାରିବା ପରିବର୍ତ୍ତେ ସେ ସେଇଠି ବସିରହି ଠେକୁଆମାନଙ୍କର ନିରୀହ ଓ ପିଲାମାନଙ୍କର ଆଗ୍ରହକୁ କଳୁଥିଲେ । ଚାରୋଟି ଠେକୁଆ ନା ଚାରୋଟି ନିଷ୍ପାପ ଶିଶୁ ! ଚାରୋଟି ଶିଶୁଙ୍କର ଜୀବନ ବିନିମୟରେ ତାଙ୍କ ଜୀବନର ସଫଳତା- ଅସ୍ଥି-ଶଲ୍ୟର ବିଶେଷଜ୍ଞ, କିଛି ବର୍ଷ ପରେ କ୍ଲାସ୍ ୱାନ୍; ଗୋଟାଏ ଫିଗର-ପ୍ରଫେସର ପଟ୍ଟନାୟକଙ୍କ ପରି ।

ତାଙ୍କ ଭିତରୁ ଗୋଟାଏ ଅବରୁଦ୍ଧ 'ସବୁଥିବା କିଛି ନଥିବାର' ଅନିଶ୍ଚିତ ଅସହାୟ ଅନୁଭବ ଆତ୍ମପ୍ରକାଶ କଲା । ସେ କେବଳ ଚିତ୍ରପ୍ରତିମାଟିଏ ପରି ଠେକୁଆ ସହିତ ପିଲାଙ୍କ ଖେଳକୁ କାଚର ଆକ୍ଷିରେ ଦେଖୁଥିଲେ ।

ତାଙ୍କର ଏବଂବିଧ ଆଚରଣରେ ଦୀପା ଆଶ୍ଚର୍ଯ୍ୟ ହେଲା ଓ ତାଙ୍କୁ ସ୍ୱାଭାବିକ କରିବାକୁ ଶୀଘ୍ର କାମ ସାରି ସାମାନ୍ୟ ବିଶ୍ରାମ ନେବାକୁ ପରାମର୍ଶ ଦେଲା । ସାମନ୍ତରାୟ ଠେକୁଆ ଓ ପିଲାମାନଙ୍କଠାରୁ ଆକ୍ଷି ଫେରାଇ ଦୀପାକୁ ଚାହିଁଲେ । ସ୍ତ୍ରୀ ଲୋକମାନେ ଅନେକ ସମୟରେ ଇଡ଼ିଅଟ୍‌ଙ୍କ ପରି ବ୍ୟବହାର କରନ୍ତି ଓ ଜୀବନର ସଫଳତାକୁ ଜାବୁଡ଼ି ଧରି କହିଲେ, ଏ ଠେକୁଆ ଓ ଲିଟୁ, ଲିଟୁ ଭିତରେ ପାର୍ଥକ୍ୟ କ'ଣ ! ଦୀପା ହସିଦେଲା ଓ କହିଲା ଡାକ୍ତରମାନେ କବି ହେବାର ଦୃଷ୍ଟାନ୍ତ କମ୍ । ଶୀଘ୍ର କାମ ସାର ଓ ସେମାନଙ୍କ ଏନସ୍‌ଥେସିଆ ଦେବାର ବ୍ୟବସ୍ଥା କର । କେବେ ଆଉ ଥେସିସ୍ ଦାଖଲ

କରିବ !

ଅନିଶ୍ଚିତ ସାମନ୍ତରାୟ ! ଶରୀରଟାକୁ ଘୋଷାରୀ ଘୋଷାରୀ ବାଥ୍‌ରୁମ୍‌କୁ ଗଲେ ଓ ସକାଳର ନିତ୍ୟକର୍ମ ସାରିଲେ । ବ୍ରେକ୍‌ଫାଷ୍ଟ, କପେ ଚା' ଓ ଠେକୁଆଙ୍କୁ ଏନେସ୍‌ଥେସିଆ । ପିଲାମାନଙ୍କୁ ଦୀପା ନେଇଗଲାଣି ଅନ୍ୟ ଖେଳରେ ଲଗାଇ ଦେବାକୁ ।

ସାମନ୍ତରାୟ ପ୍ରସ୍ତୁତ ହେଉଥିଲେ । ତାଙ୍କର ଇଚ୍ଛା ହେଲା ଠେକୁଆ ଚାରୋଟି ସାମ୍ନାରେ ଆଣ୍ଠୁମାଡ଼ି ବସିବେ, ସେମାନଙ୍କ ପ୍ରତି ତାଙ୍କର ସହାନୁଭୂତି ପ୍ରକାଶ କରିବେ ଓ ଶିଶୁ ପରି ନିରୀହ ପ୍ରାଣୀମାନଙ୍କୁ ବୁଝାଇବେ, ମୁଁ ବଡ଼ହେବି, ବଞ୍ଚିବି ଓ ସଫଳକାମୀ ଲୋକମାନଙ୍କ ଧାଡ଼ିରେ ମୋର ସ୍ଥାନ ସଂରକ୍ଷଣ କରିବି । ଠିକ୍ ସେତିକି ବେଳେ ଝରକା ଦେଇ ସେ ଦେଖିଲେ, କାଠ କେବିନ୍‌ରେ ହବୁ ମିଆଁ ସେ ଦିନର ତା ଦୋକାନ ଖୋଲି ଦେଲାଣି ଓ ମୁଣ୍ଡହୀନ ଛେଳିମାନଙ୍କୁ ଧାଡ଼ି କରି ଝୁଲାଇ ଦେଲାଣି ହାଙ୍ଗରରେ ସାର୍ଟପେଣ୍ଟ ପରି ।

ବାହାର ଦରଜାରେ ନକ୍ ହେଲା । ଦୀପା କହିଲା, ଭାବଗ୍ରାହୀ ବାବୁ, ରିଟାୟାର୍ଡ଼ ଅଣ୍ଡର ସେକ୍ରେଟାରୀ ଓ ତାଙ୍କ ବାପାଙ୍କ ସାଙ୍ଗ, ଡ଼ାକ୍ତର ସାମନ୍ତରାୟଙ୍କୁ ଚାହୁଁଛନ୍ତି ।

ସାମନ୍ତରାୟ କବାଟ ଖୋଲିଲେ ଓ ଦେଖିଲେ ଭାବଗ୍ରାହୀବାବୁଙ୍କ ହାତରେ ଗୋଟିଏ କୌତୁକିଆ ଲୋମଶ ଠେକୁଆ ତାଙ୍କ ଛାତିକୁ ଆଉଜି ରହିଛି । ସାମନ୍ତରାୟ କିଛି ପଚାରିବା ପୂର୍ବରୁ ସେ କହିଲେ, ଗତରାତିରୁ ଠେକୁଆଟିକୁ ଜ୍ୱର । ସେ କିଛି ଖାଉ ନାହିଁ । ପାଖ ପଶୁଡ଼ାକ୍ତର ନାହାନ୍ତି । ମଣିଷ ପଶୁଙ୍କ ଔଷଧ ପ୍ରାୟ ସମାନ । ତାକୁ କ'ଣ ଦେବା ।

ସାମନ୍ତରାୟ କେବଳ ଅନ୍ୟମନସ୍କ ହେଲେ ନାହିଁ, ସମସ୍ତ ସୌଜନ୍ୟବୋଧ ଭୁଲି ଉତ୍‌କ୍ଷିପ୍ତ ହୋଇଗଲେ, ଦେଖନ୍ତୁ ମୁଁ ମଣିଷ ଡ଼ାକ୍ତର । ଆପଣଙ୍କ ଠେକୁଆର କ'ଣ ହେଲା ନହେଲା ସେକଥା ବୁଝିବାକୁ ବାଧ୍ୟ ନୁହେଁ ।

ସାମନ୍ତରାୟ କବାଟ ବନ୍ଦ କରି ଦେଲେ ।

ସେଇଦିନ ସନ୍ଧ୍ୟାରେ ସାମନ୍ତରାୟ ଠେକୁଆମାନଙ୍କ ଦେହରୁ ମାଂସ ବାହାର କରି ହାଡ଼ଗୁଡ଼ିକୁ ପରିଷ୍କାର କରି ରଖିଲେ ଓ ଚାକର ପିଲାକୁ କହିଲେ ସେ ମାଂସଗୁଡ଼ାକୁ ରେଳଲାଇନ୍ କଡ଼ରେ ଫିଙ୍ଗି ଦେବାକୁ ।

ପରେ ପରେ ସେମିତି ଅନ୍ୟମନସ୍କ ଭାବରେ ସେ ଶୋଇଗଲେ ଓ ସିଲିଂ ଫ୍ୟାନ୍‌ରେ ଦୃଷ୍ଟି ନିବଦ୍ଧ କଲେ । ତାଙ୍କର ସେଇ ଅବସ୍ଥାରେ କେତେବେଳେ ଲିଟୁ ଓ ଲିଟୁ ତାଙ୍କ ପେଟ ଉପରେ ଧାପିଗଲେଣି । ତାଙ୍କ ଦୁଇ ହାତ ଅଟୋମେଟିକ୍ ପିଲା ଦୁଇଟିକୁ ଦୁଇ କଡ଼ରେ ଜାକି ଧରିଲା । ଅଥଚ ସେ ନିଷ୍ପନ୍ଦ ଥିଲେ । ତାଙ୍କ ଦୃଷ୍ଟି କେବଳ ସେଇ ସିଲିଂ ଫ୍ୟାନ୍‌ରେ ଆବଦ୍ଧ ଥିଲା । କେହି ଦେଖିଲେ ଭାବିବେ ସେ ସେଇ ପୁରାତନ ସ୍ମୋଟିଭ ଡ଼ାକ୍ତର ସାମନ୍ତରାୟ ନୁହନ୍ତି । ତାଙ୍କର ଗୋଟିଏ ପ୍ରତିମୂର୍ତ୍ତି କେବଳ ।

ଚାକର ପିଲା ଆସି ଖବର ଦେଲା ସେ ଯେଉଁଠି ଠେକୁଆ ମାଂସଗୁଡ଼ିକ ଫିଙ୍ଗି ଦେଲା, ସେଇଠି ଠିକ୍ ହାପ୍‌ପେଣ୍ଟ ପିନ୍ଧା କିଶୋରଟିଏ ମରିପଡ଼ିଛି । ସମ୍ବାଦଟି ଦୀପାକୁ ବିସ୍ମିତ କଲା ଓ ସେ ଦଉଡ଼ି ଯାଇ ସାମନ୍ତରାୟଙ୍କୁ ହଲାଇ ଉଠାଇଦେଲା । ତା'ର ଶ୍ୱାସକ୍ରିୟା ବଢ଼ିଯାଇଥିଲା ଓ ଆଶଙ୍କାରେ କହିଲା, ଶୁଣିଲଣି ରେଳଲାଇନ କଡ଼ରେ ପିଲାଟିଏ ମରି ପଡ଼ିଛି... ଆଉ, ସେ ଛେପ ଢ଼ୋକି କହିଲା- ଚାକର ଟୋକା କହୁଥିଲା ସେ ପିଲାଟା କୁଆଡ଼େ ଠିକ୍ ସେଣ୍ଟ୍ରାଲ ସ୍କୁଲରେ ପଢୁଥିବା ବେଳର ତୁମ ଚେହେରା ପରି ।

ସାମନ୍ତରାୟ ଉଠି ବସିଲେ ଓ ତାଙ୍କ ପିଲା ଦୁଇଟି ଖେଳନା ପରି ତାଙ୍କଠାରୁ ଦୂରକୁ ଗଡ଼ିଗଲେ । ସେ ଦୀପାକୁ ବୋକାଙ୍କ ପରି ଚାହିଁଲେ- କିଛି ସମୟ ପରେ ଅନାସକ୍ତ ଭାବରେ କହିଲେ, ଆମ ଚେହେରା ମୁଖୀ ଜୀବନରେ ଥରଟେ ମରିବ ।

ଦୀପା ଆଶଙ୍କା, ଉତ୍କଣ୍ଠା ଓ ଅନିଶ୍ଚିତତାରେ ସ୍ଥିର ହୋଇଗଲା ।

(୧୯୮୪)



# ଅନିଶ୍ଚିତ ଅନିରୁଦ୍ଧ

ଅନିରୁଦ୍ଧ ସେ ସଭାରେ ହଟ୍ଟଗୋଳ କଲା । ଏଇଥି ପାଇଁ ଯେ, ସେଠି ଉପସ୍ଥିତ ଥିବା ତଥାକଥିତ ଇଣ୍ଟେଲେକ୍‌ଚୁଆଲମାନେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ବେକାର କଥାମାନଙ୍କରେ କିଛି ନା କିଛି ଅନାବଶ୍ୟକ କଥା କହୁଥିଲେ । ଅନିରୁଦ୍ଧ ଠିକ୍ ଅବ୍ୟବହିତ ପୂର୍ବରୁ ଗୋଟିଏ ଦୂର ସ୍ଥାନରୁ ଫେରିଥାଏ ଓ ସେତେବେଳେ ଦିନ ବାରଟା ହୋଇଥିବାରୁ ଧାରଧାର ଝାଳରୁ ଦେହକୁ ମୁକ୍ତ କରିବା ପାଇଁ ତା ଇଂପୋଟେଡ୍ ବ୍ୟାଗ୍‌ରୁ ଲୁଙ୍ଗିଟାକୁ (କାରଣ ସେ ମୌଳିକ ଓଡ଼ିଆଟିଏ) କାଢ଼ି ସମସ୍ତଙ୍କ ସାମ୍ନାରେ ସାର୍ଟର ବୋତାମ ଖୋଲି ମୁହଁରୁ ପେଟ ପର୍ଯ୍ୟନ୍ତ ପୋଛି ଗଲା । ଇଣ୍ଟେଲେକ୍‌ଚୁଆଲମାନେ ଓଡ଼ିଆ ହୋଇଗଲେ ଓ ଅନିରୁଦ୍ଧର ଏତାଦୃଶ କାର୍ଯ୍ୟରେ ହସି ପକାଇଲେ । ଅନିରୁଦ୍ଧ ପରିବେଶକୁ ହାଲ୍‌କା କରିଦେବା ପରେ ଜାଣିଲା- ସମୟ ପୋଖତ । କାରଣ ସେ ସଭାରେ ସଭାପତିତ୍ୱ କରୁଥିବା ଗୋପୀନାଥ ମହାନ୍ତିଙ୍କ ବଳୀଦତ୍ତ ଦାସର ସାମ୍ପ୍ରତିକ ସଂସ୍କରଣର ମଣିଷଟି ଅସହାୟ ବୋଧ କଲା; ଯେହେତୁ ଏପରି ସାମୟିକ ସଭାମାନଙ୍କରେ ତା'ଟେକ୍‌ଟ ପ୍ରୟୋଗ କରି ସମସ୍ତଙ୍କୁ ଚୁପ୍ କରାଇଦିଏ । ଅନିରୁଦ୍ଧ କିନ୍ତୁ ତା ଟାକ୍‌ଟ୍‌କୁ କେତୋଟି ବାକ୍ୟ ବିସ୍ଫୋରଣରେ ଫସକାଇ ଦିଏ ଅକସ୍ମାତ୍ ଚେସ୍ ବୋର୍ଡ୍‌ର ରଜାକୁ ଚେକ୍ ପଡ଼ିଲା ପରି । ସେ ଲୋକଟା ନୂଆ ଟେକ୍‌ଟ ପ୍ରୟୋଗ କରି କଥାର ମୋଡ଼ ବଦଳାଇବାକୁ ଚେଷ୍ଟା କରୁଥିବା ସତ୍ତ୍ୱେ ବି ଅନିରୁଦ୍ଧ ଠିଆ ହୋଇ ପୋଲିସ ଉପରେ ଉତ୍ତ୍ୟକ୍ତ ଜନତାର ଟେକାମାଡ଼ ପରି କେତେକ

କଠୋର ବାକ୍ୟ ପ୍ରୟୋଗ କରେ ।

ଅନିରୁଦ୍ଧ ହଟ୍ଟଗୋଳକୁ ଭଲପାଏ ନାହିଁ, ଯଦିବା କେବେ କରେ ଗୋଟାଏ ମଜ୍ଜା ପାଇଁ, କାହିଁକି ନା ସେ ଇଣ୍ଟେଲେକଚୁଆଲ କ୍ଲବର ସେ ସାଢ଼େ ଚାରି ଫୁଟିଆ ଲୋକଟା କେବଳ ସଭାପତି ନୁହେଁ; ସେ ଗୋଟିଏ ଧର୍ମାନୁଷ୍ଠାନର ପରିଚାଳକ ଓ ସେହି ଅନୁଷ୍ଠାନର ପ୍ରାଥମିକ ନିୟମଗୁଡ଼ିକୁ ପ୍ରଥମେ ସେ ଅବଜ୍ଞା କରେ ତା'ର ବ୍ୟବହାରିକ ଜୀବନରେ, ପୁଣି ତା'ର କଙ୍କଡ଼ା ପରି ଦୁଇଟି ଗୋଡ଼ ମଧ୍ୟ କୁକୁର ବିଲେଇଠାରୁ ଆରମ୍ଭ କରି ଚୁଚୁନ୍ଦ୍ରା ଏଣ୍ଡୁଅ ପର୍ଯ୍ୟନ୍ତ ଗଳି ଯାଇ ପାରନ୍ତି । ସମ୍ଭାବନାର ଦୃଶ୍ୟଟି ଅନିରୁଦ୍ଧକୁ ଅସହ୍ୟ ମନେ ହୁଏ । ଅନିରୁଦ୍ଧ ସେଇଥିପାଇଁ ହଟ୍ଟଗୋଳ କରେ ଲୋକଟାକୁ ହଡ଼ବଡ଼େଇ ଦେବା ପାଇଁ ।

ଅନିରୁଦ୍ଧ ହଟ୍ଟଗୋଳ କଲା ।

କ୍ଲବର ସଭାପତି ଗମ୍ଭୀର ହେଲେ ଓ ଅନିରୁଦ୍ଧର ବାକ୍ୟଗୁଡ଼ିକୁ ଶୁଣିଲା ପରି ଅଭିନୟ କଲେ । ଅନିରୁଦ୍ଧର ଉତ୍ତେଜନାରୁ ସୃଷ୍ଟ ବାକ୍ୟଗୁଡ଼ିକୁ ଅର୍ଥ କଲେ ଏହା ବୁଝାଯିବ ଯେ, ଅନିରୁଦ୍ଧ କହୁଥିଲା - ତମେ ଜଣେ ଅଯୋଗ୍ୟ ସଭାପତି । ତମର ଏମିତିକୁ ସାଧାରଣ ସଭ୍ୟଟିଏ ହେବା ପାଇଁ ଯୋଗ୍ୟତା ନାହିଁ । ତମେ କ୍ଲବର ଅର୍ଥକୁ ତମର ବ୍ୟକ୍ତିଗତ ଫାଇଦାରେ ବିନିଯୋଗ କରୁଛ । କ୍ଲବ୍ ସଭ୍ୟମାନଙ୍କ ପାଇଁ କିମ୍ବା କ୍ଲବର ସାମୂହିକ ଉନ୍ନତି ପାଇଁ ସେ ଅର୍ଥର ଯଥାର୍ଥ ବିନିଯୋଗ ହେଉ ନାହିଁ । ମୋଟା ମୋଟି ତମେ ତମର କେତେକ ପାର୍ଶଦମାନଙ୍କ ସହିତ କ୍ଲବର ସମୁଦାୟ ଅର୍ଥକୁ ଆତ୍ମସାତ କରୁଛ ଇତ୍ୟାଦି...

ଅନିରୁଦ୍ଧର ଦମ୍ ମାରି ବସି ପଡ଼ିଲା ପରେ ପୁଣି ଥରେ ସେ ସଭାପତି ଆଡ଼କୁ ଚାହିଁଲା ଓ ଦେଖିଲା ସେ ହସୁଛି ଅଥଚ ରସିକଙ୍କ ପରି, ଅନିରୁଦ୍ଧର ମୁଣ୍ଡକୁ ପିତ୍ତ ଚଢ଼ିଗଲା । ଶଳାଃ ବେହିଆଟା ନା କଣମ ! ଏତେ ଗୁଡ଼ାଏ କଥା ପରେ ହସୁଛି କେମିତି ଲୋକଟା !

ଅନିରୁଦ୍ଧର ଏବଂବିଧ ବିରକ୍ତିକୁ ପାଖରେ ବସିଥିବା ବନ୍ଧୁଟିଏ ଧରିନେଲା ଓ ଅନିରୁଦ୍ଧର ଜଙ୍ଘ ଉପରେ ଚାପା ଦେଇ ଫୁସ୍ ଫୁସ୍ କରି କହିଲା- 'ୟା ହସଟା ସାଧାରଣ ନୁହେଁ ବେ, ମହାଭାରତରେ କୃଷ୍ଣଙ୍କର ଶେଷ ହସ... ଶଳା କିଛି ଗୋଟାଏ ପେଞ୍ଚ ଖଞ୍ଜି ଦେଇଥିବ... । ନ ହେଲେ ସେ ଆତ୍ମସମର୍ପଣ କ୍ରୋଧ ଭାବ ପ୍ରକାଶ କରି ଦିଅନ୍ତା । ଅନିରୁଦ୍ଧ ହସି ଦେଲା, ଯା ଯାଃ, ସେଟା ମଣିଷଟାଏ ପରା । ଈଶ୍ୱର ହେଇଥିଲେ ଭିନ୍ନେ

କଥା । ଶଳା ଦୁଇଟା ହାତରୁ ଗୋଟାଏ ଖସାଇ ଦେଲେ ମାଇକିନାକୁ କୁଣ୍ଢାଇ ଚୁମାଟେ ଦେଇ ପାରିବ ନାହିଁ, ସେଇଟା ପୁଣି କଣ ଗୋଟେ ପେଞ୍ଚ ଖଞ୍ଜିବ । ଶେଷରେ ସେ ଲୋକଟି କେମିତି ଗୋଟେ କମ୍ପ୍ରମାଇଜିଂ ଅବସ୍ଥାକୁ ଆସିଲା ଓ ଅଭିନୟରେ ପ୍ରକାଶ କଲା; ମୁଁ ଆପଣମାନଙ୍କର ମତକୁ ସମ୍ମତ ଦେଉଛି । ଆସନ୍ତା ବର୍ଷ ମାନଙ୍କରେ ଆପଣଙ୍କର ପ୍ରସ୍ତାବ ସବୁ ଠିକ୍ ଠିକ୍ କାର୍ଯ୍ୟକାରୀ ହେବ । ଅନିରୁଦ୍ଧ ଆଶ୍ଚର୍ଯ୍ୟ ହେଲା । ସେ ଆଶ୍ଚର୍ଯ୍ୟ ହେଲା ଏଇଥି ପାଇଁ ତା'ର ରହସ୍ୟମୟ ହସ ଅପେକ୍ଷା ଏଇ ଗ୍ରହଣ କରି ନେବାର ଭାବଟା ହିଁ ଅଧିକ ମାରାତ୍ମକ । କାରଣ ଯା ପୂର୍ବରୁ ଅନେକ ଥର ତାକୁ ସଭାପତି ପଦରୁ ତଡ଼ିବା ପାଇଁ ଯାବତୀୟ ଉଦ୍ୟମକୁ ସେ ଏହି ତା'ର କମ୍ପ୍ରମାଇଜ୍‌ରେ ପାଣି ଫଟାଇ ଦିଏ । ହୁଏତ ଏ ବି ଗୋଟାଏ ନୂଆ ଚାଲ ହୋଇପାରେ । ତଥାପି ଅନିରୁଦ୍ଧ ଆଉ କ'ଣ ଅଧିକ କରାଯାଇପାରେ ବୋଲି ଉଠିଲା ଓ ଅନ୍ୟମାନଙ୍କ ପରି ସେହି ମୁହୂର୍ତ୍ତରେ ତା ପ୍ରତି ସମ୍ବେଦନଶୀଳ ହେଲା, ବିଚରା ! ମଣିଷଟାଏ ତ !

ଅନିରୁଦ୍ଧ ସଭା ଗୃହରୁ ବାହାରି ଆସିଲା ଓ ତା ସ୍ତ୍ରୀ ଠାରୁ ପିଲା ଛୁଆଁଙ୍କ କଥା ଭାବିଲା । ସେତେବେଳେ ସଭାପତି ପଛରେ କେତେକ ସଭ୍ୟ ଅନୁରକ୍ତ ପ୍ରଭୁଭକ୍ତ କୁକୁରମାନଙ୍କ ପରି ଖଣ୍ଡି ଦଉଡ଼ା ଦେଉଥାନ୍ତି । ଅନିରୁଦ୍ଧ ଜାଣେ ଏବଂ ଅନ୍ୟମାନେ ମଧ୍ୟ, ଯେ ସଭାପତିର ସେ କୁହୁକ ମୁଣାରେ ଯଥେଷ୍ଟ ପରିମାଣରେ ରୋଟିର ଟୁକୁରାମାନ ରହିଛି ।

ଅନିରୁଦ୍ଧ ମନକୁ ମନ ହସିଲା । ଗୋଟାଏ ଲମ୍ବି ଯାଇଥିବା ଜୀବନ ପାଇଁ କଣ କେତେ ଟୁକୁରା ରୋଟି ଯଥେଷ୍ଟ । ରୋଟି ଟୁକୁରା ଅପେକ୍ଷା ଅନିରୁଦ୍ଧ ପାଇଁ ଆପାତତଃ ଯାହା ଅଧିକ ଆକର୍ଷଣୀୟ ତାହା ତାର ପରିବାର, ଯେଉଁମାନଙ୍କୁ ସେ ଦୀର୍ଘ ସପ୍ତାହଟେ ହେଲା ଦେଖି ନାହିଁ । ତାର ସ୍ତ୍ରୀ ସୁରମା କଥା ବେଶୀ ମନେ ପଡ଼ିଲା ଯେ ହେତୁ ସୁରମାକୁ ଛାଡ଼ିଦେଲେ ପିଲାମାନଙ୍କର ଅବସ୍ଥିତି କଳ୍ପନା କରାଯାଇ ନପାରେ ।

ସେତେବେଳେ ଦିନ ବାରଟା ଏବଂ ରାତି ବାରଟା ପର୍ଯ୍ୟନ୍ତ ସମୟର ବ୍ୟବଧାନ ଦୀର୍ଘ ବାରଘଣ୍ଟା । ସେ ସ୍ଥିର କଲା ପିଲାମାନଙ୍କ ଉପରେ କୌଣସି ନା କୌଣସି ଆଳ ଦେଖାଇ ରାଗିବ ଓ ଖରାବେଳେ ଭଲ କରି ଦୁଇ ତିନି ଘଣ୍ଟା ନ ଶୋଇଲେ ରାତିରେ ପଢ଼ି ହେବନି ବୋଲି କହିବ । ପିଲାମାନେ ଛାନିଆଁରେ ଶୋଇଯିବେ ଏବଂ ଅନିରୁଦ୍ଧ ସୁରମାକୁ କହିବ ତା ଇଚ୍ଛାର ଖେଳଣା ହେବାକୁ ।

ସୁରମା ମିଛ ଅନିଚ୍ଛାରେ ରାଜି ହେଲା... ଦିନରେ କୁଆଡ଼େ ପାପ, ପିଲାମାନେ

ବାଲୁଙ୍ଗା ହୁଅନ୍ତି । ସୁରମା ଲାଜ କଲା ଓ କହିଲା- ଫାଜିଲ, ... କେଉଁ ଦୁଷ୍ଟ ପିଲାର ହାତରୁ ଖସିଗଲା ଢ଼େଙ୍ଗୁଆଟିଏ । ଶାନ୍ତ ପୋଖରୀର ଠିକ ମଝିରେ ଓ ତରଙ୍ଗ ପ୍ରସରିଗଲା କୂଳ ଆଡ଼କୁ । ଅନିରୁଦ୍ଧକୁ ଶବ୍ଦଟି କାବୁ କରିଦେଲା, ତରଙ୍ଗ କୂଳ ଛୁଇଁଲା ଓ ଅନିରୁଦ୍ଧ ଆଖି ସାମ୍ନାରେ ଠିଆ ହେଲା କୋଡ଼ିଏ ବର୍ଷ ତଳର ସୁରମା, ପୋଟଳଟିଏ ପରି । ଅନିରୁଦ୍ଧ ଝର୍କାଦେଇ ବାହାରକୁ ଚାହିଁଲା ।

ଜ୍ୟେଷ୍ଠର ଟାଣୁଆ ଖରା ପ୍ରଶସ୍ତ ପାଣ୍ଡୁର ଆକାଶର କ୍ୟାନଭାସ ଉପରେ । ଦୁଇଟି ପକ୍ଷୀ ଉଡ଼ିଗଲେ । ଆରପଟ ଝରକାରେ ଆକାଶ ଦିଶେନି କିମ୍ବା ଖରା, କେବଳ କୃଷ୍ଣଚୂଡ଼ାର ଲାଲ୍ ଜଙ୍ଗଲଟିଏ, ଫାଜିଲ କହି ସାରିଲା ପରେ ସୁରମା 'ପ୍ରବଳ ଗରମ' କହି ଦେହରୁ ବ୍ଲାଉଜ୍ ଖୋଲୁଛି । ଅନିରୁଦ୍ଧ ଦେଖୁଛି ଝାଳର ଧାର ସବୁ ପାହାଡ଼ ଦେହର ଜଳଧାରା ପରି । ପାଖ ଘରର ଦୁଷ୍ଟ ପିଲାଟା ଅଇନା ସୂର୍ଯ୍ୟ ଆଡ଼କୁ କରିଦେଲା ଏବଂ ଅନିରୁଦ୍ଧ କୋଠରୀରେ ଫ୍ଲାସ ଲାଇଟ୍‌ର ତରବାରୀଟିଏ ଘୁରିଗଲା । ଅନିରୁଦ୍ଧର ମନେ ପଡ଼ିଲା କଲେଜ ଜୀବନର ଗୋଟିଏ ଲାଜ କଥା- ସେ ସିନେମା ଦେଖି ଫେରିଥାଏ, ରାତିରେ ସ୍ୱପ୍ନ ଦେଖିଲା ସେଇ ସିନେମାର ଗୋଟିଏ ବ୍ଲେଡ୍‌ର ଆଡ୍‌ଭାର୍‌ଟାଇଜ୍‌ମେଣ୍ଟ, ଛକ୍ ଛାକ୍ କରି ବ୍ଲେଡ୍ ଗୁଡ଼ିକ ଘୁରୁଥାନ୍ତି ପରଦା ଉପରେ ଓ ଶେଷରେ ଗୋଟିଏ ପ୍ୟାକେଟ୍‌ରେ ମିଶିଗଲେ । ହଠାତ୍ କ'ଣ ହେଲା ତା'ର ନିଦ ଭାଙ୍ଗିଗଲା ଓ ତାକୁ କେମିତି ଅଡୁଆ ଲାଗିଲା । ସେ ଲୁଗା ବଦଳାଇ ଶୋଇ ପଡ଼ିଲା । ଅନିରୁଦ୍ଧ ମନେ ପକାଇଲା ଆର ଘରେ ପୁଅ ଶୋଇଛି । ଦୁଇ ମାସ ପରେ ବିଏ ପଢ଼ିବ ଏବଂ ଏବେ ମଧ୍ୟ ସେ ସିନେମା ଦେଖେ... । କ'ଣ ଭାସିଗଲା ସେଠୁ ଯେ, ତା ଡ଼ାକ୍ତର ବନ୍ଧୁ କହୁଥିଲା ଷାଠିଏ ବର୍ଷ ପର୍ଯ୍ୟନ୍ତ ପୁରୁଷଟେ ବାହା ହେବା ପାଇଁ ଉପଯୁକ୍ତ-ମାନେ ବାପ ପୁଅ ଏକା ସାଙ୍ଗରେ ସ୍ୱପ୍ନ ଦେଖି ପାରନ୍ତି । ବଡ଼ କଥା କ'ଣ ମ- ଅନିରୁଦ୍ଧର ପିଲାମାନେ ଜେଜେ ଓ ଆଈମାର କୋଳକୁ ଯିବାକୁ ଚାହିଁଲେ ପାରନ୍ତିନି ଯେହେତୁ ଷାଠିଏ ବର୍ଷର ଜେଜେଙ୍କ କୋଳରେ ଦୁଇ ବର୍ଷର କୌତୁକିଆ ପୁଅ ଓ ଆଈମା ସନ୍ଧ୍ୟା ହେଲେ ମୁଣ୍ଡ ପାତଳେଇ କୁଣ୍ଡେଇ ପାଉଡ଼ର ମାରେ ମୁହଁରେ । ତେଣୁ ହେ ସୁରମା ! ଆସ, ଦେହକୁ ବିଦେହ କରିଦେବା... । କବାଟରେ ଶବ୍ଦ ହେଲା ।

ଅନିରୁଦ୍ଧ ଇଚ୍ଛା ବିରୁଦ୍ଧରେ ବାହାର କବାଟ ଖୋଲିବାକୁ ଉଠିଲା । ତା ସହିତ ସୁରମା ବି । ଅନିରୁଦ୍ଧ ଦେଖିଲା ଖାକି ପୋଷାକ ପିନ୍ଧି ମଜଭୂତ ଯୁବକଟିଏ ହାତରେ ଖଣ୍ଡେ ମାଟିଆ କାଗଜ ଧରି ଠିଆ ହୋଇଛି । ସେତେବେଳେ ତାକୁ ଲାଗିଲା ସେ

ଜଣେ ଯୁବକ ନୁହେଁ ଗୋଟିଏ ଆଦେଶ, ଚ୍ୟାଲେଂଜ । ଅନିରୁଦ୍ଧକୁ ଚ୍ୟାଲେଂଜ୍ ଭଲ ଲାଗେ, ଭଲ ଲାଗେ ମାନେ ତୁମେ ହାରିଯାଇ ପାର, ଜିତି ପାର ବି; କିନ୍ତୁ ଖେଳ ଚାଲୁ ରହିବାଟା ହିଁ ମଜା । ଚେସ୍ ବୋର୍ଡ଼ର ରଜାକୁ ବଞ୍ଚାଇବାକୁ ପଡ଼ିବ, ଅନିରୁଦ୍ଧ ମାଟିଆ କାଗଜଟି ହାତକୁ ନେଲା । କବାଟ ବନ୍ଦକଲା । କାଗଜଟି ପଢ଼ିଲା । ସେଥିରେ ଆଦେଶ ଥିଲା ସପ୍ତାହକ ମଧ୍ୟରେ ସେ ସହର ଛାଡ଼ି ସାଇବେରିଆକୁ ଚାଲି ଯିବାକୁ ପଡ଼ିବ ଅନିରୁଦ୍ଧକୁ ।

ହଠାତ୍ ଗୋଟିଏ ଉନ୍ମାଦନା ଅନିରୁଦ୍ଧ ମନରେ: ସବୁ ଲୋକ ମରିବା ପରେ ସ୍ୱର୍ଗ ନାମକ ଏକ କଳ୍ପିତ ରାଜ୍ୟକୁ ଯାଇ ପାରନ୍ତି; କିନ୍ତୁ ସାଇବେରିଆକୁ ନୁହେଁ । ଏମିତିକି ତା କ୍ଲବ୍ ସଭାପତି ବି ।

ଅନିରୁଦ୍ଧ କଥାଟିର କୌଣସି ଗୁରୁତ୍ୱ ଉପଲବ୍ଧି କଲା ନାହିଁ କିମ୍ବା ସାଇବେରିଆ ଯିବାର ପରିଣତି ସମ୍ପର୍କରେ ଚିନ୍ତା କଲା ନାହିଁ । ଅନ୍ତତଃ ଗୋଟାଏ ଗତାନୁଗତିକ ଫିମ୍ପି ମରା ଜୀବନରୁ ମୁକ୍ତି ପାଇଁ ତାକୁ ଖୁସି ଲାଗୁଥିଲା । କେବଳ ସେ ଏତିକି ଜାଣିଥିଲା ସୋଭିଏତ୍ ରୁଷର ବହୁ ସ୍ଥିତ ପ୍ରତିଜ୍ଞ ଲୋକ ବ୍ୟକ୍ତିଗତ ସ୍ୱାଧୀନତା ରୂପକ ନିଶିଦ୍ଧ ଫଳକୁ ଖାଇବା ପାଇଁ ଆଗ୍ରହ ପ୍ରକାଶ କଲେ ସେମାନଙ୍କୁ କର୍ତ୍ତୃପକ୍ଷ ସାଇବେରିଆକୁ ପଠାଇ ଥାଆନ୍ତି ।

ସମସ୍ତ ଉନ୍ମାଦନା ସତ୍ତ୍ୱେ ସେଇ ଖାକି କାଗଜ ନିର୍ଦ୍ଦେଶନାମାକୁ ହାତରେ ଧରି ସେ ଭାବିଲା କେଉଁ ଅପରାଧରୁ ତାକୁ ସାଇବେରିଆକୁ ଯିବାକୁ ନିର୍ଦ୍ଦେଶ ଆସିଲା ! କିଏ ଜାଣେ ତାର ବୋହେମିୟାନ୍ ଜୀବନଧାରା ଓ ସତ କହିବାର ଝୁଙ୍କ୍‌କୁ ହୁଏତ କର୍ତ୍ତୃପକ୍ଷ ଏକ ପ୍ରଚଳିତ ପଦ୍ଧତିର ବିରୁଦ୍ଧାଚରଣ ଭାବି ପାରିଥାଆନ୍ତି ଓ ତାର ଅଜଣାତରେ ଏମିତି ଏକ ନିର୍ଦ୍ଦେଶ କରି ପାରିଥାଆନ୍ତି ।

ଅନିରୁଦ୍ଧ ସବୁ କଥାକୁ ଗୋଟିଏ ଲଘୁ ମେଜାଜରେ ଗ୍ରହଣ କରେ । ତାର ପରିଚିତ ସହରରୁ ଛାଡ଼ିବାର ଆପାତତଃ ଦୁଃଖ ଭିତରେ ବି ସେ ଠିକ୍ କଲା ସେ ଖାକି ରଙ୍ଗର କାଗଜ ଖଣ୍ଡ ଧରି ଗୋଟିଏ ଡ଼ାକବାଜି ଯନ୍ତ୍ର ପରି ସବୁ ବନ୍ଧୁଙ୍କ ପାଖରେ ସମ୍ବାଦଟି ପରିବେଷଣ କରିବ । ସେ ବି ଗୋଟାଏ ମଜା, ଅଥଚ ସମ୍ବାଦଟି ଏମିତି ବେଗରେ ପ୍ରଚାରିତ ହେଲା ଯେ ବୈଶାଖର ଉଜ୍ଜ୍ୱଳ ଦ୍ୱିପ୍ରହରରେ ଅନେକ ବନ୍ଧୁ ଆସିଲେ ତାକୁ ସମବେଦନା ଜଣେଇବାକୁ । ସେମାନଙ୍କ ମୁହଁରେ ସହାନୁଭୂତି ମେଘର ଭାରାକ୍ରାନ୍ତ ଆକାଶ ପରି ଥମ୍ ଥମ୍ ଓ ସେମାନଙ୍କ ମଝିରେ ଅନିରୁଦ୍ଧ କାକୁସ୍ଥ ହୋଇ ପଡ଼ିଲା ସେହି

ମୁହୂର୍ତ୍ତରେ । କାରଣ ଅନିରୁଦ୍ଧ ଜାଣେ ଯେ ବନ୍ଧୁ ମାନଙ୍କର ସହାନୁଭୂତି ଏକ ଲୌକିକତା ଏବଂ ତାହା ସେହି ମୁହୁର୍ତ୍ତ ପାଇଁ କେବଳ ଉଦ୍ଦିଷ୍ଟ । ଅନ୍ୟଥା ସେମାନେ ବେଶ୍ ସଚେତନ ଥିବେ ଯେ ଏପରି ଏକ ଲୌକିକ ସହାନୁଭୂତି ପରେ ନିଜମାନଙ୍କ ପାଇଁ ଅନେକ କିଛି ସେଦିନର ବାକି ଥିବ ଓ ଏବେ ପ୍ରକାଶ କରି ସାରିବା ପରେ 'ଆଉ କ'ଣ କରାଯିବ' କହି ଗୋଟିଏ ଗୋଟିଏ ଖସି ଯିବେ କ୍ରମାନ୍ୱୟରେ । ବିଶେଷ କରି ଅନିରୁଦ୍ଧ ସେତେବେଳେ ଭାବୁଥିଲା, ସେମାନେ ଚାଲିଗଲେ ବରଂ ଅନିରୁଦ୍ଧ ସ୍ୱାଭାବିକ ହେବ । କାରଣ କୌଣସି ଆନ୍ତରିକତା ହୀନ ସହାନୁଭୂତିକୁ ସେ ଘୃଣା କରେ ଏବଂ ନିଜ ମନ ମଧ୍ୟରେ ସେ ସ୍ଥିର କରିଥାଏ, ଯେବେ ମୃତ୍ୟୁନାମକ ଏକ ଅନ୍ତିମ ଯାତ୍ରାକୁ ସେ ସମ୍ମୁଖୀନ ହୁଏ ସେତେବେଳେ ତାର ପିଲା କୁଟୁମ୍ବମାନଙ୍କ ପ୍ରତି ତାର ପ୍ରଥମ ନିର୍ଦ୍ଦେଶ ହେବ କେହି ଯେମିତି ସେ ସମୟରେ ତା ବିଛଣା ନିକଟରେ ବସି ଆହା-ହା ଚୁ-ଚୁ.. ରେ ତା ପ୍ରତି ସହାନୁଭୂତି ପ୍ରକାଶ ନ କରନ୍ତୁ ।

ଅନିରୁଦ୍ଧ ମିଛ ଲୌକିକତାକୁ ଘୃଣା କରେ । ତଥାପି ସେ ଗୋଟିଏ ଦ୍ୱନ୍ଦ୍ୱରେ ଥିଲା । ସେ କାହିଁକି ସାଇବେରିଆ ଯିବ । ବାକୀ କାଗଜରେ କୌଣସି କାରଣର ସେ ପାଇଁ ନିର୍ଦ୍ଦେଶ ନ ଥିଲା ।

ସେତେବେଳେ ବନ୍ଧୁମାନେ ଚିନ୍ତାଗ୍ରସ୍ତ ଥିଲେ ଓ ଏମିତି କାଣ୍ଡ କିଏ କରିଥାଇ ପାରେ ବୋଲି ପରସ୍ପର ମଧ୍ୟରେ ଉତ୍ତେଜିତ ଆଲୋଚନାରେ ବ୍ୟସ୍ତ ଥିଲେ । ସେମାନେ ଏମିତି ଭାବ ପ୍ରକାଶ କରୁଥିଲେ, ଅନ୍ୟମନସ୍କ ଅନିରୁଦ୍ଧ ଠିକ୍ ଆଘ୍ରାଣ କରି ପାରୁଥିଲା: ଦେଖରେ ଅନିରୁଦ୍ଧ, ଏ ଖରାବେଳର ଝାଳ ଓ ଝାଞ୍ଜିକୁ ଆମେ କେୟାର କରୁନୁ ଖାସ୍ ତୋରି ପାଇଁ । ତୁ ସାଇବେରିଆ ଯାଇପାରୁ ଓ ତୋତେ ବସ୍‌ରେ ଚଢ଼ାଇ ଦେବା ପରେ ସନ୍ତୁଷ୍ଟ ଜୀବନ ଚଳାଇ ନେଇପାରୁ । ତଥାପି ତୋ ପାଇଁ ଆମେ ବିବ୍ରତ ଘରେ ବଢ଼ିଲା ଝିଅକୁ ବାହା ଦେଇ ନ ପାରିଲା ବାପା ପରି ।

ହଠାତ୍ ଆଲୋଚନାର ମୋଡ଼ ବଦଳାଇ ଦେଲା ଜଣେ ବନ୍ଧୁ ନିହାତି ଗୋଟେ ସତ୍ୟ ଆବିଷ୍କାର କଲା ପରି- ତମେ ଯାହା କୁହ ଏ ସେହି କ୍ଲବ ସଭାପତିର କାମ, ହ୍ୟାପ ଭିତରେ କିଛି ଲେଖି ଦେଇଛି ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଏବଂ ତା କଥା ନ ସରୁଣୁ ସମସ୍ତେ ଏକା ସ୍ୱରରେ କହି ଉଠିଲେ, 'ଏ ଶଳା ତା'ର କାମ ।'

ଅନିରୁଦ୍ଧ ଆଖି ବୁଜିଦେଲା ଓ ଭାବିଲା କଥାଟିର ସତ୍ୟତା କେଉଁଠି ରହିଗଲା କି ! କାରଣ ଅନିରୁଦ୍ଧ ମନେ ପକାଇଲା ସେ କ୍ଲବର ସଭାପତିର ସ୍ତ୍ରୀକୁ ସହି ପାରେନା

ଏବଂ ତାର ପିଲାଛୁଆ ଖୁବ୍ ଅହଙ୍କାର ପ୍ରକାଶ କରନ୍ତି ବାପାର ପଦବୀ ପାଇଁ । ସେ ନିରୀହ ପିଲାମାନେ କାହିଁକି ବୁଝିବେ କୌଣସି ଯୋଗ୍ୟତା ନ ଥାଇ କେବଳ 'ଟ୍ୟାକ୍ଟ' ପ୍ରୟୋଗ କରି ସେ ସଭାପତି ହୋଇଯାଇଛି ବୋଲି । ତା ଛଡ଼ା ସେ କ୍ଲବ ସଭାପତି ହୋଇ ସେ ନିଜ ସ୍ତ୍ରୀର ଶାଢ଼ୀଠାରୁ ଆରମ୍ଭ କରି ତାଙ୍କ ଅଣ୍ଡର ଗାର୍‌ମେଣ୍ଟକୁ ମଧ୍ୟ ଛୁଟି ଦିନରେ ସଫା କରିପକାଏ, ପୁଣି ସେ ଥାକୁଲି ସ୍ତ୍ରୀ ଲୋକଟା ବିହେଭ୍ କରେ ଯେମିତି ଭାରତର ସେ ପ୍ରଥମ ମହିଳା । ଅନିରୁଦ୍ଧର ଏଇଟା ନିଶ୍ଚୟ ଗୋଟିଏ ବଦସ୍ୱଭାବ ଯେ ତାର ପ୍ରତିକ୍ରିୟା ଗୁଡ଼ାକ ସେ ସର୍ବସାଧାରଣରେ ପ୍ରକାଶ କରିଦିଏ । ତେବେ ଏଇଟା କ'ଣ ଏମିତି ଗୋଟିଏ କାରଣ ହୋଇପାରେ !

ହେଇପାରେ ହୁଏତ !

ଏବଂ ଅନିରୁଦ୍ଧର ଏବଂ ବିଧପ୍ରଗଲ୍‌ଭତା ସମ୍ପର୍କରେ ବନ୍ଧୁମାନେ ଟିପ୍‌ପଣୀ ଦେଲେ ଓ ତାହା ହିଁ ଏକମାତ୍ର କାରଣ ବୋଲି ସ୍ଥିର କଲେ । ପରେ ପରେ ସେମାନେ ଶେଷଥର ପାଇଁ ସହାନୁଭୂତି ପ୍ରକାଶ କଲେ ଓ "ଉଚ୍ଚ କର୍ତ୍ତୃପକ୍ଷଙ୍କ ଆଦେଶ ଅମାନ୍ୟ କରାଯାଇ ପାରେନା, ଦେଖନ୍ତୁ, ଚିନ୍ତା କରନ୍ତୁ" କହି କ୍ରମେ ଜଣ ଜଣ କରି ଚାଲିଗଲେ ।

ସେମାନେ ଚାଲିଗଲା ପରେ ଅନିରୁଦ୍ଧ କିଛିଟା ହାଲ୍‌କା ଅନୁଭବ କଲା ଓ ସୁରମାକୁ ପାଖକୁ ଡ଼ାକିଲା । ସୁରମା ବିବ୍ରତ ଥିଲା, ଅନିରୁଦ୍ଧ ଚିଡ଼ିଗଲା । କାରଣ ସବୁ ସମସ୍ୟାରେ ସୁରମା ହିଁ କେବଳ ଦୃଢ଼ ଥାଏ, ଅଥଚ ସେ କେମିତି ଭାଙ୍ଗି ପଡ଼ିଛି । ଅନିରୁଦ୍ଧ ଚିନ୍ତାଗ୍ରସ୍ତ ହେଲା, ତାର ଏ ଦଣ୍ଡ ପାଇଁ ନୁହେଁ, ସୁରମାର ଭାବାନ୍ତର ପାଇଁ । ସୁରମା କହିଲା, "ମୋର କେବଳ ତମରି ପାଇଁ ଚିନ୍ତା । ତମେ କେମିତି ଚଳିବ ଯେ !"

ଅନିରୁଦ୍ଧ ତା'ର ଚାରିବର୍ଷ ବୟସରେ ମରିଯାଇଥିବା ମା' କଥା ସ୍ମରଣ କଲା ଓ ମୁହଁ ବୁଲାଇ ଆଖିର ଟୋପାଏ ଲୁହ ଗଡ଼ାଇ ଦେଲା । ତା ପରେ କହିଲା- "ତମର ମନେ ଅଛି ସୁରମା ! ଗତ ପୂଜାରେ ସେଇ ଯେଉଁ ସେମଟା ହେଡ୍‌ମାଷ୍ଟ୍ର, ଯେ କି ନିଜେ ଯଥେଷ୍ଟ ରୋଗୀ ଥିବା ସତ୍ତ୍ୱେ ବି ଗୋଟିଏ ମ୍ୟାଗ୍ନିଫାଇଙ୍ଗ୍ ଗ୍ଲାସ୍‌ରେ ତାର ହାତ ଦେଖି କହିଥିଲା - ଆପଣଙ୍କ ଫେଟ୍ ଲାଇନ୍‌ର ମଝିରେ ଥିବା ରେଖା ଯଦି ଫେଟ୍ ଲାଇନ୍‌କୁ କ୍ରସ୍ କରେ, ଆପଣ ନିର୍ଦ୍ଧାରିତ ବୟସର ପୂର୍ବରୁ ଅପମୃତ୍ୟୁ ବରଣ କରିବେ ଓ ଟଙ୍କା ପାଇଁ ଜଣେ ପଦସ୍ଥ ବ୍ୟକ୍ତିଙ୍କୁ ହତ୍ୟା କରିବେ ।"

ସୁରମା ନୀରବ ।

ଅନିରୁଦ୍ଧ ଉଠିଗଲା ତା' ଆଲମିରା ନିକଟକୁ ଏବଂ ଗମ୍ଭୀର ଭାବ ନେଇ ତା' ଶଳା କର୍ତ୍ତୃକ ଉପହାର ଦେଇଥିବା ଇଂପୋଟେଡ୍ ସ୍ପ୍ରିଂ ଛୁରୀଟିକୁ କାଢ଼ି ଆଣିଲା । ସୁରମା ଆଗରେ ସେଇଟିର ବଟ୍‌ନ୍ ଟିପି ଉଜ୍ଜ୍ୱଳ ଛୁରୀଟିର ଧାର ପରୀକ୍ଷା କରୁ କରୁ ଅନ୍ୟମନସ୍କ ଅନିରୁଦ୍ଧ କହିଲା- 'ସାଇବେରିଆ ଆଉ ଆଜୀବନ କାରାଦଣ୍ଡର ସୀମାରେଖା କେଉଁଠି ସୁରମା !'

ଅନିରୁଦ୍ଧ ଅନୁଭବ କଲା ସୁରମା ଓ ତା ଭିତର ସମ୍ପର୍କର ସେତୁଟା ଆପାତତଃ ଭାଙ୍ଗି ଯାଇଛି ।

(୧୯୮୪)



# ଯଶୋଦା

'ମ ତେ ମରଣ ନାଇଁ... ଦିନ ହାପୁଲେ ହେଲାଣି... ମୋ ହଗୁରା ଗୁଡ଼ାକ କୋଳି ଖାଇବାକୁ ଅନେଇ ଥେବେ... ମଲା ମ' ବାସୀ ପାଇଟି ସଇଲା ନାଁ...' ପ୍ରଳାପ କଲା, ତାରି ମନକୁ ମନ କହିହେଲା ହଗୁରା ମା' ବୁଢ଼ୀ ଓ ତତ୍‌କ୍ଷଣାତ୍ ପାଖ ଗାଡ଼ିଆରୁ ବୁଡ଼ଟେ ପକେଇ ବୃନ୍ଦାବତୀକୁ ପାଣି ଟେକିଲା । ସେ ସୂର୍ଯ୍ୟ ଦେବତାଙ୍କୁ ଚାହିଁ ଜୁହାର କଲା ଏବଂ ତା ଆଖିରୁ ଦୁଇଧାର ଲୁହ ଗଡ଼ିଆସି ତା ନୋଥରା ମୁହଁରେ ଚରିଗଲା । ସୂର୍ଯ୍ୟର ପ୍ରଖର କିରଣରେ କିମ୍ୱା କୌଣସି ଅନ୍ତର୍ଗତ ବେଦନାବୋଧରୁ ତା ଆଖିରୁ ପାଣି ନିଗିଡ଼ି ଆସିଲା, ତାହା ଏକାନ୍ତ ବ୍ୟକ୍ତିଗତ ଅନୁଭବ ହଗୁରା ମା'ର– ଅନ୍ୟମାନଙ୍କ ପାଇଁ ଯଦିଓ ରହସ୍ୟମୟ !

ଭୋରୁ ଭୋରୁ ହଗୁରା ମା' ଗାଡ଼ିଆ ନିକଟ ବରକୋଳି ଗଛ ନିକଟକୁ ଗଲା, ଗଛ ହଲେଇଲା, ପୁରା ପାଚିଲା କୋଳିଗୁଡ଼ିକୁ ବାଛି ଅଲଗା ରଖିଲା ଓ ଦରପାଚିଲାଗୁଡ଼ିକୁ ଧୋଇଧାଇ ଯତ୍ନରେ ଡ଼ାଲିଆଟିଏରେ ସାଇତି ରଖିଲା । ସଅଳ ସଅଳ ବାସୀ ପାଇଟି ସାରି ସେ ବାହାରି ଯିବ ଗାଁ ମୁଣ୍ଡ ସ୍କୁଲ ନିକଟରେ ଥିବା ଝଙ୍କା ବରଗଛ ମୂଳକୁ, ଯେଉଁଠି ଖେଳଛୁଟି ଘଣ୍ଟାର ଟିଂ ଟିଂ ଶବ୍ଦ ସହିତ ହଗୁରା ମା' ଛାତିର ସ୍ପନ୍ଦନ ବଢ଼ିଯିବ ଓ ନୂଆ କରି ମା' ହୋଇଥିବା ସ୍ତ୍ରୀଲୋକଟି ଥନ ଭୁଣ୍ଡିଟି ନବଜାତ ଶିଶୁ ମୁହଁରେ ଗୁଂଜିଦେଲା ପରି ମୁଠା ମୁଠା ବରକୋଳି ସହିତ ସ୍ନେହର ହାତ ତାର ଲମ୍ୱିଯିବ ସ୍କୁଲ ପିଲାମାନଙ୍କ ନିକଟକୁ ।

ବର୍ଷର ସବୁ ଋତୁରେ କୋଳି ଫଳେନା କିମ୍ବା ହଗୁରା ମା ପ୍ରତିଦିନ ଡ଼ାଲିଆରେ କୋଳି ଭର୍ତ୍ତିକରି ସ୍କୁଲ ଫାଟକ ନିକଟକୁ ଆସେନା । ବର୍ଷର ନିର୍ଦ୍ଦିଷ୍ଟ ଦିନରେ ସେ କୋଳିଧରି ଆସେ; ଆଦରରେ ପିଲାମାନଙ୍କୁ ବାଣ୍ଟେ ଓ ସରିଗଲା ପରେ ପିଲାଙ୍କ ଆଗରେ ଡାଲିଆଟି ଝାଡ଼ିଦେଇ ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼େ । କିଛି ସମୟ ଗୁମ୍ ମାରି ବସେ, ପରେ ପରେ ତଳେ ହାତ ଭରା ଦେଇ ଅଣ୍ଟା ସଳଖ କରି ଧୀରେ ଧୀରେ ତା' ଝାଟିମାଟିର ସ୍ୱର୍ଗକୁ ଫେରେ । କୌଣସି ପିଲାର ଆଖିରେ ଯଦି କୋଳି ଖାଇବାର ଅତୃପ୍ତ ଜନୀତ ଛାଇ ଦେଖେ ତାକୁ ଆଦରରେ କୋଳେଇ ନିଏ । 'ମୋ କାହ୍ନୁ ଆଉରି କୋଳି ଖାଇବ' କହି ଘର ପର୍ଯ୍ୟନ୍ତ ଡ଼ାକିନିଏ ।

ହଗୁରା ମା' ସ୍କୁଲ ଖୋଲିଥିବାର ଅଥବା ଛୁଟି ଦିନମାନଙ୍କ ବିଷୟରେ କିଛି ଜାଣେନା । ତା ପାଇଁ ଗୁରୁତ୍ୱପୂର୍ଣ୍ଣ ବର୍ଷର ଗୋଟିଏ ଦିନ; ସ୍କୁଲ ଖୋଲା ଥାଉ କିମ୍ବା ବନ୍ଦ । ସେ କିନ୍ତୁ କୋଳିନେଇ ଆସିବ । ଅବଶ୍ୟ ଗତ କେତେ ବର୍ଷରେ ସ୍କୁଲ ଛୁଟି ଥିବାର ଅନୁଭୂତି ତା'ର ଆସିନି ।

ହଗୁରା ମା' ଆକ୍ଷି ପଲକରେ ତା' ବାସୀ ପାଇଟି ସାରିଦେଲା, ସୂର୍ଯ୍ୟଙ୍କୁ ଚାହିଁ ବୃନ୍ଦାବତୀଙ୍କୁ ପାଣି ଟେକିଲା ଓ ବେଲାଏ ନାରି ଚା' ପିଇ କୋଳି ଡ଼ାଲିଆଟି କାଖରେ ଥୋଇ ସ୍କୁଲ ଆଡ଼େ ଚାଲିଲା, ସେ ଦିନ ରବିବାର ତାକୁ ଜଣାନଥିଲା । ସେ ବାର/ ତାରିଖ ସହିତ ପରିଚିତ ନୁହେଁ, ଜାଣେ କେବଳ ଗୋଟିଏ ତିଥିକୁ ।

ହଗୁରା ମା' ବରଗଛ ତଳେ ଡ଼ାଲିଆଟି ଥୋଇ ଦେଇ ଅଣ୍ଟା ସଳଖି ଠିଆ ହେଲା । ତା ମନରେ ଆଶଙ୍କା ଆସିଲା- ଆଜି ଇସ୍କୁଲ ହତା ଶୂନ୍ ଶାନ୍ । କାଁ ଭାଁ ଦଳେଇ ପୁଅ, ମିଶ୍ର ପୁଅ, ନାଆକ ପୁଅ, ଦାଶ ପୁଅ ଏମିତି କେତେଜଣ ପାଖ ସହରୀ କଲେଜରେ ପାଠୁଆ ପିଲା ଧଳା ଜାମା ପେଣ୍ଟ ପିନ୍ଧି ଟହଲ ମାରୁଛନ୍ତି । ଇସ୍କୁଲ୍ ଘର ଉପରେ ଡ଼ାକବାଜି ଚୁଙ୍ଗା ଗୀତ ଗାଉଚି... ଆଜି କିଛି ମେଳା/ଯାତ ଅଛି ପୁନେ ! ମଲା ଇସ୍କୁଲ ପଡ଼ିଆଟା ଇମିତି କ'ଣ ହେଇଚି ବା... ଗୋଲ ହେଇ ଚୂନର ଗାର, ନାଲି ପତକା ଛୋଟ ଛୋଟ ବାଉଁଶ ପାତିଆରେ... ଆଲୋ ଏ ମଝିଟାରେ ତିନିଟା ଖୁଣ୍ଟି କାଇଁକି ପୋତା ଯାଇଚି ବା...; ତାକୁ ଏ ସବୁ କେମିତି ଅଡୁଆ ଅଡୁଆ ଲାଗୁଥିଲା । ତେବେ ସେ ମନକୁ ବୁଝାଉଥିଲା- ଯେବେ କିଛି ମେଳା କି ଯାତ ହଉଥେବ ମନକୁ କିଛି ଛୁଆ ଆସିବେନି ! କଉ ବର୍ଷତ ଡାଲିଆରେ କୋଳିଟିଏ ରହିନି, ଆଉ ଆଜି କଣ କେହି ଆସେବେନି ?

ସେ ଚାରିଆଡ଼କୁ ଥରେ ବୁଲି ଚାହିଁଲା; ପାଖରେ ବିରାଟ ପୋଖରୀ କଉ ରାଜା ମହାର୍ଯା ଅମଳରୁ ପୋତି ପଡ଼ିଲାଣି, ମଝିରେ ଅରାଏ ମାଟିଆ ପାଣି । ଦୀପଦଣ୍ଡୀ ଖୁଣ୍ଟି ଉପରେ ବସିଚି ଭଦଭଦଳିଆ ଚଢ଼େଇଟିଏ । ପାଖ ସାଇର ଗାଁ ବୋହୂ କିଏ କେମିତି ଗାଧୁଆ-ପାଧୁଆ କରୁଛନ୍ତି । ତା ଧାରେ ଧାରେ ନାଲିମାଟି ରାସ୍ତା ଆଗରେ ବନ୍ଦର ସଡ଼କରେ ମିଶିଚି । ମାଛ କାରବାର ବଢ଼ିଲାରୁ ଏବକୁ ସରକାର ସେଠି ଗୁମୁଟି ବସାଇ ବାଉଁଶ ଆଡ଼େଣି ଦେଲେଣି । ସେ ସଡ଼କ ବନ୍ଦରରୁ ଯାଇ କୁଆଡ଼େ ଜଗନ୍ନାଥ ସଡ଼କରେ ମିଶିଚି ।

ବୁଢ଼ୀ ଚାହିଁଲା ତା ଗାଁକୁ ଦିଶୁଥିବା ଛୋଟ ସହର ଆଡ଼କୁ । କୁହୁଡ଼ିଆ କୁହୁଡ଼ିଆ ଗଛପତ୍ର, ଛାବଲା ଛାବଲା କୋଠାଘର, ପାଖକୁ ଲାଗି ବଡ଼ ପଡ଼ିଆଟିଏ ଗୋଚର । ସେଇଠି କହନ୍ତି କୁଆଡ଼େ ଗୁଟେ କଲେଜ ଅଛି । ହଗୁରା ମା' କେବେ କେମିତି କାଳୀ ଯାତକୁ ସହରକୁ ଗଲେ ଦେଖିଚି ସେ ପଡ଼ିଆକୁ-ଟିଣ, ଆଜବେଷ୍ଟର ଲମ୍ବା ଲମ୍ବା ଗେରୁ ରଙ୍ଗର ଘର କେତୋଟି - ପିଲାମାନେ ଯା-ଆସ କରନ୍ତି, ଘଣ୍ଟା ବାଜେ; ସେଇଟା କୁଆଡ଼େ କଲେଜ । କଲେଜ କଣ ସେମିତି କିଛି ଅଛି, ବଡ଼ ଇସ୍କୁଲଟେ ହେଇଥେବ ତ-ହଗୁରା ମା' ତା ମନକୁ ମନ ସ୍ଥିର କରିନିଏ ।

ମିଶ୍ର ପୁଅ ଡ଼ାକି ଦେଲା- 'ହଗୁରା ମା' ଆଜି ତୋ ବାରି କି ଲୋ ? ଆଜି ତୋ ଭାଗ୍ୟ, ଦେଖିବୁ ସହରୀ ପିଲା କେମିତି ତୋ କୋଳି ଖାଇଯିବେ, ଏତକ କହି ସେ ସହରକୁ ଲମ୍ବି ଯାଇଥିବା ସଡ଼କକୁ ଆଖି ପାଇବା ପର୍ଯ୍ୟନ୍ତ ଲକ୍ଷ୍ୟ କଲା ଓ ପରେ ତା ହାତଘଣ୍ଟାକୁ ଦେଖିଲା । ମିଶ୍ର ପୁଅ କାହାକୁ ଅପେକ୍ଷା କରୁଚି ହୁଏତ, ନହେଲେ ଏମିତି ତରବର କାଇଁକି ହଉଚି ସିଏ ! ଫେରି ପଡ଼ି ସେ ଇସ୍କୁଲ ଫାଟକ ଦେଇ ଗଲା ଯେ ହେଇ ସେ କଣକୁ ଯଉଠି ସମିନା ଟଙ୍ଗାଯାଇ ଦି'ଧାଡ଼ି ଟିଣ ଚିଆର ପଡ଼ିଚି । ପାଖରେ ଟେବୁଲଟିଏକୁ ଆବୋଡ଼ି ବଇଚି ଦଲକା ହେଇ ଟୋକାଟିଏ । ତା କାନରେ ମିଶ୍ର ପୁଅ କଣ କହିବାରୁ ଗୀତ ବନ୍ଦ ହେଇଗଲା ଆଉ ସେ ଡ଼ାକବାଜି ଚୂଙ୍ଗାରୁ ଗୋଖର ସାପ ଗର୍ଜନ ପରି ଫୁଃ... ଫୁ ଶବ୍ଦ ଦି'ଥର ବାହାରି ଶୁଣାଗଲା- ସହର ଦଳ ଏବେ ପହଞ୍ଚି ଯିବେ, ଖେଳ ଆରମ୍ଭ ହୋଇଯିବ... ଯିଏ ଯେଉଁଠି ଅଛନ୍ତି ପଡ଼ିଆ ଭିତରକୁ ଚାଲି ଆସନ୍ତୁ । ତାପରେ ଫେରେ ଗୀତ ବାଜିଲା । ବୁଢ଼ୀ ନିଘାକରି ଚାହିଁଲା-ମଲା, ମଲା... ଆମ ଇଏ ମହାଳିକ ପୁଅ, ପାଠ ଶାଠ ନହେଲାକୁ ମେସିନ୍ ଡ଼ଙ୍ଗା ପକାଇ ସମୁଦ୍ରରେ ମାଛ ବେଉସା କରୁଚି... ଏବେ ତ ରାତିରେ ନୋଟ୍ ବିଛେଇ ଶୋଉଚି । ଯାଃ... ସିଏ

ଫେରେ ଟୋପର ପିନ୍ଧି ଡ଼ାକବାଜିରେ କଥା କହିଲାଣି... ହା ଯୁଗ !

ହଗୁରା ମା' ଏତେବେଳେକେ ବୁଝିଲା ଇସ୍କୁଲ ପଡ଼ିଆରେ କ'ଣ ଗୁଟେ ନୂଆ ଖେଳ ହେଉଚି । ଏ ଖେଳ ସେ କିଛି ବୁଝି ପାରୁନି । ଖେଳ କହିଲେ ସେ ବୁଝେ ଡୁ..ଡୁ, ବୋହୂଚୋରୀ, ପୁଚି, ରଜପରବରେ ଦୋଳି... ଏମିତି ସବୁ । ଏବକୁ ଯୁଗ ବଦଳିଲା, ନୂଆ ନୂଆ ନବଜ ସବୁ ଦେଖାଗଲା ।

ବୁଢ଼ୀର ଅନ୍ୟମନସ୍କତାର ସୁଯୋଗ ନେଇ ଗାଁର କାଳୀ କୁତୀଟି କେତେବେଳେ ଆସି ବରଫଳ ଶୁଙ୍ଘୁ ଶୁଙ୍ଘୁ ତା କୋଳି ଡ଼ାଲିଆରେ ମୁହଁ ମାରିଲାଣି, ହଗୁରା ମା' ଚିହଂକି ଉଠିଲା- ହେ କାଳୀ ! ତୋରି ପାଇଁ ଏକା ମୁଁ କୋଳି ଗୁଡ଼ାକୁ ଆଣିଚି, ଯାଉଚୁ ନାଁ ଦେଖିବୁ ଇଲେ.. । ତାଙ୍କ ଭିତରେ ବୁଝାମଣାର କି ସମନ୍ୱୟ ଅଛି କେଜାଣେ କାଳୀ ଲାଞ୍ଜକୁ ଝୁଲାଇ ଦେଇ, 'ଭୁଲ୍‌ଟା କରିଦେଲି ଏବେ' ନ୍ୟାୟରେ ପଛକୁ ଫେରି ଚାହିଁ ଚାହିଁ ଦୂରେଇ ଗଲା !

ହଠାତ୍ ହୋ-ହଲ୍ଲା ଆରମ୍ଭ ହୋଇଗଲା । 'ଆସିଗଲେ' କହି ଇସ୍କୁଲ ପଡ଼ିଆରୁ କିଛି ଟୋକା ବାହାରକୁ ଦଉଡ଼ି ଆସିଲେ । ବୁଢ଼ୀ ଦେଖିଲା ଡ଼ାକ୍ତରଖାନା ରୋଗୀ ଧଳା ଗାଡ଼ି ପରି ଗାଡ଼ିଟିଏ ଆସି ଇସ୍କୁଲ ଫାଟକ ପାଖରେ ଠିଆ ହେଲା ଓ ଗୋଟିଏ କବାଟ ଖୋଲି ଗଲା ପରେ ଗୁଳୁଗୁଳୁ କରି ଧଳା ପେଣ୍ଟ-ଜାମା ପିନ୍ଧା ସୁନ୍ଦରୀଆ ଟୋକା ଦଳଟେ ଖପ୍ ଖାପ୍ ଡ଼େଇଁ ପଡ଼ିଲେ, ଠିକ୍ ବୁଢ଼ୀ ସକାଳୁ ତା କୁକୁଡ଼ା ପଲ୍‌ହା ଖୋଲି ଦେଲେ ଧଳା ବିଲାତି କୁକୁଡ଼ା ଗୁଡ଼ିକ ବାହାରି ଆସିଲା ପରି । ଦି'ଦଳ ଭିତରେ କଥାବାର୍ତାତା ହେଲେ । ଗାଡ଼ି ବରଗଛ ଛାଇକୁ ଆସି ପୋଖରୀ ଆଡ଼କୁ ପଛକରି ଇସ୍କୁଲକୁ ଚାହିଁ କିଛି ସମୟ ଗଁ... ଗଁ ଶବ୍ଦ କରି ବନ୍ଦ ହୋଇଗଲା । ସେତେବେଳକୁ ମାହାଳିକ ପୁଅର ଦଫା ରଫା ଶେଷ... ଡ଼ାକବାଜି ଚୂଙ୍ଗାରେ ଦି'ଥର ଫୁଃ... ଫୁଃ ଶବ୍ଦ କରି ଡ଼ାକ ଦେଲାଣି । 'ଆମ ଖେଳୁଆ ଆସିଗଲେ, ଚଞ୍ଚଳ ଭିତରକୁ ଚାଲି ଆସନ୍ତୁ, ଏବେ ଖେଳ ଆରମ୍ଭ ହୋଇଯିବ ।'

ପିଲାଗୁଡ଼ିକ କେଡ଼େ ବାଗରେ ଚାଲିଗଲେ ଭିତରକୁ । ଦଳେଇ ପୁଅ ଗଡ଼ ଜିଣିଲା ପରି ଆଗ ଆଗ ସେମାନଙ୍କୁ ବାଟ କଢ଼େଇ ନେଲା ସମିନା ତଳେ ପଡ଼ିଥିବା ଚିଆର ପାଖକୁ । ମାହାଳିକ ପୁଅ ଆଉ କେତେଜଣ ହାତ ବଢ଼େଇ କଣ ସବୁ ହାତକୁ ମୁଠାମୁଠି ହେଲା । ସେଇଠୁ ଦି'ଜଣ (ବୁଢ଼ୀ ତାଙ୍କୁ ଚିହ୍ନି ପାରୁ ନଥିଲା) ମୁଣ୍ଡରେ ଧଳା ଟୋପର ପିନ୍ଧି ପଡ଼ିଆ ମଝିକି ଆସିଲେ, ଦି' ପଟରେ ତିନୋଟି କରି ପୋତା ହୋଇଥିବା

ଖୁଣ୍ଟିକୁ ଦେଖିଲେ । ଦୁଇ ପଟ ଖୁଣ୍ଟିର ମଝି ପଡ଼ିଆକୁ ଦେଖିଲେ । ତାପରେ କ'ଣ କଥାବାର୍ତ୍ତା ହେଇ ବସିଥିବା ଟୋକାଙ୍କ ଆଡ଼କୁ ହାତମୁଠା କରି ଡ଼ାକିଲେ । ଦଳେଇ ପୁଅ ସହର ଟୋକାଟିଏକୁ ସାଙ୍ଗରେ ଧରି ତାଙ୍କ ପାଖକୁ ଆସିଲା... ଏଣେ ମାହାଳିକ ପୁଅ ଚୁଙ୍ଗାରେ କଣ ସବୁ କହି ଯାଉଚି ବୁଢ଼ୀ ତାର କୁଳକିନାରା ପାଉନି । ତା ଜୀବନରେ ସେ ଏମିତି କିଛି ଦେଖି ନଥିଲା ପୂର୍ବରୁ । ତାକୁ ଭାରି ମଜା ଲାଗୁଥାଏ । କୋଳି ଡ଼ାଳିଆଟି ଢ଼ାଙ୍କିଢୁଙ୍କି ଇସ୍କୁଲ ବାଡ଼ ପାଖକୁ ଲାଗି ଆସିଲା କଣ ହଉଚି ଦେଖିବାକୁ । ଦଳେଇ ପୁଅ ଆଉ ସେ ସହରୀ ଟୋକାଟି ଆଗ ଦୁଇ ଜଣଙ୍କ ସହିତ କଥାବାର୍ତ୍ତା କରି ସେଇଠି ଫେରେ ହାତଧରାଧରି ହେଲେ । ତା ପରେ ଆଗ ଦୁଇଜଣଙ୍କ ଭିତରୁ ଜଣେ ପକେଟରୁ କ'ଣ ବାହାର କରି ଦଳେଇ ପୁଅକୁ ପଚାରି ଜିନିଷଟି ଉପରକୁ ଫୋପାଡ଼ିଲା । ହଠାତ୍ ଦଳେଇ ପୁଅ ଝୁଙ୍କି ପଡ଼ି କଣ ଦେଖିଲା ଓ ବଡ଼ ଖୁସିଟାଏ ହେଲା । ମାହାଳିକ ପୁଅ କଥାରୁ ବୁଢ଼ୀ ବୁଝିଲା ଆଗ ଗାଁ ପିଲା ଖେଳିବେ ।

ସହରୀଟୋକା ଦଳକ ପଡ଼ିଆରୁ ବାହାରି ଆସିଲେ... ଇଲୋ ମା, କି ଖେଳକି ଇଏ ! କଣ ଏ ଟୋକା ଗୁଡ଼ାକ ଏମିତି ସାଜିନ୍ ଖେଳୁଛନ୍ତି- କିଏ ଦଉଡ଼ିଚି, ଅଣ୍ଟା ସଳଖୁଚି, କିଏ ନଇଁ ପଡ଼ିଆରେ ମୁଣ୍ଡ ତଳକୁ କରୁଚି, ପୁଣି ଉଠି ପଡ଼ି ସିଧା ହେଉ ଯାଉଚି... ଆଉ କିଏ ପୁଣି ବାଉଟି ଖେଳିଲା ପରି ହାତ ବୁଲାଉଚି... ଆଜି କେହି କୋଳି ଖାଇବେକି ନାହିଁ ହଗୁରା ମା' ପୁରା ଭୁଲିଯାଇଚି । ଦଳେଇ ପୁଅ ଆଉ ମିଶ୍ର ପୁଅ ହେବେ ପରା, କ'ଣ ପଟା ଦି'ଟା ଧରି ପଡ଼ିଆକୁ ବାହାରି ପଡ଼ିଲେ । ତାଳି ଫାଟି ପଡୁଛି । ବୁଢ଼ୀଠାରୁ ନଜ୍‌ଦିକ୍ ଯଉ ଖୁଣ୍ଟି ତିନୋଟି ପୋତା ହୋଇଥିଲା ସେଇଠିକି ଆଗ ଆସିଲା ଦଳେଇ ପୁଅ, ଅନ୍ୟ ପଟକୁ ମିଶ୍ର ପୁଅ ! ପଡ଼ିଆକୁ ଆଗ ଯେଉଁ ଦି'ଜଣ ଆସିଥିଲେ, ଜଣେ ମିଶ୍ର ପୁଅ ପାଖକୁ ଗଲା, ଆଉ ଜଣେ ଦଳେଇ ପୁଅ ପାଖକୁ ଆସି କଣ ସବୁ ବତେଇଲା । ସେ ଲୋକଟି ପାଖକୁ ଆସିଲାରୁ ବୁଢ଼ୀ ଚିହ୍ନିଲା- ଆରେ ଏତ ଆମ ମଳିକ ଘର ପୁଅ ବଙ୍କୁ । କେଡ଼େ ଚଗଲା ପିଲାଟା ଥିଲା, ଆମ ହଗୁରା ସାଙ୍ଗର; ସେ ଫେରେ ଏଡ଼େ ଫିଟ୍ ଫାଟ୍ ପିଲାଙ୍କୁ ଖେଳ ବତଉଚି ।

ଖେଳ ଆରମ୍ଭ ହେଇଗଲାନା କଣ- ହଗୁରା ମା' ବାଡ଼ ଉପରେ ଝୁଂକି ପଡ଼ିଲା । ଦଳେଇ ପୁଅ ଯା ଭିତରେ ତା ପଟା ଖଣ୍ଡକ ଦି'ଚାରିଥର କେତେ ଭଙ୍ଗୀରେ ଘୁରେଇ ସାରିଲାଣି । ଆର ପଟରୁ ନାଲି ବଲଟିଏ ଧରି ଦଉଡ଼ିଚି ସହରୀ ଟୋକାଟି- ଏ କ'ଣ ! ଦଳେଇ ପୁଅ ପଛକୁ ଫେରି ଦେଖିଲା ବେଳକୁ ତା ବାଡ଼ିରୁ ପଟେ ଉଡ଼ି ଯାଇଚି ଆଉ

ସହରୀ ଟୋକାଟକ ହାତ ଗୋଡ଼କୁ ଚାରିକାତ ମେଲାଇ ହାଉ ହାଉ ପାଟି କଲାକୁ ଦଳେଇ ପୁଅ ମୁହଁ ପୋତି ଫେରି ଯାଉଥିଲା ଓ ଆଉ ଜଣେ ଅଧା ବାଟରୁ ତା ହାତରୁ ପଟାଟି ନେଇ ତା ଥାନକୁ ଆସିଲା ! ସେତିକିବେଳେ ସାହୁ ପୁଅ ଗାଁ ଆଡୁ ଖେଳ ପଡ଼ିଆକୁ ଦଉଡ଼ିଥିଲା । 'କ'ଣ ହେଲାକିରେ ପୁଅ' ବୁଢ଼ୀ ପଚାରି ଦେଲାକୁ 'ଆଉଟ୍' କହି ସାହୁ ପୁଅ ପଡ଼ିଆ ଦେଇ ସମିନା ପାଖକୁ ପାର୍ !

ଆଉଟ୍ କଣଲ ମା ! ହେଇଥିବ । ହଗୁରା ମା' ଦେଖିଲା ଆର ପଟରେ ମିଶ୍ର ପଟା ଖଣ୍ଡକୁ ଭରା ଦେଇ ଗୋଡ଼ ଛନ୍ଦି ଠିଆ ହେଇଚି । କେତେ ସମୟ ଛୁଆଟା ଏମିତି ଦଣ୍ଡ ପାଇଲା ମେତି ଠିଆ ହୋଇଥବ ମ... ତା ପାଇଁ ପେଣ୍ଟୁ ନାଇଁ ପରା ! କୁଆଡୁ ଆସିବ... ଗାଁ ପିଲାଏ ଚାନ୍ଦା ଭେଦା କରି କଣ ନୂଆ ଖେଳଟେ ଆରମ୍ଭ କରିଛନ୍ତି ଏତେ ପେଣ୍ଟୁ କିଣିବାକୁ ପଇସା କଉଠୁ ପାଇବେ ! ଫେରେ ଦଉଡ଼ି ଆସିଲା ସେ ଟୋକାଟା ପେଣ୍ଟୁ ଧରି... ଢ଼ାଏ କି ଦେଲାଲୋ ପିଟି... ପେଣ୍ଟୁ ପଛରେ ଦଉଡ଼ିଚନ୍ତି ଟୋକା ଦି'ଟା... ଆଲୋ ଆଙ୍କୁ ବାଇ ନାଗିଲା ନାଁ କଣ ଏ ମୁଣ୍ଡରୁ ସେ ମୁଣ୍ଡ ଦି'ତିନିଥର ଦଉଡ଼ି ରହିଗଲେ ।

ତାଳି ଆଉ ଲହରୀଆ ହସରେ ବୁଢ଼ୀର ଧ୍ୟାନ ଭାଙ୍ଗିଲା... ଇସ୍କୁଲ ଫାଟକ ପାଖରେ ଦଳେ ଟୋକୀ... ଏଇ ଇସ୍କୁଲରେ ପଢୁଚନ୍ତି । ବୁଢ଼ୀର ଆଖି ବୁଜି ହେଇଗଲା- ଅଲାଜୁକୀ ଗୁଡ଼ାକ... ଯଉବନରେ ସେ ଜାମାଗୁଡ଼ାକ ଫାଟି ଯିବଲୋ ! ତମକୁ ମରଣ ନାହିଁ, ଶାଢ଼ୀ ଖଣ୍ଡେ ଖଣ୍ଡେ ତମକୁ ମିଳିଲା ନାହିଁ... ତମକୁ ଟିକେ ମାଡ଼ି ପଡୁନି... ଏ ସହରୀ ଟୋକାଙ୍କ ଆଗରେ ଛାତି ଫୁଲେଇ ଠିଆ ହେଇଚ କେମିତି କା... ! ଇସ୍, ବୁଢ଼ୀ ତା କୋଳି ଡ଼ାଳିଆ ପାଖକୁ ଫେରି ଆସିଲା । କି ଯୁଗ ହେଲା ଏ... ଆମ କାଳରେ ଝିଅଟେ ଜ୍ଞାନ ପାଇଲେ ସାତ ଦିନ ଅନ୍ଧାର ଘରେ ରହୁଥିଲା, ହଳଦୀକଜଳ ଲଗାଇ ସଉଚ ହଉଥିଲା- ସେଇଠୁ ବାପ-ଭାଇଙ୍କ ଆଗକୁ ଯିବା ମନା; ବଜାର ହାଟ ତ ଦୂରର କଥା । ଏବକୁ ଏ କେତେବେଳେ ଜ୍ଞାନ ପାଉଛନ୍ତି କେ ଜାଣେ... ଖାଲି ଜାମା ଭିତରେ ଫୁଟି ପଡୁଥିବା ଛାତିକୁ ଦେଖି ଅନ୍ଦାଜ କରିବା କଥା ।

ହଗୁରା ମା ବର୍ତ୍ତମାନକୁ ଫେରିଲା । ତା ମନ ଆଶଙ୍କାରେ ବୁଡ଼ିଗଲା- ଆଉ ଘଡ଼ିକୁ ବେଳ ବୁଡ଼ିଯିବ । ଆଜି କଣ ତାର ଦୁଃଖର ଦିନ !

ଜୀବନର ସର୍ବଶେଷ ଦୁଃଖକୁ ସୁଖରେ ପରିଣତ କରିବାଞ୍ଚୁଥିବା ବୁଢ଼ୀଟିର ଆଜି

ହୁଏତ ପରୀକ୍ଷା ଦିନ । ସବୁ ସେଇ ମହାପ୍ରଭୁଙ୍କ ଇଛା ।

ବୁଢ଼ୀ ଗାଲରେ ହାତଦେଇ ଉଦାସ ଆଖିରେ ଖେଳ ପଡ଼ିଆକୁ ଚାହିଁଥାଏ । ବର ଗଛରେ ପ୍ରାଣୀମାନଙ୍କର କ୍ରମବର୍ଦ୍ଧିଷ୍ଣୁ କୋଳାହଳ ।

ଖେଳ ସରିଲାନା କ'ଣ ! ସହରୀ ପିଲା ଜିତିଲେ । ସେମାନେ ଜଣ ଜଣ କରି ବାହାରି ଆସିଲେ ଓ ଗାଡ଼ି ପାଖକୁ ଆସିବା ବାଟରେ ବୁଢ଼ୀ ପାଖରେ ଅଟକି ଗଲେ । ବୁଢ଼ୀ କୋଳି ଡାଲିଆରୁ କନା ବାହାର କରି ଦେଇଚି, ହଳଦୀ ଗର ଗର ଟଟକା କୋଳି । ଜଣେ ସହରୀ ଟୋକା ତାର ଦି ଚାରୋଟି ସାଙ୍ଗ ସହିତ ବୁଢ଼ୀ ପାଖକୁ ଆସିଲା । 'ମାଉସୀ କେମିତି ଦରରେ ବିକୁଛ ଏ କୋଳି' ପଚାରିଲା ସେ ।

ବୁଢ଼ୀ ତା ମୁହଁକୁ ଚଳେଇଲା- ହଗୁରା କୋଳି ଖାଇବ... 'ଖାଉନ' କହି ବୁଢ଼ୀ ଡ଼ାଲିଆଟି ଆଗକୁ ପେଲି ଦେଲା ।

ଟୋକାମାନେ ଗଣ୍ଡେ ଛ'ଟା କରି ହାତରେ ନେଇ କୋଳି ଚାଖୁ ଚାଖୁ କୋଳିର ସ୍ୱାଦୁରେ ମୁଗ୍ଧ ହେଲେ ଓ ଅନେକ ହାତ ସେ ଡାଳିଆକୁ ଶେଷ କରିବାକୁ ଲାଗିଲା ।

ବୁଢ଼ୀ ଆଖିରେ ଲୁହ ଜକେଇ ତା ଫଟା ଗାଲୁଆ ଗାଲରେ ଚରି ଯାଉଥିଲା । ସେତେବେଳେ ସେ ଅନୁଭବ କରୁଥିଲା ତା ଶିରାଳ ସ୍ତନ ଦୁଇଟି ଅମୃତରେ ଭରି ଯାଇଚି ଏବଂ ଅନେକ ଦାନ୍ତ ବିହୀନ ହଗୁରାଙ୍କ ଝୁଣାରେ ପୁଲକିତ ତା'ର ଶରୀର । ବୁଢ଼ୀ ଆଖି ବୁଜିଦେଲା ।

କିଛି ସମୟ ପରେ ହଗୁରା ମା' ଶୁଣିଲା ଟୋକାଟିଏ ପଚାରୁଚି- କେତେ ପଇସା ମାଉସୀ !

ବୁଢ଼ୀ ତା ମୁହଁକୁ ଚାହିଁଲା । ପଇସା ! ହସିଦେଲା ସେ । 'ତୁ କୋଳି ଖାଇ ଯେଉ ଆନନ୍ଦ ପାଇଲୁ ତା ଠାରୁ କଣ ପଇସା ଏତେ ଦାମିକା ? ମା ଛୁଆକୁ ଖାଇବାକୁ ଦେଇ କଣ ପଇସା ନିଏ' କହି ବୁଢ଼ୀ ଡ଼ାଳିଆଟି ଧରି ଠିଆହେଲା ଓ ତା ମୁହଁରୁ ହସ କ୍ରମେ ଉଭେଇଗଲା ଏବଂ ଏକ ରିକ୍ତ ଭାବ ନେଇ ସେ ଗାଁ ଆଡ଼କୁ ମୋହିଁଲା । ଆଇଲା ସନ ଏଇ ଦିନକୁ ଆସିବ, ବଞ୍ଚିଥିଲେ ଆହୁରି ଭଲ କୋଳି ରଖିଥିବି ତମ ପାଇଁ ।

ସେ ପିଲାମାନଙ୍କର ସମସ୍ତ ଉଦ୍ଦୀପନା ଗୋଟାଏ ପାଣିଚିଆ ଅନୁଭବରେ ପରିଣତ ହେଲା । କଥାର ରହସ୍ୟ ଜାଣିବା ପାଇଁ ପରସ୍ପରକୁ ଚାହୁଁଥିଲା ବେଳେ ଖେଳ ଆୟୋଜକ

କରିଥିବା ସେଇ ଗାଁର ଯୁବକଟିଏ କହିଲା, ବୁଢ଼ୀର ହଗୁରା ବୋଲି ପୁଅଟିଏ ଥିଲା ଏବଂ ବାଡ଼ିର ଏ ବରକୋଳିକୁ ସେ ଭାରି ଭଲ ପାଏ। ଆମରି ବୟସର ସେ ଟୋକା। ରୋଗ ଫୋଗ କିଛି ନଥିଲା, ଅଥଚ ସାମାନ୍ୟ ଦିନେ ଦୁଇଦିନ ଜ୍ୱରରେ ସେ ମରିଗଲା। ବୁଢ଼ୀ କାନ୍ଦିଲା ନାହିଁ କି ହସିଲା ନାହିଁ। ସେହି ଦିନରୁ ହଗୁରାର ପ୍ରତି ଜନ୍ମ ଦିନରେ ବୁଢ଼ୀ କୋଳୀ ଡାଲିଆଟେ ଆଣି ସ୍କୁଲ ପିଲାଙ୍କୁ ବାଣ୍ଟିଦେଇ ଯାଏ।

ସେ ପିଲାମାନେ ଠିଆ ହୋଇଥିଲେ ବିୟୋଗାନ୍ତକ ନାଟକର ଦୃଶ୍ୟ ଶେଷର ସମବେତ ସ୍ତବ୍ଧ ଦର୍ଶକ ପରି ଓ ଭାୟୋଲିନ୍‌ର କରୁଣ ସ୍ୱର କ୍ଲାଇମେକ୍ସରେ ପହଞ୍ଚି ଧୀରେ ମିଳେଇଗଲା ପରି କ୍ରମେ ଗାଁ ରାସ୍ତାର ଶେଷ ମୁଣ୍ଡରେ ହଗୁରା ମା' ଗୋଟିଏ ଅନ୍ଧାରିଆ ଛାଇରେ ପରିଣତ ହୋଇଗଲା।

(୧୯୮୫)



# ବନ୍ଧୁ-ବାନ୍ଧବୀ ପ୍ରସଙ୍ଗ ଅଥବା ସସେମିରା ଉପାଖ୍ୟାନ

ସନାତନ ଦାସ: ମୁଁ ସନାତନ ଦାସ, ବୟସ ହାରାହାରି ଚାଳିଶ ପାଖାପାଖି; ମୁଁ ଜଗନ୍ନାଥ ଦେଶର ମଣିଷଟିଏ ଓ ପେଷା ଜ୍ଞାନବିତରଣ । ପ୍ରଥମରୁ କହିରଖେଁ, ଏ ଗଳ୍ପର ନାୟକ ମୁଁ ନିଜେ । ଏପ୍ରକାର ସ୍ୱଷୋକ୍ତି ପ୍ରକାଶ କରିବା ଅବଶ୍ୟ ପାଠକମାନଙ୍କ ପ୍ରତି ଏକ ଚ୍ୟାଲେଂଜ; କାହିଁକି ନା ଗଳ୍ପର ନାୟକ ବିଚାର ସେମାନଙ୍କର ଅଥବା ବିଜ୍ଞ ସମାଲୋଚକ ମାନଙ୍କର । ତେବେ ମୁଁ ଏ ପ୍ରକାର ଏକ ଦାମ୍ଭିକ ମତ ବ୍ୟକ୍ତ କରୁଛି ମୋର ସମସାମୟିକ ବ୍ୟକ୍ତିମାନଙ୍କୁ ନେଇ । ପ୍ରତ୍ୟେକ କବିତାଠାରୁ ନାଟକ ପର୍ଯ୍ୟନ୍ତ ସବୁଥିରେ ନିଜକଥା କହିବାକୁ କୁଣ୍ଠା ପ୍ରକାଶ କରୁନାହାନ୍ତି ଯେତେବେଳେ ଏ ଗଳ୍ପର ନାୟକ ମୁଁ ନିଜେ କହିବାରେ କଣ ପ୍ରଣବ ଅଶୁଦ୍ଧ ହେଇଗଲା ଯେ ! ତା'ଛଡ଼ା ଆଜିକାଲି କିଏ କାହା ଗୁରୁ, କିଏ କାହା ଚେଲା ମାଁ । ନିଜ ହାତରେ ନିଜେ ଚଉଦ ପା । ତେଣୁ ଏ ଗଳ୍ପର ମୁଁ ନାୟକ ବୋଲି ଗ୍ରହଣ କରିବାକୁ ଆପଣମାନେ ବାଧ୍ୟ, ଅନ୍ୟଥା ଆପଣମାନେ ଗ୍ରହଣ ନକଲେ କିମ୍ବା ଗଳ୍ପଟିକୁ ନପଢ଼ିଲେ ମୁଁ ବି ଆପଣଙ୍କୁ ତୋଷାମଦ କରିବି ନାହିଁ ।

ହଁ ମୁଁ ସନାତନ ଦାସ ନିଜ କଥା କହୁଛି । ଏଇଥି ପାଇଁ କହୁଛି ଏଯାବତ୍ ମୋ କଥା କେହି କହିଲେ ନାହିଁ, ଯଦିଓ ଛ'ଦଶକରୁ ମୋର ପରିଚୟ ମୁଁ ଦେଇ ସାରିଲିଣି । ମୁଁ ସତରେ ଆଜ୍ଞା ନିହାତି ସାଧାସିଧା ଲୋକ; ମୋଟାମୋଟି ଖୋଲା, ପେଟରେ କିଛି ରଖିପାରେନା । ଏମିତିକି ମୋର ଅନ୍ତରଙ୍ଗ ବନ୍ଧୁମାନଙ୍କ ଦୋଷ ଦୁର୍ବଳତାକୁ ରୋକ୍‌ଠୋକ୍

କହିଦିଏ । ସେମାନେ ହସନ୍ତି, ମୋ କଥାକୁ ଗ୍ରହଣ କରନ୍ତି ଯଦିଓ ମୁଁ ଭଲଭାବରେ ଜାଣିଛି ସେମାନେ ଭିତରେ କିନ୍ତୁ ମୋ ଉପରେ କ୍ଷୁବ୍ଧ ହୁଅନ୍ତି- ମୁଁ ସାଧାରଣ ଲୋକ ସାଙ୍ଗରେ ମିଶେ ଏବଂ ସେମାନଙ୍କ ସହିତ ସମ୍ପୂର୍ଣ୍ଣ ଜଡ଼ିତ ହୋଇଯାଏ, ଯେମିତି ସେମାନଙ୍କର ଏକାନ୍ତ ଅନ୍ତରଙ୍ଗ । ଜଗନ୍ନାଥଙ୍କ ନାଁରେ କହୁଛି ଆଜ୍ଞା ! ଏଥିରେ ମୋର ତିଳେ ମାତ୍ରେ ହିପୋକ୍ରିସି ନଥାଏ କାହିଁକି ନା ମୋ ବାପାଙ୍କଠାରୁ ଉତ୍ତରାଧିକାର ସୂତ୍ରରେ ଏହି ଗୁଣ ବା ଦୁର୍ଗୁଣଟି ମୁଁ ହାସଲ କରିଛି । ସେ ବାପା ଅଶୀ ମସିହା ନଭେମ୍ବର ଶୀତ ରାତିରେ, ତାଙ୍କ ଅଣାଅଶୀ ବର୍ଷରେ, ମୋ ହାତରେ ତାଙ୍କ ରିଲେ କାଠି ଖଣ୍ଡିକ ଧରାଇ ଦେଇ ଆଖି ବୁଜିଦେଲେ । ବର୍ତ୍ତମାନ ସେ ସ୍ୱର୍ଗରେ ଅବା ନର୍କରେ (ଯଦି ସେମିତି କୌଣସି ସ୍ଥାନ ଥାଏ), କିନ୍ତୁ ସେ ମୋ ଉପରେ ସୁଆର ହୋଇଛନ୍ତି । ଜମିଦାରୀ ପ୍ରଥା ଜୋର ଥିଲାବେଳେ ଜଣେ ସ୍କୁଲ ଶିକ୍ଷକ ହିସାବରେ ସେ ପାଣ-କଣ୍ଡରା ଛୁଆଁ-ଅଛୁଆଁ ଭେଦଭାବ ଠାରୁ ଢ଼େର୍ ଉର୍ଦ୍ଧ୍ୱରେ ଥିଲେ ।

ଆଉ ଗୋଟିଏ କଥା-ଲାଜ କାହିଁକି କରିବି, ଏବେ ନକହିଲେ ମଲାବେଳକୁ କହିବି, କାହିଁକି ନାଁ ମଲାବେଳେ ପାପ ଖୋଲି ନଦେଲେ କୁଆଡ଼େ ତଣ୍ଟିପାଖରେ ନିଃଶ୍ୱାସ ପ୍ରଶ୍ୱାସ ଘଡ଼ ଘଡ଼ ହେଉଥିବ, ତୁମେ ବିଛଣାରେ ଛଟ୍‌ପଟ୍ ହେଉଥିବ, ଅଥଚ ସେ ଦରମଲା ପିଣ୍ଡଟା ତୁମକୁ ଛାଡ଼ିବ ନାହିଁ ପାପ ନଖୋଲିବା ପର୍ଯ୍ୟନ୍ତ ।

ବାପା ମୋର ଭାରି ରୋମାଣ୍ଟିକ୍ ଥିଲେ । ତାଙ୍କ ପଇଁଚାଳିଶ ବର୍ଷରେ ମୋର ବଉ ମରିଗଲା । ସେ ଦ୍ୱିତୀୟ ବିବାହ ପାଇଁ ଆଗ୍ରହ ପ୍ରକାଶ କଲେ ଓ ଆମର ଜମିଦାରୀ ହାଲ୍ ବୁଝାସୁଝା କରୁଥିବା ମୋ ମାମୁଁଙ୍କ ସାହାଯ୍ୟରେ ଜମିଦାରୀ ଇଲାକାରୁ ମୋ ବଡ଼ ଭଉଣୀ ଠାରୁ ଗୋଟିଏ କମ୍ ବର୍ଷର ଝିଅକୁ ବିବାହ କଲେ । ଠିକ୍ ସେଇଦିନ ମୋର ଛାଇ ଛାଇକା ମନେ ଅଛି ସେ ହଳଦୀ ଲଗାଇ ନୂଆ ଯୌବନର ସ୍ୱାଦକୁ ମନରେ ଦୋହରାଉଥିବାବେଳେ, ମୋ ମୌଳିକ ମା' ଛାଡ଼ିଯାଇଥିବା ମୋର ବର୍ଷକର ସାନଭାଇଟି କାଖଗୋଲି ରୋଗରେ ଆଖି ବୁଜିଦେଲା । ଅବଶ୍ୟ ନିଜର ଦୋଷ ଢ଼ାଙ୍କିବାକୁ ହେଉ କିମ୍ବା ନିଜ ଅସଙ୍ଗତ କାର୍ଯ୍ୟକୁ ଢ଼ାଙ୍କିବାକୁ ପରବର୍ତ୍ତୀ କାଳରେ ସେ କହନ୍ତି, "ମୋ ବୋଉ (ଆମର ଜେଜେ ମା) ଜିଦ୍ ଧରିଲା ମୁଁ ବାହାନ ହେଲେ ସେ ମରିଗଲାପରେ ପାଣି ପାଇବନି ।" ମନେ ମନେ ମୁଁ ହସିଦିଏ- କହିବତ ଇଚ୍ଛା ହେଲା ବାହାହେଲ, ବୁଢ଼ୀ ଯେମିତି ଶୂନ୍ୟ ମଣ୍ଡଳରେ ରହି ବର୍ଷକରେ ଥରେ ତମ ଟେକା ପାଣିକୁ ଚଁ ଚଁ କରି ପିଇଯିବ ।

ସେଇ ଦୋଷଟା ମୋର ଆଜ୍ଞା ରହିଗଲା- ଏ ବୟସରେ ବି ଝିଅଟେ ଦେଖିଲେ ମୋ ଦେହ ଶିରିଶିରେଇ ଯାଏ । ମୋ ସଂସ୍ପର୍ଶରେ ଆସୁଥିବା ପିଲାମାନେ କହନ୍ତି, କ୍ଲାସରେ ଦି'ଟା ଅଧେ ଟୋକୀ ନଥିଲେ ସାର୍‌ଙ୍କ କ୍ଲାସଟା ଧିମେଇ ଯାଏ । ଏଥିନେଇ ମୋର ଅନେକ ଏଣ୍ଟାଗୋନିଷ୍ଟ ଅଛନ୍ତି- ସେମାନେ ନୀତି-ଅନୀତିର ପ୍ରଶ୍ନ ଉଠାନ୍ତିନି, ବରଂ ଯଥେଷ୍ଟ ଆଗ୍ରହରେ ସେ କଥା ଶୁଣନ୍ତି ଓ ସମୟ ସମୟରେ ବାଳବ୍ରହ୍ମଚାରୀ ପରି ମୋତେ ଉପଦେଶ ଦିଅନ୍ତି । ମୁଁ ହସିଦିଏ ଏବଂ ସେମାନଙ୍କୁ ସ୍ପଷ୍ଟ 'ଅଙ୍ଗୁର ଖଟାଫଳି' ଉପାଖ୍ୟାନ ସହିତ କୌଣସି ଭଦ୍ରଲୋକ ଅନ୍ୟର ବ୍ୟକ୍ତିଗତ ଜୀବନ ସମ୍ପର୍କରେ ସମ୍ପୂର୍ଣ୍ଣ ଉଦାସୀନ ବୋଲି କହେ । ସେମାନଙ୍କୁ କେମିତି ବୁଝାଇ ପାରନ୍ତି 'ଶ୍ରୀରାଧା', 'ଶୁକଦେବ ଜେନା', 'ଏପ୍ରିଲ ଓ ଆମ ଗାଁ', 'ହରେକୃଷ୍ଣ ଦାସ', 'ବାରଟା ରାତି ପରେ' ଇତ୍ୟାଦି କବିତା ସବୁ ମୋତେ ଭଲ ଲାଗେ ବୋଲି ।

ସତକଥା ମୋତେ ଝିଅମାନେ ଭଲ ଲାଗନ୍ତି କେବଳ ଟିକେ ଜମେଇବା ପାଇଁ- ଏମିତି କେତେ ଗଲେଣି, କେତେ ଯିବେ ମଧ୍ୟ; କିନ୍ତୁ ଲିଲି ଚୌଧୁରୀ ! ମୋ କଥା ଅନେକ କହିଲିଣି, ଏବେ ଲିଲି ଚୌଧୁରୀ ତା'କଥା କହୁଛି - ଶୁଣନ୍ତୁ ।

**ଲିଲି ଚୌଧୁରୀ:** ମୁଁ ଲିଲି ଚୌଧୁରୀ । ଶିକ୍ଷାଗତ ଯୋଗ୍ୟତା କେବଳ କଳାରେ ଉପାଧିଟିଏ । ମୁଁ ଗୋଟିଏ ଖାନ୍‌ଦାନ ପରିବାରର ଝିଅ ଓ ମୋ ସ୍ୱାମୀ ଜଣେ ପଦସ୍ଥ ସରକାରୀ କର୍ମଚାରୀ । ମୁଁ ଗାଏମୋଟ ଚାରିଟି ପିଲାର ମା' । ତଥାପି ସେମାନେ କହନ୍ତି ମୋର ଗ୍ଲାମର କୁଆଡ଼େ ମୋତେ ଏବେବି ଏକ ଷୋଡ଼ଶୀ କରି ରଖିଛି । ମୁଁ ନିଜେ ନିଷ୍ଠିତ ମୋର ଭାଇଟାଲ ଷ୍ଟାଟିଷ୍ଟିକ୍‌ସ୍ ପ୍ରପରସନେଟ୍ ନୁହେଁ- ତଥାପି ବୟସକୁ ହାତ ମୁଠାରେ ବାନ୍ଧି ରଖିବାକୁ ମୋର କାହିଁକି ଗୋଟିଏ ଅନିଚ୍ଛାକୃତ ଉଦ୍ୟମ । କହିବା ବାହୁଲ୍ୟ ସେଥିରେ ମୁଁ ସଫଳ ବି । ମୋ ଚତୁଃପାର୍ଶ୍ୱରେ ଟିନ୍ ଏଜର୍‌ମାନଙ୍କର ଭିଡ଼ ମୋତେ ରାଣୀ ମହୁମାଛି କରି; କାହାର ଅପା, କାହାର ମାଉସୀ, କାହାର ଆଣ୍ଟି, କାହାର ଭାଉଜ... ଏମିତି ଏମିତି । କେବଳ ମୋତେ ବେଢ଼ି ରହନ୍ତି ଓ ମୁଁ ସେମାନଙ୍କୁ ଆମୋଦିତ କରେ ହସରେ, ମଧୁର ବ୍ୟବହାରରେ ଓ ସର୍ବୋପରି ଚାନ୍ଦିନୀଚୌକ୍‌ର ଦେବୀ ମୂର୍ତ୍ତିପରି । ମୋ ସ୍ୱାମୀ ଏଥିରେ ଈର୍ଷାନ୍ୱିତ ହୁଅନ୍ତିନି, ସେମାନଙ୍କ ସହିତ ମିଶନ୍ତି, ଖେଳନ୍ତି ଓ ଅଫିସ୍‌ବେଳ ହେଲେ 'ଖେଳରେ ପିଲେ' କହି ମୋତେ ଛାଡ଼ି ଚାଲିଯାନ୍ତି । ଅନେକ ଖରାବେଳେ ମୁଁ ବିଶ୍ରାମହୀନା ହେଇ ପଡ଼େ । ତଥାପି ମନରେ ବା ଦେହରେ କେବେ ମୋର ଅବଶ ଭାବ ଆସେନି- ମୁଁ ଅନୁଭବ କରେ ବୋଧହୁଏ ତଥାପି ମୁଁ

ଏକ ଷୋଡ଼ଶୀ ହୋଇ ରହିଯାଇଛି ।

ସେମାନେ କହନ୍ତି, ତା'ଛଡ଼ା ମୁଁ ନିଜେ ସେ ସମ୍ପର୍କରେ ଯଥେଷ୍ଟ ସଚେତନ– ମୋର ରୁଚି ଅଛି । ୟୁଫେଟ୍ ବ୍ରା ଓ ନିର୍ଦ୍ଦିଷ୍ଟ ରଙ୍ଗର ଶାଢ଼ୀ ବ୍ଲାଉଜ୍ ମୋର ଚଏସ୍ । ମୋତେ ଦେଖିଲେ କେହି ଜାଣିବେନି ଚାରିଟି ପିଲା ବାରବର୍ଷ ଧରି ମୋ ସ୍ତନକୁ ଝୁଣି ଝୁଣି ମୋ ଦେହର ସମସ୍ତ ରସକୁ ନିଶେଷ କରିଛନ୍ତି । ସତରେ କଣ ପିଲାମାନେ ଦେହର ରସକୁ ନିଶେଷ କରିପାରନ୍ତି ! ତମେ ଯଦି ତମର ଦେହର ଯତ୍ନ ନେଇ ପାରିଲ – ଦଶଟି ପିଲା ହେଲେ ବି ଫୁଃ– ।

ସନାତନ ଦାସ କହେ ମୋ ଭିତରେ ଫ୍ରୟେଡ଼ିଆନ୍ ସାଇକଲଜି କାମ କରେ, ସନାତନ ଦାସ କହୁଥାଉ, ସେଥିରେ ମୋର ଯାଏଆସେ କେତେ । ମୁଁ ମୋ ସ୍ୱାମୀ ଠିକ୍ ଅଛୁଁ । ସନାତନ ଦାସ କହୁଥିଲେ କହୁଥିବ ଗୋଟିଏ ଇର୍ଷାରେ, ଅସହିଷ୍ଣୁତାରେ । ସନାତନ ଦାସ ସହିଷ୍ଣୁ ହୋଇଥାନ୍ତା ବିବାହ କରିସାରିଲା ପରେବି ତା' ସହିତ ମୁଁ ପୂର୍ବର ପ୍ରେମିକା ପରି ବ୍ୟବହାର କରିଥାନ୍ତି ! କୁହନ୍ତୁତ କେହିକଣ ଏମିତି କରିପାରେ ? ସାଙ୍ଗରେ ନିଜର ସ୍ୱାମୀ ପିଲାର ସଂସାର ଯେ !

କାହିଁକି କେଜାଣି ସନାତନ ଦାସର ଗୋଟିଏ ଅବଶୋଷ ରହିଗଲା । ତାକୁ ନେଇ ମୋ ସମ୍ପର୍କରେ ମୁଁ ସ୍ପଷ୍ଟ ମତ ଦେଇପାରିବିନି । ସବୁ ସତ୍ତ୍ୱେ ସନାତନ ମୋତେ ଭଲଲାଗେ ଏବଂ କେଉଁ ସ୍ତରରେ ଆମର ଗୋଟିଏ ସୂକ୍ଷ୍ମ ସଂଯୋଗ ରହିଥିବା ପରି ମୋର ମନେହୁଏ । ହୁଏତ ସନାତନର ସେମିତି କିଛି ଗୋଟିଏ ଦୁର୍ବଳତା ଥିବ । ତେବେ ମୁଁ କଣ କରିପାରିବି ! ମୁଁ ତ ଆଉ କାଞ୍ଚନିକ ରାଧା ନୁହେଁ ଯେ ଶାଶୁ ନଣନ୍ଦକୁ ଅବଜ୍ଞା କରି ଦଉଡ଼ିବି ଯମୁନା କୂଳକୁ !

ମୁଁ ସନାତନକୁ ଫାଙ୍କି ଦେଇ ପାରିବିନି । ମୋ ସ୍କୁଲ କେରିଅର୍‌ରୁ ସେ ମୋର ପିଛା କରିଛି ଯେମିତି ଏବେବି କଲେଜ ଟୋକାଙ୍କ ଠାରୁ ଷ୍ଟ୍ରିଟ୍ ଲୋଫରମାନେ ସୁନ୍ଦରୀ ଝିଅଙ୍କୁ ପିଛା କରନ୍ତି । ଅବଶ୍ୟ ଆମବେଳେ 'ଇଭ୍ ଟିଜରସ୍' ଶବ୍ଦଟି ବାହାରି ନଥିଲା, ଥିଲେ ସନାତନ ମୋ ଭିତରେ ସେଇ ଶବ୍ଦ ଦୁଇଟିକୁ ସୁନ୍ଦର ଭାବରେ ପ୍ରୟୋଗ କରାଯାଇ ପାରିଥାନ୍ତା ।

ଦୁର୍ଯୋଗ ବା ସୁଯୋଗ ହେଉ ସନାତନ ମୋ ନିକଟ ସମ୍ପର୍କରେ ଆସିଲା ଏବଂ ଆମେ ପ୍ରତ୍ୟେକଟି ନୂଆ ଫିଲ୍ମ୍‌ର ପ୍ରିମିଅର ସୋ ଦେଖିଲୁ... ତା'ପରେ ଯାହା ଯେମିତି ଦେହକୁ ଛାଡ଼ିଦେଲେ, ଅଥଚ ଦିନେ ସନାତନ କ୍ଷୁବ୍ଧ ହୋଇଗଲା ମୋ

ବ୍ୟବହାରରେ ଯେତେବେଳେ ମୁଁ ଲିଲି ରାୟରୁ ଚୌଧୁରୀ ହେଲି । ମୁଁ ଜାଣି ଜାଣି ମୋ ବ୍ୟବହାରରେ ପ୍ରକାଶ କଲି ସନାତନ ଦାସ ବୋଲି କୌଣସି ଲୋକକୁ ମୁଁ ଚିହ୍ନେନାଁ, ତା' ସହିତ ମୋର କୌଣସି ସମ୍ପର୍କ ନଥିଲା । କୁହନ୍ତୁ ତ ! କେହିକଣ କେବେ ତା'ର ଟିନ୍ ଏଜର ଦୁର୍ବଳତା (ଅବଶ୍ୟ ଦୁର୍ବଳତା ବି ଠିକ୍ ନୁହେଁ)କୁ ପୂର୍ଣ୍ଣାଙ୍ଗ ଜୀବନରେ ପ୍ରକାଶ କରିବାକୁ ପସନ୍ଦ କରେ !

ସବୁ ସତ୍ତ୍ୱେ ସନାତନ କିନ୍ତୁ ସନାତନ । ଆଉ ପ୍ରଣବ ରାୟ... ଏ ମା'... ଚାହିଁଥିବ ନାଁ, ଯେମିତି ତମକୁ ଘର୍ମାକ୍ତ କରି ଦେଲାଣି । ମୁହଁରୁ ହସ, ଦେହରୁ ରୋମାଞ୍ଚ ସବୁ କୁଆଡ଼େ ଉଭେଇ ଯିବ, କେବଳ ଏକ ପାଶବିକତାରେ ଛନ୍ଦି ହୋଇଯିବା ବ୍ୟତୀତ ଅନ୍ୟ ବାଟ ନଥିବ । ଅବଶ୍ୟ ରାୟର ଏଇ ଭାବଟା କେବଳ ପ୍ରକାଶିତ ହୁଏ, ରୂପନିଏ କ୍ୱଚିତ୍ । ଏବେ ପ୍ରଣବ ରାୟଙ୍କୁ ଶୁଣନ୍ତୁ ।

**ପ୍ରଣବ ରାୟ-** ମୁଁ ପ୍ରଣବ ରାୟ, ସନାତନର ସମ-ସାମୟିକ । ମୁଁ କିନ୍ତୁ ଲିଲି ଚୌଧୁରୀ ସହିତ ସମ୍ପୃକ୍ତ ନୁହଁ, ଯଦିଓ ଥରେ ଅଧେ ତା' ସମ୍ପର୍କରେ ସନାତନର ଫିଲସଫିକୁ ପସନ୍ଦ କରେନା । ଉତ୍ତର ବୟସରେ ପ୍ରେମ କଣ ମଁ, ହେଲାତ ହେଲା ନ ହେଲେ ବାପୁ ଫୁଟ୍ । ଆଉ ଘଣ୍ଟା ଘଣ୍ଟା ଧରି ଗସିପ୍ ଯେମିତି ତମେ ବେକାର, ହାତରେ କିଛି କାମ ନାହିଁ । ସନାତନ ମୋର ବନ୍ଧୁ ହେଲେବି ଏଇଠି ତା' ସହିତ ମୋର ମତ ଭିନ୍ନ । ତା' ଛଡ଼ା ସନାତନ କିମ୍ବା ଅରୁଣର ପରିମିତି ବୋଧ ଉପରେ ମୋର ସନ୍ଦେହ ଅଛି । ମୋର ବିଶ୍ୱାସ ଆମ ସମୟରେ ଫର୍ମାଲିଟି ଏକ ମାତ୍ରେ ସତ୍ୟ ଏବଂ ଇନ୍‌ଫର୍ମାଲ୍ ବୋଲି ଗୋଟିଏ ଜିନିଷ ତା' ସହିତ ମଣିଷର ସେଣ୍ଟିମେଣ୍ଟ ଜଡ଼ିତ । ଆଉ ସେଣ୍ଟିମେଣ୍ଟଲ୍ ହେଲେତ ତମେ ମଲ । ଅଥଚ ସନାତନ ଏବଂ ଅରୁଣ ସବୁବେଳେ ମୋତେ ବୋର କରିବେ ଓ ଗୋଟିଏ ଇନ୍‌ଫର୍ମାଲ ଲାଇଫ୍ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବେ ମାନେ (ଅପ୍ରିୟ ସତ୍ୟ ଖରାପ ନୁହଁକି !) ମାନେ ମୁଁ ଜଣେ କ୍ଲାସ୍ ୱାନ୍ ଅଫିସର, ମୁଁ କେମିତି ରାସ୍ତାରେ ଟଙ୍ଗ୍ ଟଙ୍ଗ୍ ଘୁରି ପାରିବି, ମୋ ଡ୍ରଇଁ ରୁମ୍‌କୁ ଗୋଟିଏ କମନ୍ ପ୍ଲେସ୍‌ରେ ରୂପାନ୍ତରିତ କରିପାରିବି । ମୁଁ ତ ମଣିଷଟିଏ... ମୁଁ କଣ ଦୁନିଆକୁ ଅବଜର୍ଭ କରୁନି- ନିଜର ଗୋଟିଏ ଷ୍ଟେଟସ୍, ନିଜକୁ ଦୁଇପାହୁଛ ଉପରେ ନିରାପଦ ସ୍ଥାନରେ ପ୍ରତିଷ୍ଠିତ କରିବା... କମନ୍ ହେଇଯିବାଟା କ'ଣ ଭଲ ! ମୋର ସେକ୍ସ୍ ଅର୍ଜ ଅଛି, ତା ବୋଲି ମୁଁ କେମିତି ସନାତନ ଦାସ ପରି ହୋଇପାରିବି କିମ୍ବା ଅରୁଣ ପରି ବୈଷୟିକ ହୋଇପାରିବି ଯଦିଓ ମୁଁ ମୋର, ସମ୍ପୂର୍ଣ୍ଣ ମୋର ନିଜର ବ୍ୟତୀତ ଅନ୍ୟ କଥାରେ ବେଶୀ

ମୁଣ୍ଡ ଖେଳାଇବାକୁ ପସନ୍ଦ କରେନା । ମୁଁ ନିଶ୍ଚିତ, ମୁଁ ସମୟର ପ୍ରତିନିଧି... ଅଥଚ ସନାତନ, ଅରୁଣ ସମୟକୁ ଫାଙ୍କିଦେବାକୁ କିମ୍ବା ସମୟର ବ୍ୟତିକ୍ରମ ହେବାକୁ ଚେଷ୍ଟା କରନ୍ତି । ସେଇଠି ଆମର ଅମେଳ ଯଦିଓ ଆମେ ଖୁବ୍ ଅନ୍ତରଙ୍ଗ ବନ୍ଧୁ ବୋଲି ଆମକୁ ଦେଖୁଥିବା ଲୋକମାନେ ଜାଣନ୍ତି ।

ମୁଁ ସମସ୍ତଙ୍କ ସହିତ ଭଦ୍ର... ସେମାନେ ମୋତେ ଗ୍ରହଣ କରନ୍ତି ଏବଂ ମୁଁ ଆଶ୍ୱସ୍ତ ମୋ ଫର୍ମାଲିଟିକୁ କେହି ଧରିପାରନ୍ତିନି । ମୋଟାମୋଟି ମୁଁ...ମୁଁ....ମୁଁ... କେବେ ସନାତନ କିମ୍ବା ଅରୁଣ ହୋଇ ପାରିବି ନାହିଁ । ମୁଁ ଏତକ କହିଦେଲା ପରେ ଯାର ଯଦି କେହି ପ୍ରତିବାଦ କରେ ଆବଶ୍ୟକ ହେଲେ ଅଧିକ କହିବି ।

**ସନାତନ ଦାସ-** ଦେଖନ୍ତୁ ଆପାତତଃ ମୁଁ ଆପଣଙ୍କୁ ଅଧିକ ବୋର କରିବିନି । ପରେ କେବେ କଥାବାର୍ତ୍ତା ହେବା । ତେବେ ଉପସଂହାରରେ ମୋର ଦୁଇପଦ କହିବା କଥା– ଆମେ ମଣିଷ, କୁକୁର, ମାଙ୍କଡ଼, କୁକୁଡ଼ା ଇତ୍ୟାଦି ପଶୁ-ପକ୍ଷୀ ନୁହଁନ୍ତି ଯେ ସମସ୍ତଙ୍କ ସାମ୍ନାରେ ନିଜକୁ ଇଚ୍ଛା ମୁତାବକ ଖୋଲିଦେବା । ଆମର ଗୋଟିଏ ବ୍ୟକ୍ତିଗତ ଗୋପନୀୟତା ରହିଛି ଯେହେତୁ ଆମେ ମଣିଷ ଏବଂ ଆମେ ଏମିତି ସୀମାବଦ୍ଧ ଯେ ଗୋଟିଏ ନିବୁଜ କୋଠରୀରେ ନିଜର ପ୍ରବୃତ୍ତି ମାନଙ୍କୁ ନେଇ ଚୂଚୂନ୍ଦ୍ରାଟିଏ ପରି କାନ୍ଥର କଡ଼ ଦେଇ ସେଇ ଆବଦ୍ଧତାକୁ କେବଳ ପରିକ୍ରମା କରୁଥିବା । ଆପାତତଃ ଏତକ । ପୁନର୍ବାର ଆଉ କେତେବେଳେ– ।

(୧୯୮୪)



# ବୁଢ଼ା ଲୋକ: ପ୍ରେମ ଚିଠି

ରୋମା !

ଏଇ ମାତ୍ର ନଭେମ୍ବର ରାତି ଚାରିଟାରେ ହଠାତ୍ ନିଦ ଭାଙ୍ଗିଗଲା । କେଉଁ ଦାୟିତ୍ୱ/ଅଭାବବୋଧରୁ ମୋ ନିଦ ଭାଙ୍ଗିଗଲା ମୁଁ ଜାଣେନା... ତଥାପି କୌଣସି ସ୍ୱପ୍ନ ନାହିଁ, କିମ୍ୱା ତା'ର ପ୍ରଭାବ । ଏବେ ମୁଁ କଣ କରିଥାନ୍ତି ! ତମେ ନିଶ୍ଚୟ କହିବ (ତମେ ଚାହଁ ମୁଁ ଶୀଘ୍ର ବୁଢ଼ା ହୋଇଯାଏ), ବିଛଣା ଉପରେ ପଦ୍ମାସନ କରିଥାନ୍ତି ଓ ଗୋଟିଏ ଅଦୃଶ୍ୟ ଜଗତ ସହିତ ଲୟ ଲଗାଇଥାନ୍ତି । ଏଇବେଳେ କୁଆଡ଼େ ପବିତ୍ର ଆତ୍ମାମାନେ ଇଥରୀୟ ମଣ୍ଡଳରେ ଘୁରି ବୁଲନ୍ତି ଓ ତମ ଆତ୍ମା ସେମାନଙ୍କ ସହିତ ମିଶିଗଲେ ତୁମେ ତାଙ୍କର ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ହୋଇଯାନ୍ତ । ତାପରେ କିଛି ଗୁଣୁ ଗୁଣୁ ଶବ୍ଦ.. ହରେ ମୁରାରି, ମଧୁ କୈଟବପୁରେ, ଗୋବିନ୍ଦ ଗୋପାଳ ମୁକୁନ୍ଦ ସୌରେ/ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବତୁମେ । ଟର୍ଚ୍ଚ ଆଲୋକରେ ଘରକୁ ଦରାଣ୍ଡି ଛୋଟିଆ ନୋଟାଟି ସହିତ ଟେଲାଏ ଗୁଡ଼ାଖୁ ଧରି ଖୋଲା ଆକାଶକୁ ନିରୀକ୍ଷଣ କରୁଥାନ୍ତି ଗ୍ରହ-ନକ୍ଷତ୍ରମାନଙ୍କର ଗତିବିଧି ଲକ୍ଷ କରିବାକୁ । ସକାଳୁ ଗରମ ପାଣିରେ ଦେହକୁ ଧୋଇବା, ମଠାଲୁଗା ଓ ଠାକୁର ମନ୍ଦିରରେ ବୟସ ଗଡ଼ିଯାଇଛି ବୋଲି ଗୋଟିଏ ଉଦାସ ଏକୁଟିଆ ମନରେ ଆବହମାନ କାଳରୁ ଚଳିଆସୁଥିବା ଉପଚାର ଗୁଡ଼ିକୁ ମାଡ଼ି ମକଚି ଅଭ୍ୟାସ କରୁଥାନ୍ତି ।

ପରୋମା ! ସତ କହୁଛି ଏ ସବୁ କିଛି କରିପାରିଲି ନାହିଁ । କାହିଁକି ନା ତୁମମାନଙ୍କ ଦୃଷ୍ଟିରେ ମୁଁ ବୁଢ଼ା ଲୋକଟିଏ । କିନ୍ତୁ ବୁଢ଼ାଲୋକଟିଏ କିଏ ବା କଣ ମୁଁ ଏଯାଏ

ବୁଝିପାରିଲି ନାହିଁ । ଏଇ ଦେଖୁନ ତମକୁ ହୁଏତ ମୁଁ ଜୁଲି, ରାନୁ, ଦେବୀ ଇତ୍ୟାଦି କିଛି ଗୋଟାଏ ସମ୍ବୋଧନ କରି ଏ ଚିଠିଟି ଲେଖିଥାନ୍ତି । କିନ୍ତୁ ପାରିଲି ନାହିଁ । ପାରିଲି ନାହିଁ ଏଇଥି ପାଇଁ, କିଛିଦିନ ତଳେ ଟେଲିଗ୍ରାଫ୍‌ର ସନଡ଼େ ସପ୍ଲିମେଣ୍ଟରେ ଗୋଟିଏ ଫିଲ୍ମ ବିଷୟରେ ବାହାରିଥିଲା- ପରୋମା ବା ପାରୋମା । ବିଚାରୀ ସ୍ତ୍ରୀ ଲୋକଟିଏ- କିଛି ବୟସ ଅତିକ୍ରମ କରିଛି ଦୁନିଆଁ ଦୃଷ୍ଟିରେ ସଂସାର ସହିତ । ଅଥଚ ସେଇ ଆମେରିକା ଫେରନ୍ତା ବୋହେମିଆନ୍ କାଓବୟ ଜିନ୍ ପିନ୍ଧା ଫଟୋଗ୍ରାଫରର ଅଜସ୍ର ଫ୍ଲାସ୍ ଲାଇଟ୍‌ରେ ତା ଆଖିରେ ଅନ୍ଧାର ଛାଇ ହୋଇଗଲା ଓ ସେଇ ଅନ୍ଧାରରେ ପୁଣି ଉଦ୍‌ଭାସିତ ହେଲା ଉଜ୍ଜ୍ୱଳ ଆଲୋକ- ଅତିକ୍ରାନ୍ତ ବୟସ ଧୀରେ ଧୀରେ ପ୍ରତିକୂଳ ଗତିରେ ପୁଣି ଫେରିଲା ପଛକୁ ଓ ପରୋମା ନୂତନ ଯୁବକଟିକୁ ଦେଖି ତା ସ୍ୱାମୀର ନାଁ ଭୁଲିଗଲା ।

ପରୋମା ! ମନେ କଲୁ କେତେ ଦିନର ଆମର ବନ୍ଧୁତା ! କୋଡ଼ିଏ ବର୍ଷର- ଦୁଇ ଯୁଗକୁ ଚାରି ବର୍ଷ କମ୍ । ତୋ ମୋ ବୟସର ପାର୍ଥକ୍ୟ ଖୁବ୍ ବେଶୀ ନୁହେଁ । ତୋ ମନୋଭାବ କେମିତି, ତୁ କଣ ଖୁସି ହେଇ ପାରନ୍ତୁ / ପାରୁଛୁ ଏବେ ଝିଅକୁ ଛାଡ଼ି ଦେବାକୁ ତା ବୟଫ୍ରେଣ୍ଡ୍ ସାଙ୍ଗରେ ବୁଲିବାକୁ କିମ୍ବା କୌଣସି ବିଶେଷ ପର୍ବରେ ସନ୍ଧ୍ୟାରେ ଘରର ଉପକଣ୍ଠରେ ଉଦ୍ଦେଶ୍ୟହୀନ କିଛି କଥାବାର୍ତ୍ତା ହେବାକୁ ତାର ସାମାନ୍ୟ ଅଧିକ ଆଗରେ ପଢୁଥିବା ଯୁବକ ସହିତ ! ତେବେ କେଉଁ ଜିନିଷ ଭଲ ଲାଗିବ; ସ୍ୱାମୀଙ୍କର ଦୁଇଓଳି ଦୁଇ ଘଣ୍ଟା ପୂଜା ପାଠ, ନା ଦିନ ବାରଟାରେ ମଧ୍ୟାହ୍ନ ସୋ ଦେଖି ସାରି ଘରେ ବିଛଣାରେ ଦେହକୁ ଲୋଟାଇ ଦେଇ ତାଙ୍କର ଅଣ୍ଟାକୁ କୁତୁ କୁତୁ କରିବାକୁ ! ମୁଁ ତୋତେ ଜାଣେରେ ପରୋମା ଏ ସବୁ ତୋର ଇଛା । କିନ୍ତୁ ତୁ କରିପାରୁନୁ, ତୋ ପିଲା ସେତେବେଳକୁ ସ୍କୁଲ / କଲେଜରୁ ଫେରିବେ ଓ ତୋ ଦେହର ଉତ୍ତାପକୁ ଚାପି ଦେଇ ସେମାନଙ୍କୁ ଖାଇବାକୁ ଦେବୁ ମିଛ ମଣିଷମାନଙ୍କର ବୟସକୁ ଗ୍ରହଣ କରିନେଲା ପରି, ଏବଂ ମୁହଁକୁ ଭାରି କରି ସ୍ୱାମୀଙ୍କୁ ପରିବା ଠାରୁ ଘରେ ଅନ୍ୟାନ୍ୟ ଜିନିଷର ଅଭାବ ଦର୍ଶାଇ ଗୋଟିଏ ବଡ଼ ଝୁଲା ଧରାଇ ଦେଇ ସାଇକେଲ୍‌ରେ ଠେଲିଦେବୁ ବଜାରକୁ !

ପରୋମା ! ସତରେ କହିଲୁ- ଏଇଟା କଣ ତୋ ଜୀବନ ଓ ବଞ୍ଚିବାର ଢାଞ୍ଚା ! ତୋତେ ମୁଁ ଚିହ୍ନିଛିରେ କୋଡ଼ିଏ ବର୍ଷ ତଳୁ ପ୍ରତ୍ୟେକଟି ପ୍ରେମିଅର ସୋ'ର ସିନେମାହଲ୍ ମାନଙ୍କରେ, କେଦାର-ଗୌରୀ କିମ୍ବା ନ୍ୟାସ୍‌ନାଲ୍ ପାର୍କରେ । ମୁଁ ଜାଣେନା, କାରଣ ନିଜକୁ ଖୁବ୍ କମ୍ ବିଶ୍ଳେଷଣ କରେ ମୁଁ, ତୋର ରୁଚି ଓ ବୟସକୁ । କିନ୍ତୁ ମୋତେ ଭଲଲାଗେ ତୋର ଷ୍ଟେରିଓ ଶୁଣିବାର ଅଭ୍ୟାସକୁ, ବୟସକୁ ଠିକ୍ ଠିକ୍ ଚିହ୍ନୁଥିବା

ପିଲାମାନଙ୍କ ମେଳରେ ତାସ୍ ମୁଠାକୁ ଖୋଲି ଦେବାର ରୋଟିନ୍ ୱାର୍କକୁ ଓ ସେମାନଙ୍କୁ ଖାଇବା ପିଇବାକୁ ଦେଇ ବଡ଼ ଭଉଣୀ ଭୂମିକାର ମୋହକୁ । କାହିଁକିନା ମୁଁ ତୋ ଠାରୁ ଭିନ୍ନ ନୁହେଁ, ବରଂ ତୋର ଅତି ପାଖାପାଖି । ତୁ ମୋତେ ବୁଢ଼ା ଲୋକଟିଏ ବୋଲି ଡ୍ରଇଁ ରୁମ୍‌ରେ ବସାଇଦେଇ ଚା' କପ୍ ଭିତରେ ତୋ ଭଦ୍ରାମି ଓ ଫର୍ମାଲିଟିକୁ ଶାସ୍ତ୍ରୀୟ ନିୟମରେ ପାଳନ କରୁ ସିନା; କିନ୍ତୁ ମୁଁ ଠିକ୍ ଜାଣେ ତୁ ମୋତେ ଚିହ୍ନିଛୁ ଓ ଲୌକିକତା ଦୃଷ୍ଟିରୁ ଟେପ୍‌ରେ ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଧାରଣ କରି ମୋ ସହିତ ସମ୍ପର୍କ ରକ୍ଷାକରୁ । ତୋ ମନରେ କୋଡ଼ିଏ ବର୍ଷ ତଳର ସମ୍ପର୍କ ସ୍ପଷ୍ଟ ପ୍ରତିଫଳିତ ହେଉଥିଲେ ବି ତୁ ତାକୁ ଜାଣି ଜାଣି ଭୁଲିଯାଇ ଥିବାର ପ୍ରାକ୍ଟିସ୍ କରୁ ମିଛରେ ତୋ ବୟସକୁ ସ୍ୱୀକାର କରିନେଇଚୁ ବୋଲି ଅନ୍ୟକୁ ଧାରଣା ଦେବାକୁ । ମୁଁ କିନ୍ତୁ ବୋକା ନୁହେଁରେ ପରୋମା ! ମୋ ଆଖିର ପରଳ ଦୁନିଆର ଚିତ୍ରକୁ ବାହାର ଆଖିରେ ଅସ୍ପଷ୍ଟ କରି ଦେଇଛି । ଅଥଚ ବୟସ ମୋ ସାଙ୍ଗରେ ! ବୟସକୁ ଧରି ଯେଉଁ ତରୁଣୀମାନେ ମୋ ଘରକୁ ଆସନ୍ତି ମୁଁ ସେମାନଙ୍କୁ ଖାସ୍ ମୋ ପାଖରେ ଧରି ରଖେ । ସେମାନଙ୍କ ଠାରୁ ଗୀତ ଶୁଣେ, ଟେପ୍‌ରେ ଗୀତ ଶୁଣାଏ ପୁରୁଣା ରୋମାଣ୍ଟିକ୍ ଫିଲ୍ମର ଓ ଏବେ ଏବେ 'ନିକାହା'ର । ସେମାନେ ମୋତେ କଣ ବୁଝନ୍ତି ମୁଁ ଜାଣେନା, ଅଥଚ ସେମାନେ ବସନ୍ତି ସବୁ ସତ୍ତ୍ୱେ ଗୋଟିଏ ବୟସ୍କ ବୃଦ୍ଧର ସ୍ନେହକୁ ସୌଜନ୍ୟ ଦୃଷ୍ଟିରୁ ହେଉ କିମ୍ୱା ଅନ୍ୟ କେଉଁ କାରଣରୁ ଗ୍ରହଣ କରିବାକୁ । ମୁଁ ଖାଲି ଗୁଡ଼ାଏ କଥା କହେ ଓ ସେମାନଙ୍କର ଆସିବା ଦୁଇ ଚାରି ଦିନରୁ ଅଧିକ ହେଲେ 'କାହିଁକି ଆସୁନ' ବୋଲି ପ୍ରଶ୍ନ କରେ । (ମୋର ଏ ଅନୁରୋଧକୁ ଅଭିମାନ କୁହାଯାଇ ପାରେ, କିନ୍ତୁ ଏ ବୟସରେ ଅଭିମାନ କଣ ସୁନ୍ଦର ହେବ !) ଆହୁରି ଶୁଣିଲେ ଆଶ୍ଚର୍ଯ୍ୟ ହେବୁ- ମୁଁ ସେମାନଙ୍କୁ ଅନେକ କଥା କହିଯାଏ, ମୋର ବୟସକୁ ଭୁଲିଯାଏ, ଅଥଚ ସେମାନେ କିଛି କହିଲା ବେଳେ ମୁଁ କିଛି ଶୁଣି ପାରେନା, କେବଳ ତାଙ୍କୁ ଦେଖେ, ଛାତିର ଉଚ୍ଚତା ଦେଖେ ଓ ଶାଢ଼ୀ, ସାଲ୍‌ୱାର ପଞ୍ଜାବୀ, ମିଡ଼ି ଓ ମେକ୍‌ସିକୁ । ପୁଣି ଅନାବଶ୍ୟକ ଭାବରେ କହେ ସେ ପୋଷାକ ସୁନ୍ଦର, ସେମାନଙ୍କର ରୁଚି ସୁନ୍ଦର ଓ ସମୟ ସୁଯୋଗକ୍ରମେ ସେ ଶାଢ଼ୀର ଦେହ ବା ପୋଷାକର କନାର କ୍ୱାଲିଟିକୁ ଥରିଲା ହାତରେ ଅନୁଭବ କରେ । ସେମାନେ ଉଠିଲେ ତାଙ୍କ ସହିତ ଫାଟକ ପର୍ଯ୍ୟନ୍ତ ଯାଏ, ମୋ ଖୋଳପାରୁ ମୁକୁଳି ଯାଇ ଫେରିଆସେ କୋଡ଼ିଏବର୍ଷ ତଳକୁ । ମୁଁ ଚାହିଁ ରହେ ସେମାନେ ରାସ୍ତାରେ ମିଶିଯିବା ପର୍ଯ୍ୟନ୍ତ ଓ ପରେ ପରେ ଡ଼ାଳର ହଳଦୀବସନ୍ତକୁ, ଦଳ ପୋଖରୀରେ ସିଆର କାଟି ଖେଳୁଥିବା ହଂସମାନଙ୍କୁ । ମୁଁ ପରେ ପରେ ତରବାରୀ ପରି କୋଷବଦ୍ଧ ହୁଏ ଓ ଦୁଇଟି ହତାଶ ଆଖିରେ ଆକାଶକୁ ଚାହେଁ,

ଅଦିନ ବର୍ଷାରେ ମାଟି ଗନ୍ଧକୁ ନାକ ପୁଡ଼ାକୁ ମେଲାକରି ହଳଯୋଗ ବଳଦ ଦଣ୍ଡେ ଠିଆହୋଇ ମୁହଁ ଉପରକୁ କରି ଆଘ୍ରାଣ କଲାପରି । ପରୋମା ! ଏ ସବୁ କଥା ଜାଣିଲା ପରେ ତୁ କହ ତୋ ବିଚାରରେ – କିଏ ବଡ଼; ବୟସ ନା ମନ !

ତୋତେ ଦେଖିଲେ ମୋର ମନ ହୁଏ ପୃଥିବୀରେ ବୟସ ବୋଲି କିଛି ଅନୁଭୂତି ନାହିଁ । ଥିବ ଅବା ଯେତେବେଳେ ମଣିଷ ଆଉ ଚାଲିପାରିବ ନାହିଁ; ତା ଆଖିରେ ଶକ୍ତି ନଥିବ । ବୋହିଯାଉଥିବ ଦୁଇଠୋପା ଲୁହ ତାର ମସୃଣ ଗାଲ ଉପରେ ନୁହେଁ, ଲୋଚା କୋଚା ଚମ ଉପରେ ।

ତୁ ବୟସକୁ ଧରି ରଖିଛୁ, ସର୍ବାଧୁନିକ କସ୍‌ମେଟିକ୍‌ସ୍‌ରେ, ରଙ୍ଗୀନ ଶାଢ଼ୀରେ, ନୂଆ ନୂଆ ସିନେମାର ପ୍ରେମିଅର ସୋ'ରେ ଓ ରେଜେଇର ତମ୍ବୁ ଭିତରେ । ତୋ ପରି ମୁଁ ବି । କିନ୍ତୁ ଦୁନିଆଁ ? ? ?

ଏବେ ମୁଁ ଭାବେ କାହିଁକି ରମାକାନ୍ତ ରଥ ପରିଶ୍ରମ କରୁଛନ୍ତି 'ଶ୍ରୀରାଧା' ପଛରେ, କାହିଁକି ସୀତାକାନ୍ତ ମହାପାତ୍ର ସ୍ମରଣ କରୁଛନ୍ତି ଏପ୍ରିଲ୍ ମାସ ଓ ତାଙ୍କ ଗାଁକୁ, କାହିଁକି ସୌଭାଗ୍ୟ ମିଶ୍ର ତାଙ୍କ ଧର୍ମ ପତ୍ନୀଙ୍କ ଜଙ୍ଘରେ ତାଙ୍କ ଭବିଷ୍ୟତ ରୋପୁଥିଲାବେଳେ ସାକ୍ଷୀଗୋପାଳର ବିଧବା ବ୍ରାହ୍ମଣୀର ଶରୀରକୁ ଦେଖୁଛନ୍ତି ଗାଧୁଆ ତୁଠରେ, ଯେଉଁଠିକି ଦେଖାଯାଏ ବଡ଼ଦେଉଳର ନାଲି ନେତର ଚୂଡ଼ା । କେଉଁ ଆନନ୍ଦ ଏ ସବୁ ଅନୁଭୂତି ପଛରେ ?

ପରୋମା, ତୋ ପରି ବାଳିକାକୁ କଣ ବା ଆଉ ବୁଝାଇବି (ତୋତେ ବାଳିକା କହିବାରେ ମୁଁ ରୋମାଞ୍ଚିତ) କେବଳ ମାତ୍ର ହୃଷୀକେଶର 'କନ ଅପାର ପାଉଁଜି' ଗନ୍ଧକୁ ଗାଧୋଇ ସାରି ଏକାଦଶ ସ୍କନ୍ଧ ଭାଗବତ ପରି ଥରେ ପଢ଼ିଦେବା କଥା ।

ତୋତେ ଦୀର୍ଘ ଚିଠିଟେ ଲେଖିଦେଲି । ଆଉ ତୋତେ ବୋର୍ କରିବାକୁ ଚାହୁଁନି । କେବଳ ଗୋଟିଏ ପାରିବାରିକ କଥା କହି ଏ ଚିଠିର ଉପସଂହାର କରୁଛି ।

ତୁ ତ ଜାଣୁ, ଜାଣି ନଥାଇ ପାରୁ– ମୋ ପୁଅ ଝିଅ କଲେଜରେ ପଢ଼ିଲେଣି । ଥରେ ମୋ ଝିଅକୁ ତାଙ୍କ କ୍ଲାସ୍ ପିଲାମାନେ ଡ଼ାକିଲେ ଗଣେଶ ବିସର୍ଜନ କରିବାକୁ । ଅନ୍ୟ ଝିଅମାନେ ଗଲେ, ଅଥଚ ସେ ତା ପ୍ରୌଢ଼ ପ୍ରକାଶ କରି ଗଲା ନାହିଁ । କାହିଁକି ନା ଏବେ ଗୋଟିଏ ଛୋଟ କଲେଜରେ ସେ ପଢୁଥିଲେ ବି ଠିକ୍ ପୂର୍ବରୁ ସେ ଓଡ଼ିଶାର ରାଜଧାନୀରେ ଚାରିବର୍ଷ ପଢ଼ି ଆସିଥିଲା । ସେଥିପାଇଁ ସେ ନିଜକୁ ଏଠିକା ପରିବେଶରେ ଖାପ ଖୋଇ ପାରୁନି ଓ ପିଲାଙ୍କଠାରୁ ମାଷ୍ଟର ପର୍ଯ୍ୟନ୍ତ ତାକୁ ଗର୍ବୀ ବୋଲି କହନ୍ତି । ହଁ

କଥା କ'ଣ ହେଲାକି, ବିସର୍ଜନ ପରେ ଭୀଷଣ ବର୍ଷା ହେଲା ଓ ସେ ପିଲାମାନେ ବର୍ଷାରେ ଜୁଡ୍ ବୁଡ୍ ଭିଜି କଲେଜକୁ ଫେରିଲେ । ତାଙ୍କର ଏତାଦୃଶ ଅବସ୍ଥା ଦେଖି ମୋ ଝିଅ ହସିଦେଲା । ତାପରେ ଦେଖ୍ ମଜା- ସେ ପିଲାଙ୍କର ସମସ୍ତ ଅବଦମିତ ଅସାମର୍ଥ୍ୟ କ୍ରୋଧ କେତୋଟି ଅସୌଜନ୍ୟ ଭାଷାରେ ପ୍ରକାଶିତ ହେଲା । ଝିଅ କଲେଜରୁ ଫେରିଲା, ମୋତେ ସବୁ କଥା କହିଲା ଓ କାନ୍ଦିଲା । ମୁଁ ସେତେବେଳେ ଗୋଟିଏ ମୂରବୀର ଭୂମିକା ନେଲି ଏବଂ ହଠାତ୍ କ୍ରୋଧାନ୍ୱିତ ହେଲି ।

ତାପରେ କଣ ହେଲା ଜାଣୁ! ମୁଁ ଆବିଷ୍କାର କଲି ନିଜକୁ କଲେଜ କରିଡ଼ର୍‌ରେ ଓ ସେତେବେଳେ ରାଗରେ ଥରୁଥାଏ । କଣ ସବୁ ଅକଥ୍ୟ ଭାଷାରେ ସେ ପିଲାକୁ ଗାଳିଦେଲି । କେବଳ ଗୋଟିଏ ବାକ୍ୟ ମନେ ଅଛି, ସେ ପୁଣି ବିଦେଶୀ ଭାଷାରେ- ଟୁ ଉଇନ୍ ଓଭର ଏ ଗାର୍ଲ ୱାନ୍ ସୁଡ୍ ହାଭ୍ ସର୍ଟେନ୍ କ୍ୱାଲିଟିଜ୍ ।

ହଠାତ୍ ଘରକୁ ଫେରିଆସିଲି ଓ କାହିଁକି ଏମିତି ବ୍ୟବହାର କଲି ବୋଲି ବିଛଣାରେ ଗଡ଼ି ଗଡ଼ି ଭାବିବାକୁ ଲାଗିଲି । ତା ପରେ ତୋ କଥା ମନେ ପଡ଼ିଲା ଓ ଆଉ ଯାହା କଥା ମନେପଡ଼ିଲା ସେ ଜଣେ ମନସ୍ତତ୍ତ୍ୱବିତ୍- ସିଗ୍‌ମଣ୍ଡ ଫ୍ରଏଡ୍ ।

ହେଲା ଏବେ, ମୋତେ ବୁଝିପାରିଲେ ରାତି ଅନିଦ୍ରାରେ ଏ ଚିଠି ଲେଖିବାର ସାର୍ଥକତା ରହିବ । ଶେଷରେ 'ଶ୍ରୀରାଧା' ପ୍ରତି ମୋର ପ୍ରବଣତା ଓ ମୃତ୍ୟୁ କାଳରେ 'ହରେକୃଷ୍ଣ' ନ କହି 'ପରୋମା' ବୋଲି ଶେଷ ଶବ୍ଦ ଉଚ୍ଚାରଣ କରି ଆଖି ବୁଜିବାର ଆଶାରେ ରହିଲି । ପ୍ରେମ ଠାରୁ ଦୁନିଆରେ ଆଉ ମହନୀୟ ଅନୁଭୂତି କଣ କିଲୋ ପରୋମା !

(୧୯୮୪)



# ଲୋକଟି ଗଳ୍ପଟିଏ ହେଇଗଲା

ଭା ଇନା ଚାଲିଗଲେ । ବିରାଟ ଅନୁଷ୍ଠାନ, ସ୍ତ୍ରୀ-ପୁତ୍ର, ନାତି-ନାତୁଣୀ, ବନ୍ଧୁ ସ୍ତାବକ ମୋହ ତୁଟାଇ ଗତକାଲି ରାତି ୪ଟା ୩୦ମିନିଟ୍‌ରେ କାହାକୁ କିଛି ନକହି ଚୁପ୍‌ଚାପ୍ ଶୋଇଗଲେ ଯେ ସକାଳୁ ଚାକର ରାମେୟା ଚା' ନେଇ ଜାଣିଲା- ବାବୁ ଆଉ ନାହାନ୍ତି । ସମ୍ବାଦ ବ୍ୟାପିଗଲା ଏବଂ ସମସ୍ତେ କହିଲେ ରସିକ ପୁରୁଷ କୃଷ୍ଣ ଅଂଶୀ ବ୍ରାହ୍ମମୁହୂର୍ତ୍ତ ନେଲା । ଆଜି ଦିନ ଦୁଇଟା ସୁଦ୍ଧା ସହିଦ୍ ନଗର ଶ୍ମଶାନରେ ବହୁ ବନ୍ଧୁବର୍ଗଙ୍କ ଉପସ୍ଥିତିରେ ତାଙ୍କର ଶବସତ୍କାର କରାଗଲା । ତାଙ୍କ ଶେଷଇଚ୍ଛାକୁ ପୂରଣ କଲେବି ଅନୁଗତ ବନ୍ଧୁମାନେ – ମୁଖାଗ୍ନି ପରିବର୍ତ୍ତେ ମୁହଁରେ ଗୋଟିଏ ନିବ୍ ମେକ୍‌ଡ୍ବଲ୍ ହୁଇସ୍କି ଓ ଇମ୍ପୋର୍ଟେଡ୍ ସିଗ୍ରେଟ୍ ସହିତ ତାଙ୍କର ଚିତାଗ୍ନି ସଂଯୋଗ କରାଗଲା, ଏହାଥିଲା ସେ ଦିନ ସନ୍ଧ୍ୟାରେ ମୋ ପାଇଁ ଏକ ବାର୍ତ୍ତା ଜଣେ ବନ୍ଧୁଙ୍କଠାରୁ ।

ମୁଁ କିଛି ସମୟ ଠିଆ ହୋଇଗଲି । ମୋର କର୍ତ୍ତବ୍ୟ କ'ଣ ! ସେ ମରିବା ଅବସ୍ଥାକୁ ଆସିଯାଇ ଥିଲା- ଆଜି ବା କାଲି ମରିଥାନ୍ତା । ପାଖରେ ଉପସ୍ଥିତ ଥିଲେ ଭାବପ୍ରବଣ ମନ ରୁଦ୍ଧ ହୋଇଯାଇଥାନ୍ତା ଓ କେଇଠୋପା ଲୁହ ଆଖିରୁ ଗଡ଼ିଯାଇଥାନ୍ତା । ତା'ଠାରୁ ଅଧିକ କିଛି ହେଇନଥାନ୍ତା ଓ ସମସ୍ତଙ୍କ ସହିତ କିଛି ସମୟ ନିରବରେ ବସି ମୁଁ ଉଠି ଆସିଥାନ୍ତି ବସ୍ ଧରିବାକୁ ।

ସେ ବଞ୍ଚିଥିଲା ବେଳେ, ତା ସହିତ ମୋ ସ୍ୱାର୍ଥ ଜଡ଼ିତ ଥିଲା । ସେ ମରିଗଲା, ମୋର ସମ୍ପର୍କ ତୁଟିଗଲା । ଆଉ କଣ ! ନା ତା ସଂସାର ଚଳାଇବି, ନାଁ ତା ବିରାଟ

ଅନୁଷ୍ଠାନକୁ ଚଳାଇବା ପାଇଁ ଲୋକ ଦେଖାଣିଆ କିଛି ବାହାନା କରିବି । ମୁଁ କିଛି କରିପାରିବି ନାହିଁ, କେବଳ ତା କଥା ଚିନ୍ତା କରିବି, କାରଣ ତା ପାଖରେ ଖଣ୍ଡିଏ କୁହୁକ କାଠି ଥିଲା; ତମକୁ ଠିକ୍ ଚିହ୍ନିଲା ପରେ ସେଇ ଖଣ୍ଡକୁ ତୁମ ମୁଣ୍ଡରେ ଛୁଆଁଇ ଦେଲେ ତମକୁ ଅନେକ ଲୋକ ଚିହ୍ନିବେ ଓ ସ୍ୱୀକୃତି ଦେବେ । ସେଇଟି ଥିଲା ତା'ର ବିଶେଷତ୍ୱ ଓ ତା କୁହୁକ କାଠି ଯାହା ମୁଣ୍ଡକୁ ସ୍ପର୍ଶ କରିଛି, ସେ ବଞ୍ଚିଥିବା ପର୍ଯ୍ୟନ୍ତ ତାକୁ ସ୍ମରଣ କରିବାକୁ ବାଧ୍ୟ ।

ସେ ଅସାଧାରଣ ଥିଲା ଯଦିଓ ତା ପାଠ ଘୋଡ଼ା ଲେଶନ ପାଖରେ ଠୁକୁଲ୍ ।

ପାରମ୍ପରିକ ରୀତିରେ ତା'ର କର୍ମ ମାନ ହେଲା । ନିମନ୍ତ୍ରଣ ଥିଲା ସବୁ କର୍ମ ଯୋଗଦେବାକୁ- କାରଣ ସେ ଓଡ଼ିଶାର ବୁଦ୍ଧିଜୀବୀଙ୍କୁ ନେଇ ଗୋଟିଏ ବିରାଟ ପରିବାର ଗଢ଼ିଥିଲା ; କହିବା ବାହୁଲ୍ୟ ସେ ପରିବାରର ମୁଁ ବି ଜଣେ ଅନାମଧେୟ ସଭ୍ୟ । ତେଣୁ ମୋର ଯିବାର କଥା । କିନ୍ତୁ କଣ ସେ ଲୌକିକତାର ମୂଲ୍ୟ । ସମୟ ତ ଜନସଂଖ୍ୟା ସହିତ ଦୁଃଖମାନଙ୍କର ସଂଖ୍ୟାକୁ ଏତେ ବେଶି ବଢ଼ାଇ ଦେଇଛି ଯେ ଶନିଗ୍ରହ ହନୁମାନ ମୁଣ୍ଡକୁ ଭାରିକଲା ପରି ଦୁଃଖମାନେ ମଣିଷକୁ ଅସ୍ତବ୍ୟସ୍ତ କରୁଛନ୍ତି । ସେଥିରେ ଆଉ ଗୋଟିଏ ଦୁଃଖର ବିରାଟ ବୋଝକୁ ଜାଣୁ ଜାଣୁ ମୁଣ୍ଡକୁ ଟେକି ଆଣିବିନା ! କଣ ଅନୁଭବ କରିଥାନ୍ତି ସେଠି- ସେ ବିରାଟ ଅନୁଷ୍ଠାନଟି ସେଠାରେ ଥିବ, ଅଗଣାରେ ଫୁଲମାନେ ଫୁଟିଥିବେ, କୁଣ୍ଡରେ ଡ଼େକୋରେଟିଭ ଗଛ ମାନେ ଥିବେ, ରାମେୟା, ମାଳି ଅନ୍ୟାନ୍ୟ କର୍ମଚାରୀ ଟହଲ ମାରୁଥିବେ । କିନ୍ତୁ ନାଁ ଧୋବଧାଉଳିଆ କୋଠାରେ ଚୂନଥିବ, ଫୁଲରେ ବାସ୍ନା ଥିବ । ଗଛ ମାନଙ୍କରେ ସବୁଜିମା ଥବ ଆଉ ସେ ଲୋକମାନଙ୍କ ମୁହଁରେ ମୃଦୁ ହସ ଥିବ- ବାବୁ ଅଫିସ୍‌ରେ ସ୍ମୃତିଚାରଣ କରୁଥିବେ ଏବଂ ତା ଚେୟାରଟି ଖାଲି ପଡ଼ିଥିବ । ସେଠି ବସି ନଥିବ ଶୁଭ୍ର ଖଦଡ଼ ପରିହିତ ସାବନା ଦରଦୀ ମଣିଷଟିଏ ଯିଏ ଦୁଃଖର ଗୁରୁମାନଙ୍କୁ ଦେହରେ ଭେଦାଇ ସ୍ମିତ ହସରେ କହୁଥିବ- ଆଉ ଟିକେ ବସନ୍ତୁ କଣ କରିବ ଯାଇ । କଠାଏ ବିଡ଼ି, ଉଇଲ୍‌ସ ପ୍ୟାକେଟ୍ ଓ ଚା' କପ୍ ମାନେ ସେ ବିରାଟ ଟେବୁଲ୍‌ଟିକୁ ଆବୋରି ନଥିବେ ଆଉ ମୁଁ ସ୍ୱାର୍ଥାନ୍ୱେଷୀ ମଣିଷଟି ସେ ଧାରା ସହିତ ଏମିତି ନିଜକୁ ଜଡ଼େଇ ଦେଇଥିଲି ଯେ ଆଜି ହୁଏତ ସେ ପରିବେଶଟା ଖାପଛଡ଼ା ଲାଗିଥାନ୍ତା ମୋତେ । ସେ ପାଇଁ ଏ ଦୂରରେ ରହି ତାରି କଥାଇ କେବଳ ଭାବୁଥିଲି- କେମିତି ଚୁମ୍ବକୀୟ ମଣିଷଟିଏ ଥିଲା ସେ; ସମସ୍ତଙ୍କୁ ଟାଣି ନେଉଥିଲା ତା'ପାଖକୁ ଦୁଇପଦ କଥା ଓ ମୁରୁକୁନ୍ଦିଆ ହସରେ ।

ଆଜକୁ ପ୍ରାୟ ପଚିଶ ତିରିଶ ବର୍ଷ ତଳର କଥା । ଭୁବନେଶ୍ୱର ଖାରବେଳ ନଗରରେ ମୁଁ ମୋର କେତେକ ବନ୍ଧୁଙ୍କ ସହିତ ରହୁଥାଏ । ଦିନେ ସକାଳୁ ସକାଳୁ ରାସ୍ତାରେ ଟହଲ ମାରୁଥାଏ- ଦେଖିଲି ସେଇ ଲୋକଟିକୁ - ଧଳା ଖଦଡ଼ ଧୋତି - ପଞ୍ଜାବି, ଆଖିରେ ଚଷମା, ବାଁ ହାତରେ କୁଞ୍ଚକାନୀ ଓ ଡ଼ାହାଣ ହାତରେ ସିଗ୍ରେଟ୍ ଖଣ୍ଡି । ଲୋକଟା କେମିତି ଦାମୀ ଲାଗୁଥାଏ । ସେ ମୋତେ ଏମିତି ସମ୍ମୋହିତ କରିଦେଲା ଯେ ମୁଁ ସେମିତି ଠିଆହୋଇ ତାକୁ ଚାହିଁଥାଏ । ସେ ମୋ ପାଖରେ ଅଟକିଗଲା ଏବଂ ମୋର ସମସ୍ତ ପରିଚୟ ନେଇ ଚାଲିଗଲା । ଗଲାବେଳେ ହସିଦେଇ କହିଲା- ଦେଖା ହେବ ନିଶ୍ଚୟ । ମୁଁ ଆଶ୍ଚର୍ଯ୍ୟ ହେଲି - ଭୁବନେଶ୍ୱରରେ ରହିବା ପରଠୁଁ ଏମିତି ଏକ ବ୍ୟକ୍ତିତ୍ୱ ସମ୍ପର୍କରେ ମୁଁ କେବେ ଆସିନଥିଲି ଓ ପ୍ରଥମ ଦେଖାରେ ଅଜଣା ଥିବା ସତ୍ତ୍ୱେ ଏମିତି ପଦେ କଥା ବି ଶୁଣି ନଥିଲି । ମୋ ଅଜଣାରେ ସେଇ ଦିନଠାରୁ ସେ ଲୋକଟି ପ୍ରତି ମୁଁ ଆସକ୍ତ ହେଇ ପଡ଼ିଲି ଓ ପ୍ରାୟ ମୁଁ ଠିକ୍ ସେଇ ସମୟରେ ଲୋକଟିକୁ ଦେଖା କରିବାକୁ ଅପେକ୍ଷା କରେ । ତାକୁ ଦେଖିଲା ପରେ ନମସ୍କାରଟେ କରେ ଓ ସେ ହସିଦେଇ ହାତ ହଲାଇ ଚାଲିଯାଏ ।

ପରେ ଜଣେ ବନ୍ଧୁଙ୍କଠାରୁ ଜାଣିଲି ତାଙ୍କ ପରିଚୟ । ସେ କୁଆଡ଼େ ଓଡ଼ିଶାର ଏକ ପ୍ରସିଦ୍ଧ ସମ୍ବାଦପତ୍ରର ମ୍ୟାନେଜର ଥିଲେ ଓ ନିଜେ କିଛି ସ୍ୱାଧୀନ ଭାବରେ କରିବା ପାଇଁ ଭୁବନେଶ୍ୱରରେ ପ୍ରେସ୍ ଖଣ୍ଡିଏ କରିଛନ୍ତି । ସେ ସାହିତ୍ୟିକ ବନ୍ଧୁ ଜଣକ ଏଇ ପରିଚୟ ସହିତ ତାଙ୍କ ଜୀବନର କିଛି ଚମକପ୍ରଦ ତଥ୍ୟ ମୋତେ ଜଣାଇଲେ- ଦୁଇଖଣ୍ଡ କରିଆ ସହିତ ସେ କଲିକତା ଚାଲିଯାଇଥିଲା ତା ପେଟ ପୋଷିବା ପାଇଁ, ପଞ୍ଚମ ଜର୍ଜ ମୁଣ୍ଡ ଥିବା ଟଙ୍କାତ ଦୂରର କଥା ହନୁମାନ ମାର୍କା ତମ୍ବାପଇସା କେତୋଟି ମଧ୍ୟ ତା ପାଖରେ ନଥିଲା ସେତେବେଳେ । ପ୍ରବାସୀ ଓଡ଼ିଆଙ୍କ ସାହାଯ୍ୟରେ ବଞ୍ଚିଗଲା କିଛି ଦିନ - ସେମାନଙ୍କୁ ଚା' ଦିଏ, ବୋଲହାକ କରେ... ଏମିତି ଏମିତି କାନ୍ଥବାଡ଼ରେ ପୋଷ୍ଟର ମାରୁ ମାରୁ ଗୋଟିଏ ପୁରୁଣା ଟ୍ରେଡ଼ଲ୍ ମେସିନ୍ ବାକିକାଳିରେ କିଣି ପୋଷ୍ଟର ଛାପିଲା, ବ୍ରାହ୍ମଣ ପିଲା, ମୁଣ୍ଡରେ ବୁଦ୍ଧି ଥିଲା, ଉଠିଲା ଯେ କ୍ରମେ ଆଉ ପଛକୁ ଚାହିଁନାହିଁ । ପଛକୁ ସେ ଚାହେଁ, ଅତୀତକୁ ରୋମନ୍ଥନ କରେ, ଯେତେବେଳେ ସେ ଅନୁଭବ କରେ ଅହଂକାର ହେଣ୍ତାଳ ମାରୁଛି ତା ଅଗଣାରେ ବସି- ଠିକ୍ ସେତିକିବେଳେ । ତା ଉଠିବାର ଉଦ୍ୟମ ଦେଖି ଓଡ଼ିଶାରୁ ଆରମ୍ଭ କରି ବଙ୍ଗଳାର କେତେକ ନେତାବି ତା ଅଣ୍ଟାରେ ହାତ ଠେସ୍ ଦେଇଛନ୍ତି ତାକୁ ପ୍ରତିଷ୍ଠିତ ହେବାକୁ । ଶେଷରେ

ସେ ଖଣ୍ଡିଏ ପତ୍ରିକା ବାହାର କଲା ଏବଂ ଆଜି ଆମର ଅନେକ ଆଗଧାଡ଼ିର ଲେଖକ ତା ପତ୍ରିକାରୁ ସୃଷ୍ଟି ବୋଲି ହସି ହସି ସେ କହେ ସମୟରେ ।

ଦିନେ ସେଇ ବନ୍ଧୁଙ୍କ ସହିତ ତାଙ୍କ ପ୍ରେସ୍‌ରେ ତାଙ୍କୁ ଭେଟିବାକୁ ସୁଯୋଗ ମିଳିଲା । ସେ ପତ୍ରିକାଟିକୁ ଦୀର୍ଘଦିନ ପରେ ଭୁବନେଶ୍ୱରରୁ ପ୍ରକାଶ କରିବାକୁ ଉଦ୍ୟମ କରୁଥାନ୍ତି ପୂଜା ଅବସରରେ । ବନ୍ଧୁଙ୍କ ନିର୍ଦ୍ଦେଶରେ କାକୁସ୍ଥ ହେଇ ଲେଖାଟି ଦେଲି ଓ ମୋ ହାତରୁ ନେଇ ଦି' ଚାରି ପୃଷ୍ଠା ଓଲଟାଇ ଦେଇ ସାମ୍ନାରେ ଥୋଇଦେଲା । ମୁଁ ଆଶଙ୍କାରେ ଅପେକ୍ଷା କଲି କ'ଣ କହିବ ଲୋକଟି । ଚା ଖାଇ ସାରିଲା ପରେ କହିଲା- ବେଶ୍ ଚମତ୍କାର... ଲେଖ... ଲେଖ.. ଆରେ ଏ ପତ୍ରିକା ତମମାନଙ୍କର - ମୁଁ ନାମକୁ ମାତ୍ର... ଶଳା ଲେଖକ ପତ୍ରିକାକୁ ଯଦି ନିଜର ନଭାବିଲା, ସମ୍ପାଦକ ହେଇ କେହି ପତ୍ରିକା ଚଳେଇବ ନାଁ ସେ ପତ୍ରିକାର ଜୀବନ ରହିବ । ଠିକ୍ ସେତିକି ବେଳକୁ ଆଉ କେତେକ ପ୍ରତିଷ୍ଠିତ ଲେଖକ ସେଠାରେ ପହଞ୍ଚିଗଲେ ।

ମୁଁ ସଂକୁଚିତ ହେଲି । କାରଣ ସେମାନଙ୍କ ଉପସ୍ଥିତିରେ ମୁଁ ନିଜକୁ କେମିତି ଛୋଟ ମନେକଲି । ଏତେ ଧୂର୍ତ୍ତ ଲୋକଟି, ସେ ଠଉରେଇନେଲା ମୋ ମନର ଅବସ୍ଥା ଏବଂ ଆରମ୍ଭ କରିଦେଲା ସେ ସ୍ୱାଭାବିକ ଧାରାର କଥା- ବୁଝିଲି ଯେତେ ଅଡୁଆ ଲାଗୁଛି । ଆରେ ଲେଖକ ଲେଖକ... ଅଭିଜ୍ଞତା ନେଇ କିଏ ପ୍ରବୀଣ କିଏ କଞ୍ଚା, ପରିଚୟ ବାବା ଗୋଟିଏ - 'ଲେଖକ' । ଡ଼ରିଯାଉଛୁ କାହିଁକି ? ହଇହୋ ସାମଲ ବାବୁ ମୋ କଥା ତାକୁ କହିଛଟି... ଶୂନ୍‌ରୁ ଆରମ୍ଭ ବାବୁ ! ତୁ ହବୁ ଏଇ ମାନଙ୍କ ପରି - କହି ସେମାନଙ୍କ ସହିତ ମୋର ପରିଚୟ କରାଇ ଦେଲା ।

କେଡ଼େ ଅଦ୍ଭୁତ ସେ ଲୋକଟି, କି ଶକ୍ତି ତା କଥାରେ...କଥାରେ ମହାପ୍ରସାଦରେ ବଡ଼ରୁ ସାନ ସଭିଙ୍କୁ ଗୋଟିଏ ଧାଡ଼ିରେ ବସାଇ ଦେବାର କିମିଆ ଥିଲା ତା ପାଖରେ । ଅମୁକ ବାବୁ ନମସ୍କାର କହି ଉଠିଲି । ସେ ମାଡ଼ି ବସିଲା... ବାବୁ ଫାବୁ ନୁହେଁ ଭାଇନା... ଭାଇନାଁ... ବାସ୍ତବରେ ପରେ ମୁଁ ଅନୁଭବ କରିଛି ସେ ଜଣେ ସାର୍ବଜନୀନ ଭାଇନା ।

ଫେରିଲା ବେଳେ ଭାବୁଥିଲି ସାହିତ୍ୟ ଓ ଭାଷଣର କଥା- ଜୀବନରେ ସଂଗ୍ରାମ ନାହିଁ ତ ଜୀବନରେ ସ୍ୱାଦ ନାହିଁ । ତଙ୍କୁ ସାକ୍ଷାତ କରି, ତାଙ୍କ ବିଷୟରେ ଜାଣି ସିଦ୍ଧାନ୍ତରେ ପହଞ୍ଚିଲି ଏଇ କଥାଟି ତାଙ୍କରି ଜୀବନରେ କେବଳ ବୋଧହୁଏ ପ୍ରତିଫଳିତ ।

ସେଇ ଭାଇନା ଆମକୁ ନିଃସ୍ୱ କରି ଚାଲିଗଲା । ତା ମହାଯାତ୍ରାରେ ।

ଠିକ୍ କଲି ଭାଇନାର ଅବର୍ତ୍ତମାନରେ ତା ଅନୁଷ୍ଠାନଟିକୁ ଦେଖିବି ଓ ଅନୁଭବ କରିବି । କାରଣ ମୁଁ ଜାଣିଛି ତା ପାର୍ଥୀବ ଶରୀର ସେ ଅନୁଷ୍ଠାନଟିକୁ ଛାଡ଼ି ଚାଲି ଯାଇଥିଲେ ବି ତା ସୂକ୍ଷ୍ମ ଆତ୍ମା ନିଶ୍ଚୟ ସେ ପରିବେଶରେ ଘୁରିବୁଲୁଥିବ; କାରଣ ଅନୁଷ୍ଠାନଟି ତା'ର ସ୍ୱପ୍ନ ଓ ଜୀବନ । ଅନୁଷ୍ଠାନଟିରେ ପାଦ ଦେଇ ତା ଆତ୍ମାକୁ ଅନ୍ତତଃ ଅନ୍ତରରେ ଅନୁଭବ କରିପାରିବି ।

ଠିକ୍ ରାତି ସାତଟାରେ ପହଞ୍ଚିଗଲି । ନିସ୍ତବ୍ଧ ପରିବେଶ । ଲୋକବାକ ଚଳପ୍ରଚଳ ଅଥଚ୍ ଚୁପ୍‌ଚାପ୍ ଅନ୍ନବସର ସମୟରେ ଶ୍ରୀମନ୍ଦିର ପରିବେଶ ପରି । ଅନୁଷ୍ଠାନଟିରେ ବୁଲି ଆସି ବଗିଚାର ଗୋଟିଏ ଅନ୍ଧାରିଆ ସ୍ଥାନରେ ଠିଆ ହେଇଛି । ଅନୁଷ୍ଠାନର ପୁରାତନ କର୍ମଚାରୀ ବ୍ୟବସାୟୀ ଲୋକ ସରୋଜ ମୋ ହାତରେ କିଛି ଜିନିଷ ଟେକି ଦେଲା- ବାବୁ ଆପଣଙ୍କ ପାଇଁ ଛାଡ଼ି ଯାଇଛନ୍ତି । ଦେଖିଲି ପରିଷ୍କାର ତାଳପତ୍ର ଖେଦାଟିଏ ଲେଖନୀ ସହିତ । ମୋର ମନେହେଲା ଭାଇନା ଥିଲା ଦ୍ୱିତୀୟ ସାରଳା ଦାସ ମୂର୍ଖ ପଣ୍ଡିତ– ତା କଣ୍ଠରେ ସାରଳା ମା ବସି ଏମିତି ଏକ ଅନୁଷ୍ଠାନ ପାଇଁ ତାକୁ ପ୍ରେରଣା ଦେଇଛନ୍ତି ଯାହା ମୁଖ୍ୟତଃ ସାହିତ୍ୟ ପାଇଁ ଉଦ୍ଦିଷ୍ଟ କେବଳ ।

(୧୯୯୩)



# ଏକ୍କା ଏକ୍କା ବନବାସ

କେମିତି ଭୁଲିବି କୁହ ! ହେ ସଖା, ପ୍ରୟିଜନ, ଦୀର୍ଘ ଦିନର ରହି ଆସିଥିବା ଅଭେଦ ପ୍ରୀତିକୁ ଚନ୍ଦ୍ର ଓ କୁମୁଦର ଦୂରତା ଯେତେ ଯୋଜନ ହେଉ ବରଂ । ସମୟ ବହିଯିବ ଖରସ୍ରୋତାର କେରୁଆ ରଙ୍ଗର ଜଳରାଶି ପରି, ଅଥଚ ତା କୂଳର ବାଲୁକାରାଶିର ପାଦଚିହ୍ନ, ଝଙ୍କା ବରଗଛ ଓ ଶିବ ମନ୍ଦିର । ଏ ସବୁ ହୁଏତ ଅବଲୀଳା କ୍ରମେ ନିଜର ସତ୍ତା ହରାଇ ପାରନ୍ତି ! କିନ୍ତୁ ହେ ସଖା, ପ୍ରିୟଜନ ମୋ ମନର ମାନଚିତ୍ରରୁ କିଏ ବା ତମମାନଙ୍କୁ ପୋଛିନେବ ମୋ ପ୍ରିୟତମ ମୃତ୍ୟୁ ତା କୋଳକୁ ମୋତେ ନ ନେବା ପର୍ଯ୍ୟନ୍ତ । କେମିତି ଭୁଲିବି କୁହ ତମର ହସ ଓ ତାତ୍ସଲ୍ୟକୁ, ପ୍ରଶଂସା ଓ ଧୀକ୍କାରକୁ, କୋଳାକୋଳି ଓ ବ୍ୟାଘ୍ର ନଖଙ୍କୁ, ପୁଣି ଦେଇ ଦେଇ ରିକ୍ତ ହସ୍ତରେ ରାତ୍ରିର ଦ୍ୱିତୀୟ ପ୍ରହରରେ ଫୋନ , କଲ୍ ର ରେ ରେ କାର୍ ଆହ୍ୱାନ ମାନଙ୍କୁ । ଏସବୁ ମୋ ଅବଶିଷ୍ଟ ଜୀବନର ମୂଲ୍ୟବାନ ସମ୍ପତ୍ତି, ମହାର୍ଘ ଅନୁଭୂତିମାନ ।

ଆଜି ନଭେମ୍ବର ଦଶ ତାରିଖ ସନ ସତାନବେ । ଇରିଗେସନ ବଂଲୋର ବାରଣ୍ଡାରେ ଶୋଇ ରହିଛି ଏକ ଇଜି ଚେୟାରରେ । ଆର କୂଳରେ ଗୋବିନ୍ଦପୁର ଗାଁ । ଶିବ ମନ୍ଦିର ପଞ୍ଚୁକର କୋଳାହଳ: ବାଦୀପାଲା ସଂକୀର୍ତ୍ତନ ଭଜନ ସମାରୋହ ମଧ୍ୟରେ । ଐଶ୍ୱର୍ଯ୍ୟର ମୁକୁଟ ପିନ୍ଧି ବୃନ୍ଦାବନର ସୀମାକୁ ଛୁଇଁଲି ସିନା, ହେଲେ କେମିତି ଭୁଲିବି କୁହ ଗୋପର ସେ ନିମ୍ବଗଛ (ଧରାଯାଉ କଦମ୍ବବି) ଏଲ୍ଏମ୍ଏଲ୍ ଭେସ୍ପାକୁ, ଡ଼ିସେଣ୍ଟ ଟେଲରକୁ, ବାବୁର ଛାବୁଲା କାଚ ଗ୍ଲାସ୍‌ର ଚା'କୁ, ରିମେଡ଼ିକାର ସ୍ନେହକୁ,

ନର୍ସିଂହୋମ୍‌ର ମୁହଁମାନଙ୍କୁ, 'ଏ ଶାନ୍ତି ଓଟି ବନ୍ଦ କର', 'ହେ ଜଗବନ୍ଧୁ କୁଆଡ଼େ ଗଲୁ' ଶବ୍ଦମାନଙ୍କୁ । ପୁଣି ତୀର୍ଯ୍ୟକ ଦୃଷ୍ଟି କହୁଥିବ- ହାଏ ହାଏ ଗୋପରେ ରହିବାକୁ ଏତେ ରଙ୍କ ହେଉଥିଲୁରେ ବାୟା, ଶେଷରେ ବୃନ୍ଦାବନ ଗଲୁ ଗୋପୀମାନଙ୍କର ନିଷ୍କାମ ପ୍ରେମକୁ ଭୁଲି !

ଏମିତି ଏମିତି କେତେ କଥା, ଦୃଶ୍ୟ, ଆନନ୍ଦ ଓ ଅନୁଶୋଚନା ଠିକ୍ ଓ ଭୁଲର, ମଣିଷପଣିଆ ଓ ଅମାନୁଷିକତାର ସଂଘର୍ଷର ଅବାରିତ ସ୍ମୃତିର ସ୍ରୋତ... ହଠାତ୍ ବାଧା ସୃଷ୍ଟିକଲା କିଛି ଅସଂଯତ ସଂଳାପ ଓ ତିନୋଟି ଛାଇ ମଣିଷଙ୍କ କଥାବାର୍ତ୍ତା ।

ଖରସ୍ରୋତା ଉପରେ ଆସନ୍ନ ପୂର୍ଣ୍ଣମୀର ଜହ୍ନ । କୁହୁଡ଼ିଆ, କୁହୁଡ଼ିଆ ଗୋବିନ୍ଦପୁର ଗାଁ, ଏ ପଟ ବନ୍ଧ ଉପରୁ ଛାଇ ମଣିଷ ତିନୋଟି ଗଡ଼ୁଥିଲେ ବଂଲୋର ଗେଟ୍ ଆଡ଼େ । ମୁଁ ବାରଣ୍ଡାର ଲାଇଟ୍ ବନ୍ଦ କଲି ନିଜକୁ ଗୋପନ ରଖି ସେମାନଙ୍କ ନଙ୍ଗଳା କଥା ଗୁଡ଼ିକୁ ଉପଭୋଗ କରିବାକୁ ଅକ୍ତିଆରରୁ ଖସି ଆସିଥିବା ତୋଟାମାଳର ଚାହାଳୀ ପିଲାଙ୍କ ପରି । ଚକରା ନାମକ ଲୋକଟି ଅନ୍ୟ ଦୁଇ ଜଣଙ୍କୁ ଦବେଇ ଦେଇଥିଲା ତା ଉଚ୍ଚ ସ୍ୱରରେ.. ହଇହେ ଭାଟି ଅଛି, ମୁଁ ଭାଟି ମାଲିକ- ପୋଷାକ ଖାକୀର ହାପ୍ ପେଣ୍ଟ ସାର୍ଟ, ଅଣ୍ଟାରେ ଗାମୁଛା, ହାତରେ ଦୁଇ ଅଢ଼େଇ ଫୁଟିଆ ଠେଙ୍ଗାଟିଏ । ମୋ ସାଙ୍ଗରେ ମାଂସ ଖାଇ ପାରିବ ଖାଣ୍ଟି କିଲୋଟିଏ... ଭାତ ନାହିଁ । ମାଂସରେ ଦୁଇ ଚାରିଟା ଆଳୁ... ବେଶ୍ ଭାତର କାମ ଦେଲା । ମାଂସ... ଦିଖଣ୍ଡ ମାଂସ, ଦି ଢ଼ୋକ ମାଲ୍, ଦି ଖଣ୍ଡ ଦି ଢ଼ୋକ, ଦି ଖଣ୍ଡ ଦି ଢ଼ୋକ... ବାସ୍ ବୋତଲ ଶୂନ୍‌କୁ ଥାଳୀ ଶୂନ୍ । ଶଳା ଅଣ୍ଡିରା ପିଲା ତମ ପିତ୍ତ କେତେ ମତେ ଜଣା । ଆରେ ସେଇଠୁ ବାହାରିବ ତତ୍ତ୍ୱ... ଶଳା ଭାଣ୍ଡ ଦୁନିଆ ଗୋଲ ହେଇଯିବ କୁଆଡ଼େ, ହଜିଯିବେ ଚୋର ଡ଼କାଏତ୍ ଧପ୍‌ପାବାଜ, ଧାଡ଼ିବାନ୍ଧି ଆଗକୁ ବାହାରି ଆସିବେ ନିଛକ ସତ୍ ମଣିଷଗୁଡ଼ାକ... ରାମାୟଣ ଭରତ ମୁନୀରଷି ରତ୍ନାକରରୁ ବାଲ୍ମିକୀ... ଜାଣିଛ-ରାମ କଣନା ମରା, ଦୋହରାଅ ଦୋହରାଅ କେମିତି ବଦଳି ଯିବ ଅର୍ଥ । ନିଶ୍ୱାସ ପ୍ରଶ୍ୱାସରେ ମିଶିଯିବ... ଡ଼ାହାଣ ପୁଡ଼ାରେ ଭିତରକୁ ଯିବ 'ରା' ବାଁ ପୁଡ଼ାରେ ବାହାରିବ 'ମ'- ସେ ସମାନ 'ରାମ' କରିଚ ପାର୍ଟିସ୍... ଭାରିକଷ୍ଟ-ପ୍ରଗଲ୍‌ଭ ଭାବରେ ଗପୁଥିଲା ଚକରା କିଛି ଠିକଣା ନ ଥିଲା । ଅନ୍ୟ ଦୁଇଜଣ ମଜା କରୁଥିଲେ ଓ ମଝିରେ ମଝିରେ ଛିଗୁଲେଇ ଥିଲେ ବି ଚକରାକୁ ।

ଚକରା ଏକ ବାଗିଆ, ଖାତିର ନ ଥିଲା ପେଲି ଯାଉଥିଲା ନିଜ ବାଗରେ... ଖାଇବ କଣ ସବୁବେଳେ- ତମେ କଣ ଛେଳି, ମଣିଷ ପରା... ମିଳିଲା ବେଶ୍ ଖାଇଲ

ଭଲକରି ନ ହେଲାତ ଚାଲିଗଲା ପାଞ୍ଚଦିନ । ହେଲେ ଚକରା ଆମ୍ଭା ଚିହ୍ନିଚି... ଆବେ ଦେଖିବ ଚାଲ ଘରେ କୁକୁର ଛୁଆ ବିଲେଇ ଛୁଆ କେତେ... ତାଙ୍କୁ କିଏ ପୋଷିବ, ମଣିଷ ପରି ସେଗୁଡ଼ାକର ବାପା ମା' ଅଛନ୍ତି । ଋତୁ ବଦଳିଲା ତ ନୂଆ ବାପା । ରୋଜଗାର କରେ ଦୁଧ ଆଣେ ତାଙ୍କ ପେଇଁ... ବାବା ଆଖଣ୍ଡଳମଣିଙ୍କୁ ଡ଼ାକେ ମତେ ବାହା କରିବୁନି (ଅବଶ୍ୟ ଚକରା ବାହା ହେବାର ସମ୍ଭାବନା ଥିଲା ପରି ମନେ ହେଉ ନଥିଲା ।) ଯଦି କରୁ ପିଲାପିଲି ମୁହଁ ଦେଖାଇବୁନି । ସେ ଗମ୍ଭୀର ହେଲା ସ୍ୱରରେ ଧାମାନ୍ୟ ଆଦ୍ରତା... କୁକୁର ଖୁଃ ଖୁଃ ହେଲା ପରି ଦୁଇଥର ମୁହଁ ଝାଡ଼ିଦେଲା ହୁଃ... ହୁଃ । ମୁଁ ଦୋଷୀ ଜାଇଁଥିଲି ଆଖି ଫିଟି ନଥିଲା ତିନୋଟି ବିଲେଇ ଛୁଆଙ୍କର ! ଅଧ କିଲେ ଦୁଧ ନାଗୁଆ କରିଥିଲି ତାଙ୍କ ପେଇଁ... କାଳୀଭାଇ ! ଦୁଧ ପିଇ ପିଇ ମରିଗଲେରେ ମରିଗଲେ... (କିଛି ସମୟ ନୀରବ ରହିଲା ଚକରା ମୁହଁ ତଳକୁ କରି) ମଣିଷ ପିଲାତ ଆହୁରି ସୁକୁମାରିଆ, ଜନ୍ମ କରିକି ମାରିବି ! ବାପା ନ ହେଲେ ! ଦରକାର ନାହିଁ ବାହାଘର । ସେମାନଙ୍କ ଭିତରେ ଜଣେ କହୁଥିଲା, ଝିଅଙ୍କୁ ଦେଖିଲେ ତତେତ ସାଁ ବାଲୁଆ ପରିକା ଲାଗେ ତୁ କଣ ବାହା ହେବୁବେ ! ସେଇତ କଥା, ଚକରା କହିଲା- ମାୟା ମାୟା... ମଜ୍ଜିଗଲୁତ ମଲୁ, ଘନେଇଲା ବିପଦ ଜାଣ ଏକ ଦୁଇ ତିନି ଚାରି... ନାଁ ସମାଳିବୁ ଇନ୍ଦ୍ରି, ନାଁ ମଣିଷମାନଙ୍କର ସହିତ, ବାକୀ ଯାହା ରହିଲା ସଂପ୍ରତି ମୁଁ, ମୋର ସତ୍ତା ଏବଂ ବନ୍ଧୁବର୍ଗ, ତମମାନଙ୍କର ମୁହଁ ଓ ଗୋବିନ୍ଦପୁର ଗାଁର କାର୍ତ୍ତିକ ପୂର୍ଣ୍ଣିମା କୋଳାହଳ ।

ଖରସ୍ରୋତା ବନ୍ଧ ଉପରକୁ ଉଠିଲା... ଖୋଲା ଜହ୍ନ ଆଲୁଅ କୁହୁଡ଼ିଆ ଓ ଚକରାର ସମସ୍ତ କଥା ମଧ୍ୟରୁ ଗୋଟିଏ ଶବ୍ଦ 'ରାମ' 'ରା' ଯେ ରାଧାକୁ ଘେନିବ, 'ମ' ଯେ କୃଷ୍ଣ ବୋଲାଇବର ତତ୍ତ୍ୱ ନୁହଁ  ବୋଧହୁଏ । ଚକରା କହୁଥିଲା ରାମ, ବନବାସର ରାମ କଥା ହୁଏତ । ଚାଲୁ ଚାଲୁ ମନେପଡ଼ିଗଲା ସୁମନ୍ତ (ଝିଅ ହେଇ ପାରେକି) ପାଣିକୋଇଲିରେ ରଥରୁ ଓହ୍ଲାଇ ଦେଲା ମୋତେ ଓ ମୋ ସାମ୍ନାରେ ଅଗ୍ନାଅଗ୍ନି ବନସ୍ତ । ରାମଙ୍କ ପ୍ରସଙ୍ଗ ମନେପଡ଼ି ହସ ଲାଗିଲା- ମର୍ଯ୍ୟାଦାବନ୍ତ ପୁରୁଷୋତ୍ତମ ରାମଚନ୍ଦ୍ର ବନବାସ ତ କଲେ, ପୁଣି ପତ୍ନୀ ସୀତା ଓ ଭାଇ ଲକ୍ଷ୍ମଣ ସହିତ । ସୀତା ଏକୁଟିଆ ହେଇଥିଲେ ବି ଚଳିଥାନ୍ତା ସୁଖ ଦୁଃଖ, ନିଃସଙ୍ଗତା ଓ ପଥପ୍ରାନ୍ତକୁ ହାଲକା କରି ପାରିଥାନ୍ତେ । ହେଲେ ଲକ୍ଷ୍ମଣ ! କେତେ ଅବିବେକୀ ଯୁବକଟିଏ, ଭାଇ ଭାଉଜଙ୍କ ପିଛାଧରୁ ଥିଲେ- ସେମାନଙ୍କର ଘରୋଇ ଜୀବନ ନାହିଁ, ଦାମ୍ପତ୍ୟ ଜୀବନ ନାହିଁ, କଣ ନାଁ ତମେ ଯେଉଁଠି ପତ୍ର ଶେଜ ପାରିବ ଅନତି ଦୂରରେ ମୁଁ ବି ଶେଜ ପାରିବି ଯେହେତୁ ସେବକ ମୁଁ ।

ଯେମିତି କଲିକତା ସହରର ଓଡ଼ିଆ ପରିବାର । ଗୋଟିଏ ଘର ଭିତରେ ଖଣ୍ଡିଏ ଖଣ୍ଡିଏ ମଶାରୀକୁ ନେଇ ସ୍ୱତନ୍ତ୍ର କୋଠରୀର ପରିକଳ୍ପନା ଓ ମଧୁର ଦାମ୍ପତ୍ୟ ଜୀବନ । ନାଁ ରାମଙ୍କୁ କିଛି ଚିନ୍ତା କରିବାକୁ ଦେଲ, ନାଁ ନୀରବ ନିର୍ଜନତାରେ ସୀତାଙ୍କ ସହିତ ଆଳାପ ଉଲ୍ଲାସର ସୁଯୋଗ ଦେଲ । ସବୁଠି ପ୍ରତିବନ୍ଧକ, ସ୍ୱଚ୍ଛନ୍ଦତା ସୀମାବଦ୍ଧ, ଯେମିତି ଏଇ ତମ ମାନଙ୍କର ମୁହଁ ଓ କାର୍ଯ୍ୟାବଳୀ ମୋ ସ୍ମୃତିରେ ଏକା ଏକା ବନବାସର ପରିକଳ୍ପନା ସତ୍ତ୍ୱେ ବି । କଣ ତମର ଇଚ୍ଛା ! ମୋତେ ମୋର 'ମୁଁ' ହେବାକୁ ଦେବନି, ମୋତେ ଖୁସିରେ ମରିବାକୁ ବି ଦେବନି । ମୋତେ ବେଢ଼ି କରି ତମ ପ୍ରବଞ୍ଚନାର 'ଆହା' 'ଆହା' ଶବ୍ଦରେ ମୋତେ କ୍ଷତାକ୍ତ କରିବ ? ତମର ମତଲବ ମୋତେ ଖୋଲି କହୁନା କାହିଁକି ? ମୋତେ ଛାଡ଼ିବାର ଇଚ୍ଛା ନଥିଲା ଯଦି, ମୋତେ ଦହଗଞ୍ଜ କରିବାରେ ଅନୁରକ୍ତ ଇଚ୍ଛାଥିଲା ଯଦି ତମ ସ୍ୱଭାବ ସୁଲଭ ଚାଟୁବାକ୍ୟ ଓ ଠୋ ଠୋ ହସ ଭିତରେ ସେ ନିମ୍ବଗଛରେ ଯୀଶୁଙ୍କ ମୁଦ୍ରାରେ କୃଶବିଦ୍ଧ କରିଦେଲେନି କାହିଁକି ? ଫଳରେ ସବୁ ଯନ୍ତ୍ରଣାକୁ ଆପଣେଇ ନେଇ ମୁଁ ମୋର ସର୍ବଶେଷ ହସଟି ହସି ଦେଇଥାନ୍ତି ତମ ଦାଉରୁ ନିସ୍ତାର ପାଇଲି ବୋଲି ।

ମୁଁ ଜାଣିଛି ଯେ ପର୍ଯ୍ୟନ୍ତ ମୁଁ ମୋର ଶେଷ ବିନ୍ଦୁକୁ ନ ଛୁଇଁଛି ତମେ ମୋତେ ଆବୋରି ରହିଥିବ ମୋ ଚେତନାର ଶୂନ୍ୟତାରେ ବି ।

ଏବେ ମୁଁ ଭାବୁଛି ତମ ଠାରୁ ମୁଁ ମୁକ୍ତି ନେବି ଯେତେବଡ଼ ମହାର୍ଘ ଦାନ ଦେବାକୁ ହେଉ ବରଂ । କାରଣ ମୋ ସ୍ତ୍ରୀ ପାଖରେ ମୁଁ ଛାଡ଼ି ଆସିଲି ମୋ ସୁବର୍ଣ୍ଣ ପ୍ରତିମୂର୍ତ୍ତିକୁ । ମୋ ପିଲାଙ୍କ ପାଖେ ମୋ ସବୁତକ ସ୍ନେହ ଓ ପ୍ରେମକୁ । ତମକୁ କ'ଣ ବା ନ ଦେଲି ! କ'ଣ ଆଉ ଦୁନିଆରେ ଦାମୀ ଥାଇପାରେ ନିଜର ସରଳତା ଓ ମଣିଷ ପଣିଆକୁ ଟେକିଦେଇ ଅନ୍ୟ ହାତରେ ପେଣ୍ଡୁ ପରି ଖେଳିବାକୁ ।

ମୋତେ ଶୁଭିଲାଣି ଅରଣ୍ୟର ସ୍ୱର, ମୃଦୁ ପବନରେ ପାହାଡ଼ ଗୁମ୍ଫାର ଓଁକାର ଧ୍ୱନୀ । ମୁଁ ମୋତେ ଅତିକ୍ରମ କରିବାକୁ ଉଦ୍ୟମ କରୁଛି । ମୋ ପାର୍ଥୀବ ଦୁନିଆ ଛାଡ଼ି ଉପରକୁ ହାତ ଟେକୁଛି ଆୟେନେସ୍କୋଙ୍କ 'ଆମିଦି' ପରି, ଯଦିଓ ପାଦ ଦୁଇଟି ଛୁଇଁଛି ଏଇ ମାଟିକୁ । ମୁଁ କ'ଣ ଶୁଖିଲା ପତ୍ରଟିଏ ହେଉଛି ଯେ ପବନରେ ଉଡ଼ିବୁଲିବି ଶୂନ୍ୟ ଜଗତରେ । ମୁଁ ତ ସୀମାବଦ୍ଧ ମଣିଷଟିଏ ଏଇ ମାଟି ପାଣି ପବନର, କୋଳାହଳମୟ ମହାସ୍ରୋତର । ତଥାପି ମୁଁ ଅଭ୍ୟାସ କରୁଛି ନିଜ ଭିତରୁ ବାହାରି ଯିବାକୁ ଉପରକୁ, ଆହୁରି ଉପରକୁ ସବୁ ପ୍ରଶଂସା ନିନ୍ଦା ଅପବାଦକୁ ଅତିକ୍ରମ କରି ଏବଂ ତମକୁ ସନ୍ତୁଷ୍ଟ

କରିବା ପାଇଁ ମୋର ଶେଷ ଉଦ୍‌ଘୋଷଣ ହେବ 'ଆମିବି' ପରି ମୁଁ ଏଇ ମାଟିର ମଣିଷ, ଏଇଠି ମୁଁ ଅଛି, ମୁଁ ଉତ୍ତରଣରେ ବିଶ୍ୱାସ କରେନା ପରି ନିର୍ଦ୍ଦୋଷ ମିଛ ମାଧ୍ୟମରେ ।

ହେ ମୋର ସ୍ତାବକ/ନିନ୍ଦୁକମାନେ, ମୋର ପ୍ରିୟ ପରିଜନମାନେ ଅପେକ୍ଷା କର ଶୁଣିବାକୁ- ଖରସ୍ରୋତାର ନାମ ବଦଳିଛି ନିରଞ୍ଜନାରେ । ତା କୂଳର ବଟଦ୍ରୁମଟି ବୋଦ୍ଧିଦ୍ରୁମରେ ପରିଣତ ହୋଇଛି ଏବଂ ତା ମୂଳରେ ମୁଁ ନିଜକୁ ହଜାଇ ଦେଇଛି ମହାନିର୍ବାଣର/ମହାସୁଖର ଉପଲବ୍‌ଧୀରେ- ଯେଉଁଠି ସବୁ ରୂପ ଅରୂପରେ ଓ ସବୁ ସ୍ମୃତି ବିସ୍ମୃତିରେ ପରିଣତ ହେଇ ଯାଇଛନ୍ତି ।

(୧୯୯୮)



# ଶ୍ରେଷ୍ଠାଂଶେ ସୁଭଦ୍ରା (୧)

ନା ଗେ- ସୁଭଦ୍ରା ବିନା କଣ ଦିନ ବଞ୍ଚାଯାଇ ପାରେ !

ସୃଷ୍ଟିର ଦିନ ଆରମ୍ଭ ହେବା ଠାରୁ ତ ଦିନମାନ ପ୍ରତିଦିନ ହୋଇ ଗଡ଼ିଚାଲିଛି ଓ ଚାଲିବ ମଧ୍ୟ କିଛି ଗୋଟାଏ ବିପର୍ଯ୍ୟୟ ସୃଷ୍ଟି ହୋଇ ସୌରମଣ୍ଡଳର ଏଇ ପୃଥିବୀଟା ଧ୍ୱସ୍ତ ବିଧ୍ୱସ୍ତ ହେଇ ରେଣୁ ରେଣୁ ଧୂଳିକଣାରେ ପରିଣତ ହେବା ପର୍ଯ୍ୟନ୍ତ । ଅଥଚ ସୁଭଦ୍ରାମାନେ କଣ ଏଇ ଦିନମାନଙ୍କ ସହିତ ତାଳ ଦେଇ ଚାଲୁଥିବେ ସେ ପର୍ଯ୍ୟନ୍ତ ! ଯଦି ନଚାଲନ୍ତି ?

ନା ପୃଥିବୀରେ ଫୁଲ ଫୁଟିବ, ମଳୟ ବହି, ଆକାଶରେ ମେଘମାନେ ଆଡ଼ମ୍ବର ରଚିବେ, ସାଇଁ ସାଇଁ ମେଘ ବର୍ଷିବ, କୁହୁଡ଼ି ମିଶା ଶୀତରେ ମଣିଷ ସେମ୍‌ଟି ଯିବ ଓ ରୌଦ୍ରତାପରେ କାଙ୍କୁଆ ବାଇଗଣରେ ପରିଣତ ହେବ ।

ଦିନ ସହିତ ତାଳ ଦେଇ ସୁଭଦ୍ରା ଚାଲିବ ନିଶ୍ଚୟ । ଟାଉନ୍‌ବସ୍‌ରେ, ଅଭିଜାତ ଫେସନ୍ ହାଉସ୍‌ରେ, ବିଉଟି ପାର୍ଲରରେ, କ୍ଲବ୍-ପାର୍ଟିରେ, ଫେସନ ସୋ'ରେ ଓ ରାସ୍ତାର ଅଜସ୍ର ଜନଗହଳିରେ ।

ଏ ସମସ୍ତ ଶୋଭାଯାତ୍ରା ଭିତରେ ସମସ୍ତେ କିନ୍ତୁ ସୁଭଦ୍ରା ହୋଇ ନପାରନ୍ତି । ସମସ୍ତ ରୁଚିପୂର୍ଣ୍ଣ ମହିଳା ଯେ ସୁଭଦ୍ରା ଏକଥା କେମିତି ଅଡୁଆ ଲାଗେ ରୋଶନକୁ । ତାକୁ ଲାଗେ ସୁଭଦ୍ରାଇ ସୁଭଦ୍ରା । ସମସ୍ତେ ସୁଭଦ୍ରା ହେଇ ନପାରନ୍ତି ଯେମିତି ସର୍କସର

ସବୁ ଜୋକର ହସାଇ ହସାଇ ଲୋକଙ୍କୁ ବେଦମ୍ କରୁଥିଲେ ବି ସମସ୍ତେ କିନ୍ତୁ ମାଷ୍ଟର ଜୋକର ନୁହନ୍ତି ।

ସୁଭଦ୍ରା ଏକ ସ୍ୱତନ୍ତ୍ର ଚରିତ୍ର । ତା ଭିତରେ ସ୍ନେହ ଅଛି, ପ୍ରେମ ଅଛି, ଆନ୍ତରିକତା ଅଛି, ସର୍ବୋପରି ତୁମ ଭିତରେ ନିଜକୁ ଲୀନ କରିଦେବାର ପ୍ରବଣତା ବି ଅଛି । ତେଣୁ ସେ ସୁଭଦ୍ରା ଓ ସ୍ୱତନ୍ତ୍ର ।

ରୋଶନ ତାକୁ ଦିନେ ଦେଖିଥିଲା କେତେ ଶହ/ହଜାର/ବା ଲକ୍ଷେ ବର୍ଷ ତଳେ । ସେତେବେଳେ ସେ ରଜନିକର ଛାଡ଼ି ରଜନିକର ପ୍ରତି ସ୍ନେହୀ ହୋଇଥିଲା- ମୋଟା ଓଠ ଭିତରେ ଶୁଭ୍ର ଦାନ୍ତ ଦି'ଧାଡ଼ି, ପାନପତ୍ର ପରି ମୁହଁର ଆକୃତି, ଆକର୍ଷଣୀୟ ନୁହେଁ, ଅଥଚ ସାମଗ୍ରୀକ ବିଚାରରେ ସବୁ ବୟସର ରସିକ ଲୋକଙ୍କୁ ନିଜ ଭିତରେ ବାନ୍ଧିଦେଲା ପରି । ଶରୀରକୁ ଛାଡ଼ି ଦେଲାପରେ ତାର କଥା କହିବାର ଛନ୍ଦ ଓ ସମର୍ପଣର ଭାବ ସୃଷ୍ଟି କରି ଦିଏ ଆପଣା ଆପଣା ଅନୁଭବର ବଳୟଟାଏ । କେବଳ ରୋଶନ ନୁହେଁ, ଅନେକ ରୋଶନ ବୁଢ଼ୀଆଣୀର ସେଇ ଜାଲରେ ଛନ୍ଦି ହେଇଯାନ୍ତି କେମିତି ।

ରୋଶନ ଯେଉଁଦିନ ସୁଭଦ୍ରାକୁ ଆବିଷ୍କାର କରିଥିଲା, ଯେମିତି ସେଦିନ ସବୁ ଅସ୍ୱାଭାବିକତା ପୃଥିବୀ ପୃଷ୍ଠକୁ ଓହ୍ଲାଇ ଆସିଥିଲେ- ଚତୁର୍ଦ୍ଦିଗରେ ଗଂଗଶିଉଳିର ବାସ୍ନା, କୃଷ୍ଣଚୂଡ଼ାର ଅପର୍ଯ୍ୟାପ୍ତ ଲାଲ ରଙ୍ଗ, ଇନ୍ଦ୍ରଧନୁ, ମଳୟ ଖରା-ବର୍ଷା-ଶୀତ ସବୁ ଏକତ୍ରିତ ହୋଇଯାଇଥିଲେ ସମସ୍ତ ପ୍ରାକୃତିକ ନିୟମକୁ ଅସ୍ୱୀକାର କରି ।

ଅଥଚ ଦୀର୍ଘବର୍ଷ ପରେ ରୋଶନ ଦେଖୁଛି ସେଇ ସୁଭଦ୍ରାକୁ କୌଣସି ପରିବର୍ତ୍ତନ ବିନା; ଟିକି କଉଡୁକିଆ ରାବିଟ୍‌ଟିକୁ ଛାତିରେ ଜାକିଧରି ଚନ୍ଦ୍ରଭାଗାର ବାଲିବନ୍ତରେ ଲୀଳାଖେଳା କରୁଥିବା ସୁଭଦ୍ରା କେବଳ ।

ସୁଭଦ୍ରା କେବେ ସୂର୍ଯ୍ୟୋଦୟ ଦେଖେନା, ଏମିତିକି ଜୀବନରେ ଥରେ ବି, ସେ କହେ ତାର ନିଜସ୍ୱ ପରିବେଶରେ ସେ ଏକ ସ୍ୱୟଂସମ୍ପୂର୍ଣ୍ଣ ଆକର୍ଷଣୀୟ ପିତୁଳାଟିଏ । ଯେହେତୁ ସେ ସୁଭଦ୍ରା । ତେବେ ଏ ସବୁ ସତ୍ତ୍ୱେ ସୁଭଦ୍ରାର ରକ୍ତ ଅଛି, ମାଂସଅଛି, ମେଦ ଅଛି, ମଜ୍ଜା ଅଛି ଓ ହସକାନ୍ଦ ମିଶା ସ୍ପର୍ଶକାତର ଅନୁଭୂତିଟିଏ ବି ଅଛି ।

ଆତଙ୍କ ଓ ଆଶଙ୍କାର ସୁଭଦ୍ରା ବର୍ତ୍ତମାନ । ତାର ଅତୀତର ସ୍ପୃହା ଏତେ ମୋଟାଯେ ଏବେ ଆଉ ଏକ ପ୍ରତୀକ ହୋଇ ରହିବା ତା ପକ୍ଷରେ ସମ୍ଭବ ନୁହେଁ । ସେ ଜାଣିଛି ଏ ପୃଥିବୀରୁ ଜୀବଜଗତ୍ ନିଶ୍ଚିହ୍ନ ହେଇଗଲାପରେ ମଧ୍ୟ ତାର ଛାଇକୁ ବୃତ୍ତାକାରରେ ପରିକ୍ରମା

କରୁଥିବା କିଶୋର/ଯୁବକ/ପ୍ରୌଢ଼ ଓ ବୃଦ୍ଧ ଲୋକଟିର ଛାଇ ହେଇ ରୋଶନ ହିଁ କେବଳ ରହିଯିବ ।

ସୁଭଦ୍ରାର ସକାଳ ହୁଏ । ସେ ବିଛଣାରେ ବସିରହେ ଏବଂ ଅଳସ ଭାଙ୍ଗି ଶରୀରରକୁ ସ୍ୱାଭାବିକ କରିବା ପାଇଁ ଅଧଘଣ୍ଟାଏ ସମୟ ନିଏ । ଅଭ୍ୟସ୍ତ ହରି (ସୁଭଦ୍ରାର ପରିବେଶରେ ତାକୁ ବୟ ମଧ୍ୟ କୁହାଯାଇପାରେ) ଫୁଲ କପ୍ ଚା ଆଣି ଥୋଇଦିଏ ବିଛଣା ପାଖରେ । ସୁଭଦ୍ରା ଚା କପ୍‌ର ଗରମ ବାମ୍ଫକୁ ଦେଖେ ଓ ମନେ ମନେ ଆମୋଦିତ ହୁଏ- ଧୂପକାଠିର ଶିଖା ପରି ବାମ୍ଫ ସବୁ ସାଂଗୀତିକ ଲୟରେ ଉପରକୁ ଯାଇ କେମିତି ସତ୍ତା ହରାଉଛନ୍ତି । ତା'ପରେ ସେ ବାଥ୍‌ରୁମ୍‌କୁ ପଶେ ଓ ସାମାନ୍ୟ କିଛି ସମୟ ନେଇ ପୁଣି ବିଛଣାକୁ ଫେରି ଆସେ । ଏଇ ଯିବା ଆସିବା ଅବଲୀଳା କ୍ରମେ ଘଟିଯାଏ ଏବଂ ମନେ ସେ ହୁଏ ହିପ୍ନୋଟାଇଜ୍‌ଡ୍ । ସେତେବେଳକୁ ଗରମ୍ ଚା'ର ଉତ୍ତାପ ବହୁତ କମି ଯାଇଥାଏ । ଏମିତି ଚା' ପିଇବାର ଅଭ୍ୟାସ ଅବ୍ୟାହତ ରଖିଛି ସୁଭଦ୍ରା । ଯେହେତୁ କୌଣସି ଫେଶନ ପତ୍ରିକାରୁ ସେ କେବେ ପଢ଼ିଥିଲା ସାମାନ୍ୟ ଉଷୁମ ଚା' ପିଇଲେ ଦେହର ରଙ୍ଗ ସ୍ୱାଭାବିକ ରହେ ଓ ତ୍ୱକ ମଧ୍ୟ ବଢ଼ିଯାଏ । ଚା' ସରିଲା ବେଳକୁ ତା ଧାରାରେ ପଡ଼ିଯାଇଥିବା ହରି ଓରଫ ହରେକୃଷ୍ଣ ପାନ କେତେଖଣ୍ଡ ଥୋଇଦେଇଯାଏ । ସୁଭଦ୍ରା ହରିକୁ ଲକ୍ଷ୍ୟକରେ- ବଳିଲା ବଳିଲା ପିଲାଟିଏ, କସିଲା ପରି ହାପ ପ୍ୟାଣ୍ଟ, ନାଭି ମଣ୍ଡଳରୁ କଅଁଳିଆ ଲୋମର ସରଳ ରେଖାଟିଏ ପ୍ୟାଣ୍ଟ ଧାରକୁ ଛୁଇଁଥାଏ । ହରି ଅଣ୍ଟାଠାରୁ ସାମାନ୍ୟ ତଳକୁ ପେଣ୍ଟ ପିନ୍ଧେ । ଖୋଲାଦେହ, ଆଖିରେ କୌତୁହଳର ସ୍ୱପ୍ନ, ନାକତଳେ ଗଜୁରୁଥିବା ନିଶ । ରୋଶନ କହେ ହରିଟା ମହାମୂର୍ଖ । ରୋଶନ ହରିକୁ ଇର୍ଷାକରେ ତାର ଅବଚେତନରେ । ସୁଭଦ୍ରା ହସିଦିଏ ବାପା ମା' କେମିତି ଏତେ ସୁନ୍ଦର ପିଲାଟାର ନାଁ ଦେଇଥିଲେ 'ଦନେଇ' ବୋଲି ।

ଛୁଟିରେ ସୁଭଦ୍ରାର ସମାଜ ସ୍ୱୀକୃତ ସ୍ୱାମୀ ଆସିଥାନ୍ତି ଓ, ପିଲାଟିକୁ ଦେଖିଲେ । ବେଶ୍ ମନକୁ ପାଇଲା ପରି ପିଲାଟିଏ । ଅଥଚ ସେ ପିଲାଟିର ନା 'ଦନେଇ' । ହଠାତ୍ ସେଦିନ ସେ ବଞ୍ଚିଗଲେ କାରଣ ସଂଖୋଳିବାକୁ ଆସିଥିବା ବନ୍ଧୁ ଜଣକ ପ୍ରସ୍ତାବ ଦେଲେ ତା ନାଁ ହରେକୃଷ୍ଣ ରଖାଯାଉ ଓ ସର୍ଟରେ ତାକୁ 'ହରି' ମଧ୍ୟ ଡ଼କାଯାଇ ପାରିବ । ସୁଭଦ୍ରା ସ୍ୱାମୀଙ୍କ ମନକୁ ପାଇଲା, ବେଶ୍ ଭଲ ନାଁଟିଏ ଅନ୍ତତଃ କୌଣସି ଦେବାଦେବୀଙ୍କ ନାଁ ଧରିବାରେ ଗୋଟାଏ ଅଜଣା ପୁଣ୍ୟ ଥାଏ ବୋଲି । ସେଇଦିନୁ ଦନେଇ ହରେକୃଷ୍ଣ ଓରଫ ହରିରେ ପରିଚିତ ହେଇଗଲା ।

ସୁଭଦ୍ରା ସମୟରେ ଚା ପିଇ ପୁନର୍ବାର କୋମଳ ବିଛଣାରେ ଗଡ଼ିଯାଏ। ପିଲାମାନେ କିଏ କୁଆଡ଼େ ଦୂରରେ ନିଜ ନିଜ ପାଠ ସହିତ ଭବିଷ୍ୟତ ଗଢୁଛନ୍ତି। ସ୍ୱାମୀ କ୍ୱଚିତ୍ ମାସେ ଦୁଇମାସରେ ଦିନେ/ଦୁଇଦିନ ପାଇଁ। ତେଣୁ ବିଳାସ ଓ ଆଳସ୍ୟ, ଆଳସ୍ୟ ଓ ବିଳାସ ତା ଜୀବନରେ ଏକ ନିତିଦନିଆ ଅଭ୍ୟାସ। ହାତରେ କାମ ନାହିଁ। ସବୁତକ କାମ ହରିକୁ ନିଅଣ୍ଟ। ସେ ପାଇଁ ଜୀବନକୁ ସେ ତା ବାଗରେ ନିୟନ୍ତ୍ରଣ କରେ।

ସୁଭଦ୍ରା ହରିକୁ ଡ଼ାକେ। ହରି ବୁଝିଯାଏ ଓ ଗୋଡ଼ରୁ ମୃଦୁଚାପ ଆରମ୍ଭ କରିଦିଏ। ସମୟକ୍ରମେ ଉତ୍ତରଣ କ୍ରିୟା ଆରମ୍ଭ ହୋଇଯାଏ, ଧୀରେ ଧୀରେ ସେ ଉପକୁ ଉଠେ ଓ ଶେଷରେ ବେକ ଦେଇ ମୁଣ୍ଡରେ ମାସାଜ କ୍ରୀୟା ପୂର୍ଣ୍ଣହୁଏ। ସୁଭଦ୍ରା ଅଳସ ଭିଡ଼େ। ଥାଉ ଏବେ।

ସେ ବିଛଣା ଛାଡ଼େ ଓ ହରି ଆଉ କପେ ଚା ଥୋଇଦେଇ ଯାଏ। ତାପରେ ଚାଲେ ସୁଭଦ୍ରାର ନିତ୍ୟାଦି କର୍ମମାନ। ସେ ସବୁ ମଧ ତା ବିଳାସର ଏକ ଏକ ପ୍ରକାଶ। ଦେଢ଼ଘଣ୍ଟା ପରେ ବାଥ୍‌ରୁମ୍ ଛାଡ଼େ। ସେ ଦିନର ଶାଢ଼ୀ, ସାୟା, ବ୍ରା, ବ୍ଲାଉଜ୍ ଭଂଗା ଏବଂ ହରି ଆମୋଦିତ ହୁଏ। ପରର ଦୃଶ୍ୟ ତା ପାଇଁ ଆକର୍ଷଣୀୟ। ହରି ଜାଣେ ସୁଭଦ୍ରାଠାରୁ ତା'ର ଦୂରତ୍ୱ। କେବଳ ଖୁସି ହେବା ବ୍ୟତୀତ ତା ପାଇଁ ଅଧିକ କିଛି ନଥାଏ। ତେବେ ହରିପାଇଁ ସେତକ ଯଥେଷ୍ଟ। ତା ବୟସ ତାକୁ ସେତିକିରେ ସନ୍ତୁଷ୍ଟ କରାଏ।

ହରି ଦେଖେ ଦର୍ପଣ ସାମ୍ନାରେ ଦେବୀ ମୂର୍ତ୍ତିଟିଏ। ପିଲାଙ୍କ ଖେଳ ପସରାପରି ବିଭିନ୍ନ କସ୍‌ମେଟିକ୍‌ସର ଏକ ଛୋଟ ପ୍ରଦର୍ଶନୀ। ମାଷ୍ଟର ଓସ୍ତାଦର ଅଭ୍ୟସ୍ତ ଆଙ୍ଗୁଳି ହାର୍‌ମୋନିଅମ୍ ରିଡ୍‌ରେ ଗଡ଼ି ଆସିଲା ପରି ଆବଶ୍ୟକୀୟ କସ୍‌ମେଟିକ୍‌ସ୍ ଗୁଡ଼ିକୁ ସୁଭଦ୍ରା ଛୁଇଁଯାଏ ଓ ଶେଷରେ ବିନ୍ଦିର ପ୍ୟାକେଟ୍ ଖୋଲି ଶାଢ଼ି ସହିତ ମେଳାଏ ତା ରଙ୍ଗକୁ। ଠିକ୍ ଟିକୁ ବାଛିନେଇ ସେ ଦୁଇ ଭ୍ରୂଲତାର ମଧ ବିନ୍ଦୁରେ ଚାପିଦିଏ।

ବାସ୍ ତାପରେ କିଛି ଲଘୁ ଟିଫିନ୍ ଓ ସେ ଦିନର ମେନୁର ଏକ ବିସ୍ତୃତ ତାଲିକା। ସେଇତକ ସୂଚନା ହରିପାଇଁ ଯଥେଷ୍ଟ। ସେ ସୁଭଦ୍ରାର ରୁଚି ସହିତ ବେଶ୍ ପରିଚିତ।

ରୋଟିନବନ୍ଧା ସମୟ।

ବାହାରେ କଲିଂବେଲ୍ ସ୍ୱିଇଚରେ ଚାପ। ସୁଭଦ୍ରା ଜାଣିଛି ଏ ଡ଼ାକ ନିଶ୍ଚୟ

ରୋଶନର । କାରଣ ସମୟ ସୁଚାଇ ଦିଏ କାହା ଆଙ୍ଗୁଳିର ଚାପ ଏ । ଏକ ଅଜବ ସମୟକୁ ରୋଶନ୍ ବାଛିନିଏ ସୁଭଦ୍ରା ସହିତ ତା ପାସ୍ ଟାଇମ୍‌କୁ । ରଫିକ୍ ବା ରଣେନ୍‌ର ନିର୍ଦ୍ଦିଷ୍ଟ ସମୟ ନାହିଁ । ସେମାନେ ଚବିଶ ଘଣ୍ଟା ପରିକ୍ରମାର ଯେ କୌଣସି ମୁହୂର୍ତ୍ତକୁ ସେମାନଙ୍କ ସମୟ ବୋଲି ବାଛି ନେଇପାରନ୍ତି । ସୁଭଦ୍ରାକୁ କେନ୍ଦ୍ର କରି ମିତ ବସିଥିବା ଏ ତିନିଜଣ ସମୟରେ ଏକତ୍ର ବି ମିଳିଯାନ୍ତି ।

ସୁଭଦ୍ରା ଯାହାର ଉପସ୍ଥିତିରେ ବି ବୋର ହେବାର ଛଳନା କରେ । ଛଳନାକରେ ସମାଜ ଓ ପଡ଼ୋଶୀମାନଙ୍କ ଆକ୍ଷିମାନଙ୍କୁ ନେଇ! ତା ବ୍ୟତୀତ ହରି ଯେ! ଅନ୍ୟଥା ସେ ଆମୋଦିତ ହୁଏ । ସେ ଏକ ବିରାଟ ସୂର୍ଯ୍ୟ ଯାହାର ବଳୟ ଭିତରେ ଅନେକ ଗ୍ରହ ଉପଗ୍ରହ ଘୁରିବୁଲିବାକୁ ଛନ୍ଦାଛନ୍ତି ହୋଇଛନ୍ତି । ଘୁରି ବୁଲନ୍ତି, କ୍ଷତି କଣ! ଏମିତି ଘୂରୁଘୂରୁ ସେମାନେ ହୁଏତ ଦିନେ ଭିତରେ ପଶିଲା ବେଳକୁ ହରି କହିବ: ମା' ଏଇ କେଇ ମୁହୂର୍ତ୍ତ ତଳେ ଏକ ସୁବର୍ଣ୍ଣ ପାଲିଙ୍କିରେ ବସି କେଉଁ ରାଜ୍ୟକୁ ଚାଲିଗଲେ ଶୁକ୍ଳବସ୍ତ୍ର ପରିହିତ କେତେଜଣ ଉଜ୍ଜ୍ୱଳ ପୁରୁଷଙ୍କ କାନ୍ଧରେ । ସେମାନେ କଣ ତାକୁ ଅନୁସରଣ କରିବେ ? ସେମାନଙ୍କ ପାଇଁ କେହି କ'ଣ ପରକୁ ପର ସୁବର୍ଣ୍ଣ ପାଲିଙ୍କି ଖଞ୍ଜି ଦେଇଥିବେ । ଏଇପରି ରୋଶନର ମଜାଳିଆ କଥାରେ ସୁଭଦ୍ରା ଗମ୍ଭୀର ହୋଇଯାଏ ଏବଂ ରୋଶନ ହସିଦିଏ କହେ; 'ସୁଭଦ୍ରା! ଜଳେ ଦ୍ୱାରକା ନାଶ ଯିବ ଜାଣି ସେ କେଉଁ କଳ୍ପିତ ପ୍ରଭାସରୁ ଚାଲିଆସିବ ସୁବର୍ଣ୍ଣ ପାଲିଙ୍କି ତମକୁ ବହିନେବାକୁ ।' ଏ ଗୋଟାଏ ଚାଲ୍, ସୁଭଦ୍ରା ବି ହସିଦିଏ ।

ସୁଭଦ୍ରା ନିଜକୁ ସଜାଡ଼ି ନେଇ ହରିକୁ ଇଙ୍ଗୀତ କରେ କବାଟ ଖୋଲିବାକୁ । ହରି ବହୁ ପୂର୍ବରୁ ଖୋଲିବାର କଥା, ଏବେ ଖୋଲିଦେଲେ ମା ବିରକ୍ତ ହେବେନି ଜାଣେ ତେବେ ସବୁବେଳେ ସେ କିଛି ନିର୍ଦ୍ଦେଶ ପାଉ, ଏଇଟା ତାର ଆନ୍ତରିକ ଇଚ୍ଛା । କବାଟ ଖୋଲିବା ସହିତ ଅଭ୍ୟସ୍ତ ହାତ ଦୁଇଟି ଯୋଡ଼ିଦେଇଥାଏ ଓ ରୋଶନ୍ ତା ସ୍ୱଭାବସୁଲଭ ଢ଼ାଞ୍ଚାରେ ଛୋଟ ଜୋକଟେ କହି ଭିତରକୁ ପଶି ଆସେ । ଏବଂ ସୁଭଦ୍ରା ବି ସବୁଦିନ ପରି କିଛି କରିବସେ ଯେମିତି ସେ ପ୍ରଥମେ କିଛି କହିବାକୁ ସୁଯୋଗ ପାଉ ।

ରୋଶନ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ପଶି ଆସିବ ଓ ସୁଭଦ୍ରା ସହିତ ଲାଗିବ- ସୁଭଦ୍ରା ବିରକ୍ତ ହେବ । ବେଶୀ ହେଲେ 'ଏମିତି କଣ ପିଲାଙ୍କ ପରି ହେଉଛ; ହରି ସେପଟେ ଯେ; ସବୁ ଜାଣିଲାଣି ସେ'

ବାସ୍, ସେତିକିରେ ରୋଶନ ଚୁପ୍, ନିଆଁରେ ପାଣି ପଡ଼ିଲା ପରି । କିଛି ସମୟ ବସେ ଓ କିଛି ନପାଇଲା ପରି ହଠାତ୍ କୋଠରୀ ଛାଡ଼ି ଚାଲିଯାଏ । ରୋଶନ୍ କାହିଁକି ଏମିତି ହୁଏ । ସେ କହେ ସୁଭଦ୍ରା କୁଆଡ଼େ ତା ଅଭିନେତା ଜୀବନର ପ୍ରଥମ ମଞ୍ଚ ନାୟିକା ଓ କୌଣସି ପ୍ରଣୟ ଦୃଶ୍ୟରେ ଆବଶ୍ୟକତାଠାରୁ ଅଧିକ ସମୟ ତାକୁ ଛାତିରେ ଭିଡ଼ି ଧରିଥିଲା ଯେ, ସେଇଦିନୁ ତା ଭିତରେ କିଛି ପ୍ରାପ୍ୟର ଅଭାବ ବୋଧ ଧରି ସେ ସୁଭଦ୍ରା ଚତୁର୍ଦ୍ଦିଗରେ ଲାଗିରହିଛି, ଏମିତିକି ସୁଭଦ୍ରା ବିଭାହୋଇ ଘରସଂସାର କରି ମଞ୍ଚ ଜୀବନରୁ ଅବ୍ୟାହତ ନେଲା ପରେ ବି । ତଥାପି ରୋଶନ ରଫିକ୍ ପରି ଏଗ୍ରେସିଭ୍ ନୁହେଁ ।

ରଫିକ୍‌ର ସ୍ଥାନ କାଳ ପାତ୍ର ନାହିଁ । ଛ’ ଫୁଟିଆ ସାବନା ରଙ୍ଗର ଯୁବକ । ବୟସରେ ସୁଭଦ୍ରାଠାରୁ କେତେ ବର୍ଷ ସାନ ହୋଇ ପାରେବି । ତା ଦେହରେ ଆଖିରେ ଓ କାର୍ଯ୍ୟକଳାପରେ ଦୀପ୍ତ ପୌରୁଷ । ତା ଛାତିରେ ଭାଲୁ ପରି ମେଞ୍ଚାଏ କଳା ବାଳ, ଦେହର ଗନ୍ଧ ଅଜସ୍ର ଝାଳ ଯୋଗୁଁ କେମିତି ଉଭଟ । ସେ ରୋମାଣ୍ଟିକ୍ ଆଳାପ ଆଲୋଚନାକୁ ଘୃଣାକରେ । ତା ହାତରେ ସମୟ ଅଭାବ । ସେ ଘରେ ପଶିବ ଓ ସୁଭଦ୍ରା ସହିତ ଜୁଲମ୍ ଆରମ୍ଭ କରିଦେବ । ତାର ଦେହର ଚାବିକାଠି ଦରକାର । ସେତିକି ପାଇଗଲା ପରେ ସେ ତା ସାର୍ଟ ବଟନ୍ ଦେବ ଓ ଜିନ୍‌ର ଚେନ୍ । ସେ ମୁହୂର୍ତ୍ତଟେ ସମୟ ନଷ୍ଟ ନକରି ହଠାତ୍ ଫେରିଯାଏ । ତା ପାଟିରୁ ଅଧିକାଂଶ ସମୟ ଆଲ୍‌କହଲିକ୍ ସ୍ମେଲ୍ ଆସେ । ସେ କୁଆଡ଼େ ସୁଭଦ୍ରା ସହି କେତେଟା ପ୍ଲେ ରେ ଖଳନାୟକ ଭୂମିକା କରିଥିଲା ।

ରଣେନ୍ କଥା ନକହିଲେ ଭଲ । ବିଚାରା କୌତୁକିଆ ପୁସିଟିଏ । ଦିନରାତି ସୁଭଦ୍ରାକୁ ଚାହିଁ ଚାହିଁ ବସିବା, ଚନ୍ଦ୍ରଠାରୁ ଚନ୍ଦ୍ରଯାତ୍ରୀ, ସଂସାରରୁ ସମୁଦ୍ରବେଳା ତା କଥା କହିବାର ପରିସର । ସେ କଣ ଚାହେଁ/ଚାହେଁନା ସୁଭଦ୍ରାକୁ ଦୁର୍ବୋଧ ମନେହୁଏ । ସେ କେବେ ତା’ ଦେହର ଚାବିକାଠି ଖୋଜିନି କିମ୍ବା ଦେହକୁ ସ୍ପର୍ଶ କରିନି ରୋଶନ୍ ପରି । ସେ ଆସିବ, ଏମିତି ଗପ ଜମେଇବ ଓ କେତେକପ୍ ଚା ପିଇ ଚାଲିଯିବ । ବିଚାରାଟା

ରୋଶନ୍ ଠିକ୍ ଚିହ୍ନିଛି ଦୁଇଜଣଙ୍କୁ । ସେ ରଣେନ୍‌କୁ ଶ୍ରଦ୍ଧା କରେ, ତା ସହିତ ଜୋକ୍ କରେ, ଅଥଚ୍ ରଫିକ୍ କାହିଁକି ତାହା ସହିପାରେନା ।

ସୁଭଦ୍ରା ଜାଣିନି ରୋଶନ୍ କେତେବେଳୁ ଆସି ବସିଲାଣି । ସୁଭଦ୍ରା ନଜାଣିଥିଲା ପରି ଅଭିନୟ କଲା । ଦୀର୍ଘ ସାଂସାରିକ ଜୀବନ ବିତାଇବା ପରେ ବି ସୁଭଦ୍ରାର

ଅବଚେତନରେ ଅଭିନୟ ବର୍ତ୍ତମାନ ।

ସୁଭଦ୍ରା ହରିକୁ ଚା' ପାଇଁ ବରାଦ୍ କଲାବେଳେ ସତର୍କରେ ଆଖି ବୁଲାଇ ନେଲା ରୋଶନ୍ ଉପରେ । ତା'ର ମନେହେଲା ରୋଶନ୍ ଶରୀରଧାରୀ ଅନ୍ୟ ପୁରୁଷଟି ବସିଛି ଅବା ତା ବେଡ୍‌ରୁମ୍‌ରେ । ରୋଶନ୍ ଅନ୍ୟମନସ୍କ ଓ କେମିତି ଗୋଟିଏ ଭାରାକ୍ରାନ୍ତ ଭାରାକ୍ରାନ୍ତ ଭାବ । କିଛି ଅସ୍ୱାଭାବିକତାର ଆଶଙ୍କାରେ ସେ ଉଠି ଠିଆ ହେଲା ଓ ଧୀରେ ଧୀରେ ଯାଇ ରୋଶନ୍‌ର ନିକଟରେ ବସିଲା ।

ରୋଶନ୍ ନୀରବ ।

ହରି ଦି' କପ୍ ଚା ନେଇ ଆସିଲା । ସୁଭଦ୍ରା ଗୋଟିଏ କପ୍ ଧରିଲା, ହରି ଅପେକ୍ଷା କଲା ରୋଶନ୍ ପାଇଁ । ରୋଶନ୍ ମନାକଲା, ତାକୁ ଭଲ ଲାଗୁନାହିଁ । ହରିବି କେମିତି ଗମ୍ଭୀର ହୋଇଗଲା । ସୁଭଦ୍ରାର ଇଙ୍ଗୀତରେ ଚା' କପ୍ ଧରି କୋଠରୀରୁ ବାହିରଗଲା ।

'କଣ ହେଇଛି', ପଚାରିଲା ସୁଭଦ୍ରା ।

'ନାଁ, ଆଜିକୁ ଠିକ୍ ପଚିଶି ବର୍ଷ ହେଇଗଲା ତମ ସହିତ ମୁଁ ପ୍ରଥମେ ରୋଲ୍ କରିଥିଲି । ମନେ ଅଛି ! କଣ କେମିତି ଗୋଟାଏ ଘଟିଗଲା ସେ ଦିନ, ଯା ପାଇଁ କେଉଁ ଉଦ୍ଦେଶ୍ୟ ନେଇ ମୁଁ ଦୀର୍ଘ ପଚିଶ ବର୍ଷ ହେଲା ତମ ପାଖକୁ ଦଉଡ଼ି ଆସୁଛି ।' 'ମୋର ଇଚ୍ଛା'... ରୋଶନ୍ ମୁହଁ ଟେକି ସୁଭଦ୍ରା ମୁହଁକୁ ଚାହିଁଲା, ଆମ ମିଶିବାର ଏ ରଜତ ଜୟନ୍ତୀ ଶେଷ ଦିନ ହେଉ- ପରେ ପରେ ରୋଶନ୍ ଦୁଇ ପାପୁଲିରେ ମୁହଁକୁ ଚାପିକ ଧରି ତଳକୁ ଝୁଲି ବସିଗଲା କିଛି ସମୟ ।

ସୁଭଦ୍ରା ହରିକୁ ପରିବାପତ୍ର ପାଇଁ ବରାଦ କଲା । ହରି ଟଙ୍କା ଓ ବେଗ୍ ଧରି ବାହାରି ଗଲା । ସୁଭଦ୍ରା ଭିତରୁ କବାଟ ବନ୍ଦକଲା ଓ ରୋଶନ୍ ନିକଟକୁ ଆସିଲା । ସୁଭଦ୍ରା ଯେମିତି କୌଣସି ନିଷ୍ପତ୍ତି ନେବାକୁ ସ୍ଥିର କରୁଛି କ୍ରମେ । ସେ ରୋଶନ୍ ନିକଟରେ ଠିଆ ହେଲା, ତା ହାତ ଦୁଇଟିକୁ ସ୍ୱାଭାବିକ ଭାବେ ଝୁଲାଇ ଦେଇ ଦୁଇ ହାତରେ ତା ମୁହଁକୁ ଟେକି ଧରିଲା-

"ମୋ ଆକ୍ଷିକୁ ଚାହଁ ରୋଶନ ।" ରୋଶନ୍ ମୁହଁ ଟେକି ସୁଭଦ୍ରା ଆକ୍ଷିରେ ଆକ୍ଷି ମିଶାଇଲା । ସୁଭଦ୍ରା କହିଲା- "ଅଭିନୟ ମୋ ପାଇଁ ଏକ ପେଶା ନଥିଲା, ଜୀବନର ଏକ ଅଙ୍ଗ ଥିଲା । ପ୍ରେମିକା ଭୂମିକାରେ ଯଥାର୍ଥ ପ୍ରେମିକା, ମା' ଓ ସ୍ତ୍ରୀ,

ତମକୁ ମୁଁ ଠିକ୍ ବୁଝିଛି, ତମ ହୃଦୟକୁ । ବେଶ୍, ତମ ସହିତ ମୋର ବି ଆଜି ଶେଷ ଦିନ" କହି ସୁଭଦ୍ରା ଏକ ଅଦ୍ଭୁତ କାଣ୍ଡ କରିବସିଲା । ସୁଭଦ୍ରା ବ୍ଲୁ ପିକ୍‌ଚର ପରି ତା'ର ବ୍ଲାଉଜ୍, ବ୍ରା, ଶାୟା, ଶାଢ଼ୀ ସବୁ ଖୋଲି ଦେଲା । ସୁଭଦ୍ରା ଠିଆ ହୋଇଛି କଳ୍ପିତ ବିବସନା ଦୁର୍ଗା ମା'ଙ୍କ ପରି । ଅବଶ୍ୟ ରୋଶନ୍ ତରଳି ଯାଇଥିଲା, ମହିଷାସୁରର ଛାଇଟା ଯେମିତି ଝରକା ଦେଇ ବାହାରକୁ ଚାଲି ଯାଉଥିଲା । ସେ ମୁହଁରେ ହାତ ଦେଇ କଇଁ କଇଁ ହୋଇ କାନ୍ଦିଲା ଓ ହଠାତ୍ ସେ କୋଠରୀ ଛାଡ଼ି ବାହାରକୁ ଚାଲିଯାଉଥିବା ବେଳେ ସୁଭଦ୍ରା ତା ସାମ୍ନାରେ ଠିଆ ହୋଇ ତା'ର ପଥ ଅବରୋଧ କଲା । ସେତେବେଳେ ସୁଭଦ୍ରା ଲାଗୁଥିଲା କ୍ରୁଶବିଦ୍ଧ ଯୀଶୁଖ୍ରୀଷ୍ଟଙ୍କ ପରି ।

ତଥାପି ହରି ବଜାର କରି ଫେରି ନଥିଲା ।

(୧୯୯୩)



## ଶ୍ରେଷ୍ଠାଂଶେ ସୁଭଦ୍ରା (୨)

ଘାସ୍ କେତେ ଯେ ଜହ୍ନ ଆଲୁଅ; ତା' ସାଙ୍ଗରେ ମିଶିଯାଇଛି କାକର ଭିଜା ପବନ ଓ ଗଙ୍ଗଶିଉଳିର ବାସ୍ନା ।

ଜୀବନକୁ ଶୂନ୍‌ରୁ ପୁଣି ଥରେ ଆରମ୍ଭ କରିବାକୁ କେଉଁ ଅଜଣା ନିର୍ଦ୍ଦେଶକର ସୂଚନା ଯେମିତି । ଅଥଚ ଜୀବନର ସବୁଠାରୁ ବଡ଼ ସତ ହୋଇ ରହିଗଲା ଦୁଇରେ ଦୁଇ ମିଶିଲେ ଚାରି ହୋଇ । କେ ଭାଙ୍ଗିବ ବା ଭୁଲ୍ ବୋଲି ପ୍ରମାଣିତ କରିଦେବ ଏତେବଡ଼ ବିରାଟ କ୍ଲାନ୍ତିକର ସତ୍ୟଟିକୁ ।

ଭାଙ୍ଗିଥିଲେ ଭାଙ୍ଗି ପାରିଥାନ୍ତା ସେ । ସେମିତି ପ୍ରତ୍ୟୟ ସୃଷ୍ଟି କରିଥିଲା ବି ତା' କଞ୍ଚା ଅବସ୍ଥାରେ ଯେତେବେଳେ ନାକତଳେ ସ୍ୱର୍ଣ୍ଣାଭ ଲୋମଗୁଡ଼ିଏ ଗଜୁରି ଉଠିଥିଲା ଓ ହାପ୍‌ପେଣ୍ଟ ଭିତରୁ ତଳକୁ ଲମ୍ବି ଯାଇଥିଲା ବର୍ତ୍ତୁଳ ଗୋଡ଼ ଦୁଇଟି । ଅପରିପକ୍ୱ ପୌରୁଷ ପ୍ରକାଶିତ ହେଉଥିଲା ନାକରୁ ବୋହି ପଡୁଥିବା କଞ୍ଚାପାଣି ପରି । ତଥାପି ସେ ଚଉଡ଼ା ଛାତି, ଠୋ ଠୋ ହସ ଭିତରେ ତୀର୍ଯ୍ୟକ୍ ଦୃଷ୍ଟି କି ସମ୍ମୋହନରେ ବଶବର୍ତ୍ତୀ କରିଦିଏ ଯେ ଶ୍ରବଣରେ ଅନୁରଣିତ ହୋଇଯାଏ କେଉଁ କଳ୍ପିତ ଦ୍ୱାପରର ବାଉଁଶ ବଂଶୀର ସୁଲଳିତ ଲହରି ।

କେଉଁ ମୋହନ ମନ୍ତ୍ରରେ ମନ୍ତ୍ରିତ କରି ସେ ଅକସ୍ମାତ୍ ଅନ୍ତର୍ଦ୍ଧାନ ହୋଇଗଲା ଯେ, ମୁଁ ଅଲକ୍ଷଣୀ ତା'ରି ସ୍ୱପ୍ନରେ କେଉଁଠୁ ଆସି କେଉଁଠି ପହଞ୍ଚି ଗଲିଣି ହିସାବ ଫର୍ଦ୍ଦ ଖୋଲି କିଛି ଠିକଣା ସିଦ୍ଧାନ୍ତରେ ପହଞ୍ଚି ପାରୁନି ।

ମୋ ସ୍ମୃତି ରହିଗଲା ପୁରୁଣା ଜଗନ୍ନାଥ ସଡ଼କରେ । ଦୀର୍ଘ ପଥର ପାଦ ଚିହ୍ନକୁ ଲୁଚାଇ ଦେଲା ପାଞ୍ଚ ନମ୍ବର ଜାତୀୟ ରାଜପଥ । ସ୍ଥାନଗୁଡ଼ିକ କିନ୍ତୁ ରହିଗଲା କେତେ ମାଇଲ/ କିଲୋମିଟରର ସୀମାରେଖା ହୋଇ । ଜଗନ୍ନାଥ ସଡ଼କକୁ ଲୋକେ ଭୁଲି ଗଲେଣି । କିଏ ବା ଭୁଲିଯାଇଛି ବାରିପଦାରୁ ବାଲେଶ୍ୱର ବା ଭଦ୍ରକରୁ ଭୁବନେଶ୍ୱର । ସବୁ ନିଶ୍ଚିହ୍ନ ହୋଇଗଲେ ବି ସ୍ଥାନ ରହିଥିବ; କାଳ ନୂଆ ରୂପ ଦେଇଥିବ ଓ ପାତ୍ରପାତ୍ରୀମାନେ ସେମିତି ନାମଜାଦା ହୋଇଥିଲେ ଇତିହାସ ବା ସାହିତ୍ୟର ଚରିତ୍ର ହୋଇ ରହିଯିବେ ସମୟରୁ ସମୟକୁ । ଯେମିତି ମହାନଦୀ । ବହିଯାଉଥିବା ଘଟଣାଟି ସତ୍ୟ ଓ ତା' କୂଳର ମନ୍ଦିର-ମସ୍‌ଜିଦ୍, ଶିଳାଲେଖ-ତାମ୍ର ଫଳକ ତା ସୁଅରେ ଭାସି ଯିବାଟା ଏକ ବୃହତ୍ତର ସତ୍ୟ ।

କିନ୍ତୁ ସେ ପୋଡ଼ା ବରଗଛଟା ! ମରିଯାଉନି ତ ? ବରଂ ଦିନକୁ ଦିନ, ମାସକୁ ମାସ, ବର୍ଷକୁ ବର୍ଷ ତା କାୟା ବିସ୍ତାର କରି ଚାଲୁଛି ଯେମିତି ସେ ଇତିହାସର ପ୍ରବାଦ ପୁରୁଷ ହୋଇ ରହିଯିବ ଚିରକାଳ । ଝରକା ଫାଙ୍କରୁ ଜହ୍ନ ଆଲୋକ ଦେଇ ଦ୍ରୁଙ୍ଗୀ ଦେଉଛି- ବିରାଡ଼ି ପରି ସବୁ ମଇଳା ତୁ ଢ଼ାଙ୍କି ଦେଇପାରିଲୁ ଲୋ ଶୁଭ୍ରା; ହେଲେ ତୋ ବୟସର ପ୍ରତିଟି ମୁହୂର୍ତ୍ତ, ତୋ ଲୀଳାଖେଳାର ପ୍ରତିଟି ଚିତ୍ର, ତୋ କାନ୍ଦର ପ୍ରତିଟି ପ୍ରକାଶ ଉତ୍‌କୀର୍ଣ୍ଣ ହୋଇ ରହିଯାଇଛି ମୋ ପତ୍ର, ଶିରା ଓ ବଲ୍‌କଳରେ । ସାରା ଦୁନିଆକୁ ତୋ କାହାଣୀ ଗୁହ୍ୟ ରଖିପାରୁ । ହେଲେ ମୋ ପାଖରେ ନୁହେଁ । ମୁଁ ତୋ ଜେଜେ, ତୋ ବୁଢ଼ୀମା, ତୋ ଗାଁର ପୁରୁଖା ଲୋକ, ଯାହାଙ୍କ ନିକଟରେ ତୋ ଜୀବନ ଇତିହାସର ସମସ୍ତ ବିବରଣୀ ଲୁକ୍‌କାୟିତ ଭାବେ ସଂରକ୍ଷିତ ।

କେଡ଼େ ଅଭଦ୍ର ଅସାମାଜିକ ଏ ବରଗଛଟା ସତେ । ଜଣେ ସ୍ତ୍ରୀ ଲୋକକୁ ରାଜପଥରେ ଲଙ୍ଗଳା କରି ଠିଆ କରାଇ ଦେବାର କି ଅହେତୁକ ନୃଶଂସତା ତୋ ଭିତରେ କୂଳବୃଦ୍ଧ ବଟବୃକ୍ଷ !

ଶୁଭ୍ରା ପତି କାହାକୁ ନିର୍ଦ୍ଦେଶ ଦେଲା: ବନ୍ଦ କରିଦିଅ ଝରକାର ପ୍ରତ୍ୟେକଟି କବାଟ ଯେମିତି କ ଅତିକ୍ରାନ୍ତ ବୟସକୁ ଉଖାରିବାକୁ ସୁଯୋଗ ନପାଉ ଏ ଜହ୍ନର ଆଲୋକ, କାକର ଭିଜା ପବନ ସହିତ ଗଙ୍ଗଶିଉଳିର ବାସ୍ନା ଓ ସେ ବରଗଛର ଛାଇ । ସେ ତା' ପରେ ଶୋଇଯିବ ନିଦ ବଟିକା ଖାଇ ଓ ଭୁଲିଯିବ ଅତୀତର ଗୌରବମୟ ତଥା ରୋମାଞ୍ଚକର ଦିନମାନଙ୍କୁ, ଯାହାକୁ ପୁଞ୍ଜିକରି ଏ ଯାବତ୍ ସେ ବଞ୍ଚିଆସିଛି ଗୋଟିଏ ପତିଆରାରେ ।

ନିର୍ଦ୍ଦେଶ ମାନିବାର ଲୋକ ବା ଶକ୍ତି କେହି ନାହିଁ । ସେ ନିଜକୁ ନିଜେ । ନିର୍ଦ୍ଦେଶ ଫେରି ଆସୁଛି ତା'ର ଅସମର୍ଥ ଶରୀର ନିକଟକୁ ଯେ ନିଜ ନିସ୍ତେଜପଣିଆ ପାଇଁ ହେଉ ବା କିଛି ନକରି ପାରିବାର ଏକ ମନୋଟନ୍‌ସ ମାନସିକ ଅବସ୍ଥା ହେତୁ ଲୋକଟି ରହିଛି ଧଳା ଚାଦର ଆଚ୍ଛାଦିତ ଏକ ତକ୍ତପୋଷ ଉପରେ ।

ଶୁଭ୍ରା ପତିର ଭାଗ୍ୟ ଏୟା । ସେ ଦୁଇରେ ଦୁଇ ମିଶିଲେ ଚାରିର ସତ୍ୟଟିକୁ ପିଲାଙ୍କ ସାମ୍ନାରେ ପ୍ରକାଶ କରିବ ଓ ତା'ର ସ୍ମୃତିକୁ ନେଇ ଏମିତି ବଞ୍ଚିବ । ତାକୁ କଲ୍‌ବଲ୍ କରିବେ ଏଇ ଜହ୍ନର ଆଲୋକ, କାକର ଭିଜା ପବନରେ ଗଙ୍ଗଶିଉଳିର ବାସ୍ନା ଓ ସେ ବୁଢ଼ା ବରଗଛଟି । ତାକୁ ଅପେକ୍ଷା କରିବାକୁ ପଡ଼ିବ ସେ ଫେରି ଆସିବା ପର୍ଯ୍ୟନ୍ତ ।

ଶୁଭ୍ରା ପତିର ଇଚ୍ଛା ହେଲା ଆଉ କେତୋଟି ନିଦ ବଟିକା ଖାଇବାକୁ ଓ ସୋରେଇରୁ ପେଟେ ପାଣି ପିଇ ଦେବାକୁ ଫଳରେ ନିଦ କେତେବେଳେ ତା'ର କୋମଳ କୋଳକୁ ଟାଣି ନେଇ ଲୁଲାବି ମାଧ୍ୟମରେ ସବୁ କଥା ଭୁଲାଇ ଦେବ ତାକୁ ।

ସେତେବେଳେ ସେମିତି କିଛି ସେ କରିପାରିଲା ନାହିଁ ଓ କିଛି ଘଟିଲା ନାହିଁ ମଧ୍ୟ କେବଳ ବିଛଣାରେ ପଡ଼ିରହିବା ବ୍ୟତୀତ । ସତ୍ୟମାନଙ୍କୁ ଫାଙ୍କି ଦେବାକୁ ତା' ନିକଟରେ କୌଣସି ଉପାୟ ନ ଥିଲା ସେତେବେଳେ ।

ଶୁଭ୍ରା ତା ବୟସକୁ ଗଣିଲା । କେତେ ହେବ ପଚାଶ, ପଞ୍ଚାବନ, ଏମିତି କିଛି ।

ବୟସ ଏମିତି ଆରମ୍ଭ ହୁଏ ଏକ କିଶୋର କଅଁଳ ବାଛୁରୀ ପରି ଓ ଶେଷରେ ପଡ଼ି ରହେ ଅରଣ୍ୟର ଅଜଗର ପରି । ମିଳିଲେ ଖାଇଲା, ନମିଳିଲେ ପଡ଼ିରହି ଚାହିଁଥିବ ଲୁଲୁ ଲୁଲୁ କରି । ପରିଣତି କେବଳ ଗୋଟାଏ ରଙ୍ଗ ବର୍ଣ୍ଣହୀନ ସମାପ୍ତି-ଆଲୋକ, ଅନ୍ଧାର ବା ଏ ଦୁଇର ମିଳିତ ରୂପ ମଧ୍ୟରେ । ସେତେବେଳେ କେହି ଥିଲେ ଥିବେ ବା ନଥିବେ ଆହା କହିବାକୁ । ଥିଲେ ହରି ନାମଟି ସତ୍ୟ ହେବ ନ ଥିଲେ ମ୍ୟୁନିସିପାଲିଟି ଭ୍ୟାନ୍ ।

ହଠାତ୍ କିଛି ଗଙ୍ଗଶିଉଳିର ବାସ୍ନା ଶୁଭ୍ରାର କୋଠରୀ ମଧ୍ୟକୁ ପଶିଆସିଲା । ବାସ୍ନାରେ ସମସ୍ତ କୋଠରୀ ଭରିଗଲା । କ୍ରମେ ସେ ବାସ୍ନା ଶୁଭ୍ରାର ଶରୀରକୁ ଝାଳୁଆ କରିଦେଲା ଓ ତା ଆଖିରେ ଗୁଡ଼ାଏ ଦୃଶ୍ୟ ଆଙ୍କିଦେଲା । ଶୁଭ୍ରା କଡ଼ ଲେଉଟାଇଲା ଓ ତକିଆଟିକୁ ଭିଡ଼ିଆଣି ତା ଛାତିତଳେ ଜାକିଦେଇ ଦୁଇହାତ ପାପୁଲିରେ ମୁହଁଟିକୁ ଥୋଇଦେଇ ସୁଅର ପ୍ରତିକୂଳରେ ଚାଲିଲା ଦୃଶ୍ୟ ଗୁଡ଼ିକୁ ଅନୁସରଣ କରି କରି ।

ସ୍ମୃତିର ପଟଳ ଖୋଲି ଯାଉଛି, ଗୋଟିଏ ପରେ ଗୋଟିଏ; ନୋଥରା ସ୍ପର୍ଶହୀନ ଶରୀର କ୍ରମଶଃ ଉତ୍ତେଜିତ ହେଉଛି । ଅଜଗର ପବନ ନେଉଛି, ଲାଞ୍ଜ ମୋଡୁଛି, ସାମ୍ନାରେ ହରିଣ ବା ଛେଳି ଛୁଆଟେ ଠିଆ ହୋଇଛି ଯେମିତି । ଚିତ୍ର ସ୍ପଷ୍ଟ ହୋଇ ଆସୁଛି । କେତେ ବର୍ଷ ବା ଯୁଗ ଶୁଭ୍ରାର ଠିକ୍ ତାରିଖ ବା ଦିନ ମନକୁ ଆସୁନି । ସେଦିନ ଆକାଶରେ ଜହ୍ନ ନଥିଲା, ନଥିଲା କାକର ଭିଜା ଗଂଗଶିଉଳି ଗନ୍ଧର ପବନ, ଯାହା କିଛି ଥିଲା ଏକ କଳା ଆକାଶ, ଅବିଶ୍ରାନ୍ତ ତୁହାକୁ ତୁହା ବର୍ଷା, ଚକ୍ ଚକ୍ ବିଜୁଳିର ଫ୍ଲାସ୍ ଆଲୋକ । ଶୁଭ୍ରା ତା ଶୁଭ୍ର ବିଛଣାରେ ଗଡୁଥିଲା । ନୂଆକରି 'ଦୁଇରେ ଦୁଇ ମିଶିଲେ ଚାରିର' ଫର୍ମୁଲା ସହିତ କ୍ରମଶଃ ପରିଚିତ ହେଉଥାଏ । ମନ ଭିତରେ ଆଶଙ୍କା କିଛି କ'ଣ ଘଟିବ ଆଜି ! ଶରୀର ଭିତରେ କ'ଣ ଗୋଟେ ଉତ୍ତେଜନା-ସେକ୍ସ, ଉଦ୍‌ବେଗ ! ସେ ଶୋଇପାରୁ ନଥିଲା, ଥରକୁ ଥର ବିଛଣାରୁ ଉଠି ପଡୁଥିଲା କାଳିସୀ ଲାଗିଲା ପରି, ପେଟେ ପାଣି ପିଉଥିଲା ସୋରେଇରୁ ଓ ପୁଣି ବିଛଣାରେ ପଡ଼ି ଆଖି ବୁଜୁଥିଲା, କିଛି ସ୍ମୃତି ନାହିଁ, କିଛି ଅନୁଭୂତି ନାହିଁ, ତେଇଶିଟି ବର୍ଷ କଟିଯାଇଛି ଖଣ୍ଡିଏ ସାଦା କାଗଜ ପରି, ଅଥଚ ଆଜି କାହିଁକି ଏକ ଅଜଣା ଉତ୍ତେଜନା ତାକୁ ବିବ୍ରତ କରୁଥିଲା ।

କ'ଣ ଈଶ୍ୱରଙ୍କ ଇଚ୍ଛା, ଆଜି କ'ଣ କିଛି ଘଟିଯିବ ଯାହା ଅବଶିଷ୍ଟ ଜୀବନର ଗୋଟିଏ ସ୍ମୃତି ହୋଇ ରହିଯିବ । ଝରକା ସେପଟର ବିରାଟ ଝଙ୍କାଳିଆ ବରଗଛ ପରି । ସତକୁ ସତ ସେଦିନ ଏମିତି ଏକ ଘଟଣା ଘଟିଥିଲା ଯାହା ଥିଲା ଏକାନ୍ତ ଅପ୍ରତ୍ୟାଶିତ ଓ ଅନାକାଂକ୍ଷିତ ।

କବାଟରେ ଆଘାତ ହେଲା । ଶୁଭ୍ରା କୋଠରୀର ଆଲୋକ ଦେଲା । ରାତି ଦୁଇଟା । ମନରେ କିଛି ଭୟ, କିଛି ଉତ୍କଣ୍ଠା, କିଏ ଏ ରାତିର ଦ୍ୱିତୀୟାର୍ଦ୍ଧରେ ଆସିପାରେ ! କେହି ଅସାମାଜିକ ଲୋକ ! କେହି ନିଜ ସଂସାର ଲୋକ ବା କେହି ଅଜଣା ଲୋକ । କବାଟ ଖୋଲିବା ନଖୋଲିବାର ଦ୍ୱନ୍ଦ୍ୱରେ ସେ ଗୁନ୍ଧି ହୋଇ ପଡୁଥିଲା । କେହି ଆଶ୍ରୟ ପ୍ରାର୍ଥୀ ଯଦି ହୋଇଥିବ ! ଏକ ଶୀତଳ ମାନବିକତା ଓ ଅପରିପକ୍ୱ ମାତୃତ୍ୱ ତାକୁ ଉଦ୍‌ବେଳିତ କରିଦେଲା । କବାଟରେ କ୍ରମାଗତ ଆଘାତ ଚାଲୁ ରହିଥିଲା ଓ ଚାପା କଣ୍ଠରେ ଶୁଣା ଯାଉଥିଲା, 'କବାଟ ଟିକେ ଖୋଲନ୍ତୁ' ।

ଶୁଭ୍ରା ଦୃଢ଼ ହୋଇଗଲା ଓ ଅପ୍ରତ୍ୟାଶିତ ଘଟଣାଟିକୁ ସାମ୍ନା ହେବା ପାଇଁ ଦରଜା ନିକଟକୁ ଗଲା ଏବଂ କବାଟଟି ଖୋଲିଦେଲା ।

'ଆରେ ତୁ! ହତବାକ୍ ହୋଇଗଲା ଶୁଭ୍ରା । ଏମିତି ଏକ ବର୍ଷା ରାତିରେ! ଆରେ ତୁ କେଉଁଠି ଥିଲୁ, କେଉଁଠୁ ଆସିଲୁ କ'ଣ ପାଗଳ ହୋଇଗଲୁଣି ନା କ'ଣ ।' ସେ ବର୍ଷାରେ ସମ୍ପୂର୍ଣ୍ଣ ଭିଜି ଯାଇଥିଲା, ଦିଶୁଥିଲା ବାଡ଼ିପଟ ଅଗଣାରେ କାକୁସ୍ଥ ହୋଇ ଠିଆ ହୋଇଥିବା, କଣ୍ଢ ଫିଟି ନଥିବା ବର୍ଷା ଭିଜା ଗୋଟିଏ ଗଞ୍ଜା ପରି ।

ସେ କିଛି କହୁନଥିଲା, ମୁହଁ ତଳକୁ କରି ଠିଆ ହୋଇଥିଲା, ଲାଗୁ ଥିଲା କେମିତି ମାଦକ ଦ୍ରବ୍ୟର ପ୍ରଭାବରେ ସେ ତା'ର ଭାରସାମ୍ୟ ହରାଇଛି ଓ ଗୋଟିଏ ନିଦ-ଚଲାଳୀ ପରି କେଉଁଠୁ କ'ଣ ଚାଲି ଆସିଛି ନିଜ ନିଜ ଅଜଣାରେ । ସେ ମୁହଁ ଟେକିଲା । ତା ଓଠ ଦୁଇଟିରେ ଧାରେ ଲାଜୁଆ ହସ ଖେଳିଗଲା ଓ ସେ ଶୁଭ୍ରାକୁ ଠେଲିଦେଇ କୋଠରୀ ଭିତରକୁ ପଶିଗଲା ଏବଂ ପରେ ପରେ ଯେଉଁ କାର୍ଯ୍ୟମାନ କଲା ତାହା ଜଣେ ନର୍ମାଲ ଲୋକଠାରୁ ଆଶା କରାଯାଇ ନପାରେ । ଅବଶ୍ୟ ସେ ଥିଲା ଜଣେ ନୂଆ କିଶୋର ଯଦିଓ ଯୌବନ ତା ହାତମୁଠାରେ, ଯେମିତି ସେଇ ଆଚରଣ ପ୍ରକାଶ କଲା ସେ ତା କାର୍ଯ୍ୟକଳାପରେ । ତା'ର ପ୍ୟାଣ୍ଟ ସାର୍ଟ ଖୋଲିଦେଲା । ଅଲଗୁଣିରେ ଥିବା ଟାୱେଲ୍‌ଟେ ଆଣି ଦେହ ହାତ ପୋଛିଦେଲା ଓ ସେଇ ଟାୱେଲଟି ବେଢ଼େଇ ଦେଇ ବିଛଣାରେ ଚିତ୍ ହୋଇ ଗଡ଼ିଗଲା ଯେମିତି କଲିକତିଆ ସ୍ୱାମୀଟିଏ ଦୀର୍ଘ ଦିନ ପରେ ତା'ର ସ୍ତ୍ରୀକୁ ଭେଟୁଛି ।

ଶୁଭ୍ରା କବାଟ ବନ୍ଦ କଲା ଓ ଚିନ୍ତା ସମୁଦ୍ରରେ ଉବୁଟୁବୁ ହୋଇ ତା' ନିକଟକୁ ଆସିଲା । ସେ କ୍ରମେ ଦୁଃଖରେ ଫାଟି ପଡୁଛି, କଇଁ କଇଁ ହୋଇ କାନ୍ଦିପାରେ ବି । ଯାଦୁ ପରି ଏସବୁ କ'ଣ ଘଟିଗଲା ବା ଘଟି ଯାଉଛି । ସେ ତା' ପାଖକୁ ଗଲା ଓ ତାକୁ କିଛି କଥା ପଚାରିବାକୁ ଭାବିଲା । ଶୁଭ୍ରା କିଛି କହିବା ପୂର୍ବରୁ ସେ ତା ହାତଟିକୁ ଜାବୁଡ଼ି ଧରିଲା ଛାତିରେ, ଜାକିଦେଲା ଓ କହିଲା ବସ୍ ମୋ ପାଖରେ । ତା ଦେହ ଗରମ ଲାଗୁଥିଲା, ବୋଧହୁଏ ଦେହରେ ଜ୍ୱର ଥିଲା; ପୁଣି ତା'ର ଏ ଆଚରଣରେ ଶୁଭ୍ରା ସ୍ତବ୍ଧ ହୋଇ ଯାଇଥିଲେ ବି ସମ୍ମୋହିତ ଅବସ୍ଥାରେ ତା କଡ଼ରେ ବସିପଡ଼ିଲା । ତା ମୁହଁକୁ ନିଠେଇ ଚାହିଁଲା, ବଣ୍ଟି ବୋଲି ଡ଼ାକେ ତାକୁ । ସେ ସ୍କୁଲରେ ପଢ଼ିବା ବେଳେ ବଣ୍ଟି ମାଟି ଗୋଟାକିରେ ସ୍ଲେଟରେ ଶୂନ୍‌ଟାକୁ ମଡ଼ାଇ ମଡ଼ାଇ ଗୋଟିଏ ବିରାଟ ଧଳା ଗୋଲ କରି ଦେଉଥିଲା, ଆସିବାଠାରୁ ବଣ୍ଟି ମୁହଁରେ ସେଇ ଲାଜୁଆ ହସଟି ଫିକସ୍ ହୋଇଯାଇଛି, କିଛି ପରିବର୍ତ୍ତନ ଘଟୁନି ।

'ତୋ ଦେହରେ ତାତି, ତୋତେ କ'ଣ ଜ୍ୱର', ଶୁଭ୍ରା କହିଲା । ସେ କିଛି

କହିଲା ନାହିଁ । 'ତୁ କେଉଁଠୁ ଆସିଲୁ ? ବାଲେଶ୍ୱରରୁ, ବାରିପଦାରୁ, ରାଉରକେଲାରୁ ନା କେଉଁଠୁ ଟ୍ରେନ୍‌ରେ ଆସି ଓହ୍ଲାଇଲୁ ?' ସେ କିଛି କହିଲା ନାହିଁ, ସେମିତି ହସୁଥିଲା । ଶୁଭ୍ରା ମନକୁ ମନ ଚିଡ଼ିଗଲା' ଆଉ କ'ଣ କେଉଁ ଗ୍ରହମଣ୍ଡଳରୁ ଖସିପଡ଼ିଲୁ ! କ'ଣ ତୋର ଇଚ୍ଛା, କାହିଁକି ଏମିତି ହେଉଛୁ, କେବେ ଯିବ ତୋ'ର ପାଗଳାମି । ସେ କିଛି କହିଲା ନାହିଁ ଓ ପୂର୍ବପରି ତା ମୁହଁରେ ସେଇ ହସର ଧାରଟି ଥିଲା । ଶୁଭ୍ରା କିଛି ସମୟ ନୀରବ ରହିଲା । ତା ପରେ ମୁହଁ ଖୋଲିଲା– କିଛି ଖାଇଛୁ ? ସେ କିଛି କହିଲା ନାହିଁ । ଉଭୟ ଚୁପ୍‌ଚାପ । କିଛି ସମୟ ଗଡ଼ିଗଲା । ମୁଁ ଟିକେ ତେଲ ଗରମ କରି ଆଣେ, ତୋ ଦେହରେ ବହୁତ ତାତି ।

ସେ ମନା କଲା, କହିଲା ଏଇଠି କେବଳ ବସ୍ । ମୋତେ ଭାରି ଭୋକ, ପିଲାଟି ଦିନରୁ ଆଜି ଯାଏ ଖାଇନି କିନ୍ତୁ ।

ତାହାହେଲେ ତୋ ପାଇଁ ଖାଇବାକୁ କିଛି ଆଣେ ।

ସେ ମନା କଲା ଓ କହିଲା ତୁ କେବଳ ବସ୍ ମୋ ପାଖରେ । ଦେହରୁ ମୋର ତାତି ଚାଲିଯିବ, ଭୋକ ମରିଯିବ ଓ ପରେ ପରେ ସେ ବଡ଼ ଅଦ୍ଭୁତ ଆଚରଣ କଲା– ଶୁଭ୍ରାର ମୁହଁକୁ ତା' ଆଡ଼କୁ ଟାଣି ନେଲା ଓ ଜୋର୍ କରି ତା ଗାଲ, ଏବଂ ଦେହର ସବୁ ଅଂଶରେ ଜୋର୍ କରି ଚୁମା ଦେବାକୁ ଲାଗିଲା ।

ଏ ବଣ୍ଟି କି ପିଲାଳିଆମି ଇଏ ଏଇ ବଣ୍ଟି ବଣ୍ଟି ଚାରିଆଡ଼େ ଆଲୁଅ ବଣ୍ଟି ଇ...ଇ...ଇ... ସେ ନିସ୍ତେଜ ହୋଇଗଲା ଓ ଅନୁଭବ କଲା ବଣ୍ଟିର ତାତି, ଭୋକ ତାକୁ କେମିତି ସଂକ୍ରମିତ କରୁଛି କ୍ରମେ । ଘର ଭିତରେ ବି ବର୍ଷା ପବନ, ବିଜୁଳି, ଘଡ଼ଘଡ଼ି । ସେ ପବନରେ ବିପର୍ଯ୍ୟସ୍ତ ତା' କେଶରାଶି, ବିପର୍ଯ୍ୟସ୍ତ ସାୟା ଶାଢ଼ୀ, ବ୍ଲାଉଜ୍, ବ୍ରା, ଟାୱେଲ ଇତ୍ୟାଦି । ବଣ୍ଟି ତା' ପୋଷାକପତ୍ର ପିନ୍ଧି ବାହାରିଗଲା ସେଇ ଝଡ଼ବର୍ଷାର ତାଳ ସହିତ ତାଳ ଦେଇ । ପାଖ ଝୁମ୍ପୁଡ଼ିରୁ ଭକ୍ତ ଭିକାରୀଟି ଖଞ୍ଜଣି ଧରି ପରଦିନ ପାଇଁ ପ୍ରସ୍ତୁତ ହେଲାଣି "ଓଲଟ ବୃକ୍ଷେ ଖେଳୁଛି ଲୋଟଣି ପାରା" ପଦଟି ଦୋହରାଇ ।

ସେ ଯେମିତି ଆସିଥିଲା ସେମିତି ଚାଲିଗଲା ସେଦିନ, ସେ କିଶୋରଟିଏ ନୁହଁ ଯୁବକଟିଏ ବୋଲି କାନରେ ଫିସ୍ ଫିସ୍ କରି କହିଦେଲା । ଆଉ ମୋ କଥାରେ ପ୍ରତିବାଦ କରି କହିଥିଲା ସତ୍ୟ ପ୍ରକାଶ ହୁଏ ଆଲୋକରେ ଅନ୍ଧାରରେ ନୁହେଁ । ମୁଁ ପୁନର୍ବାର ଆସିବି, ତୋତେ ହଳଦୀ ରଙ୍ଗର ଶାଢ଼ୀ ପିନ୍ଧାଇବି, ନିଜ ହାତରେ ଚୁହା

ଚନ୍ଦନରେ ତୋ ଦେହକୁ ସୁରଭିତ କରିବି - ତୋ ଭାଇ ଭଉଣୀ ମଙ୍ଗଳ ଗୀତିକା ଲେଖିବେ । ହେ ଈଶ୍ୱର ଆଶିଷ ଦିଅ ନବଦମ୍ପତିଙ୍କୁ । ଲାଗ ଲାଗ ବର୍ଷ ଆସୁଥିଲା କିଛି ଦିନ, ସେ ଘଟଣାଟି ପରେ ଅଥଚ ଦିନେ ଅକସ୍ମାତ୍ ଅନ୍ତର୍ଦ୍ଧାନ ହୋଇଗଲା ସେ ଶୁଭ୍ରା ପତିର ଜୀବନରୁ ।

ସେ ହସିଦେଲା, କେତେ ବର୍ଷ ବିତି ଗଲାଣି । ମୁଁ ଅଲକ୍ଷଣି ତା'କୁ ବିଶ୍ୱାସ କରି ଜୀବନରେ ସବୁ ହରାଇଛି- ଆଦରି ନେଇଛି । 'ଦୁଇରେ ଦୁଇ ମିଶିଲେ ଚାରି ହୁଏ'ର ସତ୍ୟଟାକୁ । ଏ ଜୀବନରେ ନା' ଅଛି ହଳଦୀ ରଙ୍ଗର ଶାଢ଼ୀ, ନା ଚୁହା ଚନ୍ଦନର ଗନ୍ଧ ନା ମଙ୍ଗଳ ଗୀତିକା, ମୁଁ ସବୁ ଏଡ଼େଇ ଆସିଛି ବାପା, ମା, ସମାଜ, ସଂସାର କେବଳ ତାକୁ ବିଶ୍ୱାସ କରି । କେତେ ତା ଖବର ରଖିଛି ତା'ର ପ୍ରତିଟି ଚିଠିକୁ ଛାତିରେ ଚାପି ଧରିଛି, ଚୁମା ଦେଇଛି, ଭୁଲି ଯାଇଛି ବାସ୍ତବତାକୁ, ତା ମୋ ବୟସର ବ୍ୟବଧାନ । ନା, ମୁଁ ରାଧାଟିଏ ନା ମୁଁ ଗୋପୀଟିଏ... କ'ଣ ହୋଇ ମୁଁ ରହିଗଲି ।

ବାପା, ମା'ଙ୍କୁ କଷ୍ଟ ଦେଲି, ଭାଇ ହାଣିଦେବ ବୋଲି କହିଲା । ସବୁ ସହିଲି । ସବୁ ସହିଲି କେବଳ ତା'ରି ପାଇଁ, ବିଶ୍ୱାସ କଲି ତା ଚିଠିକୁ, କେଉଁ ଅପରାଧଟା ବା ମୁଁ କଲି । ଏମିତି ବିଶ୍ୱାସ କରିବାଟା କ'ଣ ଗୋଟିଏ ଅସୁଧୁରା ଭୁଲ୍ ଜୀବନରେ ? ସେ ପାହାଚ ପରେ ପାହାଚ ଅତିକ୍ରମ କରି କମ୍ପାନୀ ଚାକିରୀର ଶେଷ ସୀମାରେ, ସେ କହିଛି ଦିନେ ନା ଦିନେ ଆସିବ ଓ ତା'ର ସବୁ ପ୍ରତିଶ୍ରୁତି ପୂରଣ କରିବ । କରୁ ବା ନକରୁ ଆଉ କ'ଣ ଅଛି ଏ ଦୁନିଆରେ ! ପଚାଶ, ଷାଠିଏର ବୟସ ମୋର ଝୁଲୁଛି ଲୋଳିତ ଚର୍ମରେ, ଯୌବନ ମୋର ଝୁଲୁଛି ଦୁଇଟି ପରିତ୍ୟକ୍ତ ବାୟା ବସା ପରି, ପକ୍ଷୀ ଉଡ଼ି ଯାଉଛନ୍ତି ବହୁ ଦିନରୁ ।

ସେ କୁଆଡ଼େ ସଂସାର ଗଢ଼ିବା ଭାଙ୍ଗିବା ଖେଳରେ । ଶୁଭ୍ରା କଡ଼ ଲେଉଟାଇଲା । ତା'କୁ ମନେହେଲା ବାହାରର ସୁନ୍ଦର ପ୍ରକୃତି ତାକୁ ସମ୍ବେଦନା ଜଣାଉଛି, ତା' ଫଳରେ କିଛି ଦେହରେ ନୂତନ ଜୀବନ ଶକ୍ତି ଭରି ଦେବାକୁ ପ୍ରାଣାନ୍ତକ ଉଦ୍ୟମ କରୁଛି । ଶୁଭ୍ରା ମୁହଁରୁ ଦୁଃଖ ଓ ଅସାମର୍ଥ୍ୟର ହସଟିଏ ବାହିଗଲା - ଜହ୍ନ ତୋ ଆଲୋକରେ ମୋତେ ପୋଡ଼ି ଦେ, ଗଙ୍ଗଶିଉଳିର ବାସ୍ନା ମୋ ଦେହର ପୋଡ଼ା ଗନ୍ଧକୁ ତଡ଼ି ଦେ । ମୋ ଜୀବନ ଇତିହାସ ଏତିକିରେ ସୀମବଦ୍ଧ ରହୁ, ସେ ତା ଜୀବନ ସଫଳତାର ଶେଷ ସୀମାରେ ପହଞ୍ଚୁ । ଗୋଟିଏ ମୁହୂର୍ତ୍ତରେ ସାରା ଜୀବନର ସ୍ୱାଦ ସେ ମୋ ମନରେ, ପ୍ରାଣରେ, ଦେହରେ ଭରି ଦେଇଛି । ମୁଁ ଅଲକ୍ଷଣୀ କାହିଁକି ତା' ଅମଙ୍ଗଳ ପାଞ୍ଚିବି !

ଶୁଭ୍ରା ଉଠିବାକୁ ଚେଷ୍ଟା କଲା, ଉଠିପାରିଲା ନାହିଁ । ଦେହ ନିସ୍ତେଜ ଲାଗୁଛି । ସଂସାରଟା ଗଢ଼ିଥିଲେ ବର୍ତ୍ତମାନ ପୁଅ ବା ବୋହୂ ବୋଧହୁଏ ଗୀତାପାଠ କରିଥାନ୍ତେ ମୋ ମୁଣ୍ଡ ଉପରେ ବସି । ସେମିତି କିଛି ଘଟିବାର ନାହିଁ ମୋ ଜୀବନରେ । ନଘଟୁ ମୁଁ ଏକୁଟିଆ ନୁହଁ, ମୋ ପରି ଅନେକ ଏ ଦୁନିଆରେ ।

କବାଟରେ ଠକ୍‌ଠକ୍ ହେଲା ଠିକ୍ ଯେଉଁଦିନ ବଣ୍ଟି ଆସିଥିଲା ସେହିପରି । ସତରେ କ'ଣ ବଣ୍ଟି କଥା ରଖିଲା ! ସେ କ'ଣ ହାତରେ ସବୁ ସରଞ୍ଜାମ ଧରିଥିବ - ହଳଦୀ ରଙ୍ଗର ଶାଢ଼ୀ, ଦୋଳମୁକୁଟ, ଚୁଆ, ଚନ୍ଦନ, ମଙ୍ଗଳ ଗୀତିକା ନା ଛଅଖଣ୍ଡ କାଠ, ଭଙ୍ଗା କଳସ ଓ ଲିଆ କଉଡ଼ି । କେମିତି ଏକ ଅଜଣା ଶକ୍ତି ତା ଦେହରେ ଭରିଗଲା ଓ ସେ ଉଠି ବସିଲା । ଦରଜାର ଶବ୍ଦକୁ କାନେଇଲା, ଭ୍ରମ ନୁହେଁ ତ ? ନା ସତରେ କେହି ଡ଼ାକୁଛି । ସେ କଷ୍ଟରେ ଉଠିଲା ଓ କବାଟ ଖୋଲିଲା ।

ବଣ୍ଟି ! ସେ କାନ୍ଦି କାନ୍ଦି ଫାଟି ପଡ଼ିଲା; ଏ କ'ଣ ଦେଖିଲିରେ ବଣ୍ଟି ତୁ ଏରୁଣ୍ଡି ବନ୍ଧ ଡ଼େଇଁନୁ କାହିଁକି ? ତୁ କାହିଁକି ଦିଶୁଛୁ ଗୋଟେ ପାଦ୍ରୀ ବାବା ପରି, କାହିଁକି ତୋ ଶ୍ମଶ୍ରୁ ଏମିତି ଧଳା ହୋଇ ଯାଇଛି । କ'ଣ ହୋଇଛିରେ ତୋର ! ଭିତରକୁ ଆ ।

ବଣ୍ଟି ସେମିତି ଠିଆ ହୋଇଥିଲା ଓ ତାକୁ ଇଙ୍ଗୀତରେ କହୁଥିଲା, ସକାଳ ହୋଇଯିବ ଶୀଘ୍ର ଘରୁ ବାହାରିଆ; ବାହାରିଆ ଦେଖିବୁ ଜହ୍ନ ଆଲୋକ । ଗଙ୍ଗଶିଉଳିର ଏ ଦୁନିଆଟା କେତେ ପ୍ରାଣବନ୍ତ ସତେ । ଏ ଛୋଟିଆ କୋଠରୀ ନର୍କଟିଏ, ଚାଲିଆ ଆମେ ଚାଲିଯିବା ଖୋଲା ଦୁନିଆକୁ ସେଠି କେହି ଚିହ୍ନିବେନି ଆମକୁ, ଆମେ ଅଶରୀର ହୋଇଯିବା, ଆମେ ଶାଶ୍ୱତ ହୋଇଯିବା ।

ସେଦିନ ପରି ଶୁଭ୍ରା ହିପ୍ନୋଟାଇଜ୍‌ଡ଼ ହୋଇ ଯାଇଥିଲା ଓ ଧୀରେ ଧୀରେ ଏରୁଣ୍ଡିବନ୍ଧ ପାରହୋଇ ବଣ୍ଟିକୁ ଅନୁସରଣ କରୁଥିଲା । ସେ ପିନ୍ଧିଥିଲା ଗୋଟିଏ ଧଳା ଶାଢ଼ୀ ଓ ତା'ର ବାଳ ସବୁ ଖୋଲା ଥିଲା । ସେମାନେ ଚାଲୁଥିଲେ କେଉଁ ଲକ୍ଷ୍ୟହୀନ ପଥରେ... ଦୁଇଟି ଯାତ୍ରୀ ପୁରୁଣା ଜଗନ୍ନାଥ ସଡ଼କରେ ଶ୍ରୀକ୍ଷେତ୍ରକୁ ମୁହଁ କରି । ଏଣେ ଏ ପାର୍ଥିବ ଜଗତରେ ଗୋଟେ ନୂଆ କଥା ଘଟୁଥିଲା- ସାରା ପରିବେଶକୁ ଛାଇ ଦେଇଥିଲା ଗୋଟାଏ ଅଛିଣ୍ଡା ରାଗ ସଂଗୀତ ଓ ଖେୟାଲର ଗୋଟିଏ ଗୋଟିଏ ଶବ୍ଦର ରେହାଜ୍ ପରି ସେଇ ରାଗ ସଂଗୀତ ଭିତରେ ପ୍ରତିଧ୍ୱନିତ ହେଉଥିଲା "ହରି ନାମ" ଓ "ରାମ୍ ନାମ୍" ସତ୍ୟ କେବଳ ଏ ଜୀବନରେ ବା ବିରାଟ ଦୁନିଆରେ ।

(୧୯୯୫)



## ଶେଷରେ ଧର୍ମ ବୁଡ଼ିଲୁରେ ଗନ୍ଧି !

ପାଠକ ଭାଇ ! କ୍ଷମା କରିବେ, ଉପସଂହାରରୁ ଗଳ୍ପଟି ଆରମ୍ଭ କରୁଛି ବୋଲି । ବୁଢ଼ୀ କହିଲା ! 'ହଇରେ ଗନ୍ଧି ! ଶେଷରେ ତୁ ଏୟା କଲୁ ! ଚାରିପାଦ ନ ହେଲେ ପାଦେ ଧର୍ମ ଅଛି ବୋଲି ସଂସାର ଆତଜାତ ହେଉଛି । ନହେଲେ କେଉଁକାଳରୁ ଏ ପୃଥିବୀ ଧ୍ୱଂସ ପାଇ ଯାଆନ୍ତାଣି । ହଉ ଯାହା କଲୁ କଲୁ, ମା ବୋଲି ଡ଼ାକିଥିଲୁ । ମା ପାଟିରେ କ'ଣ କେବେ ଅଭିସମ୍ପାତ ବାହାରେ ! ଠାକୁରେ ତୋର ବଡ଼ତି କରନ୍ତୁ । ତୁ ତୋ ଧର୍ମ ବିଶ୍ୱାସକୁ ଧରି କୋଟି ପରମାୟୁର ଅଧିକାରୀ ହ । ହେଲେ ବାପା, ଏତକ ରଖିଥିବୁ- ସଂସାରରୁ ସତ କେବେ ଯିବ ନାହିଁରେ ।'

ଗନ୍ଧିଆ ଓରଫ ଗନ୍ଧର୍ବ ଜଣେ ଧର୍ମପ୍ରାଣ ବ୍ୟକ୍ତି । କେବଳ ଧର୍ମପ୍ରାଣ ବ୍ୟକ୍ତି ତା' ପାଇଁ ଯଥେଷ୍ଟ ବିଶେଷଣ ନୁହେଁ, ବରଂ କହିବାକୁ ହେବ ଧାର୍ମିକ ପରମ୍ପରାର ସେ ଏକ ପ୍ରତୀକ । ଦେଖନ୍ତୁ, ଆପଣ ମାନେ କହିବେ ଗନ୍ଧର୍ବଙ୍କ ବିଷୟରେ ଅଧିକ କଥା କୁହାଗଲା । ବିଶେଷକରି ଏଇ ଶତାବ୍ଦୀର ଧର୍ମହୀନ ଜୀବନଧାରାରେ ଏମିତି ଜଣେ ଧର୍ମପ୍ରାଣ ବ୍ୟକ୍ତି ଥାଇ ପାରନ୍ତି । ଆପଣ ଜାଣନ୍ତି ମିଛ ଲେଖିବା ଆମର ଜାତକରେ ନାହିଁ । ଆମ୍ଭେ ଦୁନିଆକୁ ଦେଖିବୁ, ତା ଭିତରୁ ଗଳ୍ପପୋଯୋଗୀ ଚରିତ୍ର ବାଛିବୁ, ପୁଣି ତାକୁ ମନରେ / ଅନୁଭୂତିରେ ମଜେଇବୁ- ତେବେ ଯାଇ ଦହି ମନ୍ଥାଇଲା ପରେ ମଖନ ବାହାରିଲା ପରି ଆମ୍ଭ ଆଖିରେ ସତ୍ୟ ଧରା ପଡ଼ିବ ଓ ଗଳ୍ପ ମାଧ୍ୟମରେ ତାକୁ ଆପଣଙ୍କ ପାଖକୁ ପଠାଇଦେବୁ ! ସେ ଯେ ଜଣେ ଧର୍ମପ୍ରାଣ ବ୍ୟକ୍ତି, ସେ ବିଷୟରେ ଆମ୍ଭ ପାଖରେ

ଯଥେଷ୍ଟ ପ୍ରମାଣ ମହଜୁଦ ଅଛି ଏବଂ କ୍ରମାନ୍ୱୟରେ ସେ ସବୁ ଆପଣଙ୍କ ସାମ୍ନାରେ ଆମ୍ଭେ ଉପସ୍ଥାପନ କରୁଛୁଁ।

ପ୍ରଥମ ପ୍ରମାଣ- ଗନ୍ଧର୍ବ ରାସ୍ତାରେ ଚାଲି ଯାଉଥିଲାବେଳେ, ସେ ସର୍ବଦା ସମାନ୍ତରାଳ ଭାବେ ସାମ୍ନାକୁ ଚାହେଁ, ପଛକୁ ନୁହେଁ କିମ୍ବା ରାସ୍ତାର ଦୁଇକଡ଼କୁ ନୁହେଁ, ତାହାର ମଧ୍ୟ ଆଜ୍ଞା କାରଣ ରହିଛି। ସେ ବହୁ ଶାସ୍ତ୍ରଦର୍ଶୀ। ହୁଏତ ଭୀମଭୋଇଙ୍କର ପଦ କେତେବେଳେ ତାଙ୍କ ମନକୁ ଆସିଛି-

ସ୍ଥାବରୁ ଜଙ୍ଗମ କୀଟରୁ ପତଙ୍ଗ

ଚାହିଁଦେଲେ ଅନୁସରି

ସକଳ ଘଟରେ ପୁରି ନାରାୟଣ

ନୋହେ ସାନବଡ଼ କରି।

ଏହି ନ୍ୟାୟରେ ଯଦି ସେ ତଳକୁ ଅନାନ୍ତି ହୁଏତ ଏକପାଦ ଅଗ୍ରସର ହେବା ତାଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିବ। ରାସ୍ତା ଘାଟ ଏସବୁ କୀଟ ପତଙ୍ଗରେ ପରିପୂର୍ଣ୍ଣ ଏବଂ ସେମାନେ ପୁଣି ନାରାୟଣଙ୍କର ଅଂଶ ବିଶେଷ। ତେଣୁ ରାସ୍ତାରେ ଚାଲୁ ଚାଲୁ କେଉଁ ନାରାୟଣଙ୍କ ଉପରେ ପାଦ ପଡ଼ିଯିବ, ଅଥଚ ତାଙ୍କ ପରି ଧର୍ମପ୍ରାଣ ବ୍ୟକ୍ତି ମହା ମହା ପାପର ଭାଗୀଦାର ହେବେ। ସେଥିପାଇଁ ଉପରକୁ ଚାହିଁ ଚାଲିଲେ କଦବା କେଉଁ ନାରାୟଣ ତାଙ୍କ ପାଦତଳେ ପଡ଼ି ଇହଧାମ ତ୍ୟାଗ କଲେ ତାହା ଅନିଚ୍ଛାକୃତ ପାପରେ ଚାଲିଯିବ ଏବଂ ବିଧିବଦ୍ଧ ପାପର ପରିସର ଭିତରକୁ ଆସିବ ନାହିଁ।

ଦ୍ୱିତୀୟତଃ ରାସ୍ତାକଡ଼କୁ ଚାହିଁବାରେ ବି ତାଙ୍କ ପରି ଜଣେ ଧାର୍ମିକ ପୁରୁଷର ଜୀବନ ପରିସର ମଧ୍ୟକୁ ପାପ ପଶି ଆସିବ। ବିଚିତ୍ର ନୁହେଁ, ପାଠକେ, ଆପଣ ଜାଣନ୍ତି ମଣିଷ ଇନ୍ଦ୍ରିୟ ପରିଚାଳିତ। ଏହି ଇନ୍ଦ୍ରିୟ ପାଇଁ ତା ଜୀବନରେ ଅନେକ ଦୁଃଖ, କଷ୍ଟ, ଅନୁଶୋଚନା, ପାପ। ମଣିଷ ବହୁ ଚେଷ୍ଟା କଲା ଅଥଚ ଏ ଇନ୍ଦ୍ରିୟକୁ ଜୟ କରିପାରିଲା ନାହିଁ। ଗନ୍ଧର୍ବ କିନ୍ତୁ ସେତକ କରିବାକୁ ସମର୍ଥ। ସେ ଜାଣେ ରାସ୍ତାକଡ଼ସବୁ ଅବର୍ଜନାପୂର୍ଣ୍ଣ। ପାଠକେ, ମନେ କରିବେ ନାହିଁ ସେଠାରେ କେହି ମଳତ୍ୟାଗ କରିଛି ବା ମ୍ୟୁନିସିପାଲିଟି ଗାଡ଼ି ଆବର୍ଜନା ଗୁଡ଼ା କୁଢ଼େଇ ଦେଇଛି। କଥା କଣକି ରାସ୍ତା କଡ଼ରେ ଧାଡ଼ିକି ଧାଡ଼ି ଦୋକାନ ଓ ମଝିରେ ସଧବା ସ୍ତ୍ରୀଲୋକର ସିନ୍ଥି ପରି ନାଲି ଗୋଡ଼ିର ରାସ୍ତା। ଆପଣ ଜାଣନ୍ତି- ଏତ ହେଲା ସଭ୍ୟ ସମାଜ। ସ୍ୱାମୀକୁ ଘରେ ବସାଇ

ସ୍ତ୍ରୀ କହିବ ମୁଁ ବଜାର କରିବି, ବାପକୁ ଘରେ ବସାଇ ଝିଅ କହିବ ସାଙ୍ଗଙ୍କ ସହିତ ମୁଁ ବଜାର କରିବି । ବଜାର କରିବା କିଛି ପାପ ନୁହେଁ, ଅସଲ କଥା ପ୍ରଦର୍ଶନୀ ମନୋଭାବ । ଶଳା, କମ୍ପାନୀ ବି ତୟାରି କଲାଣି ସେମିତି ଜିନିଷ- ଛାତି ସମାନ ହୋଇଥିଲେ ବି ତାକୁ ପାଞ୍ଚ ଇଞ୍ଚ ସ୍ଫୀତ କରିଦେବ; ପୁଣି ଷ୍ଟ୍ରାପ୍‌କୁ ଭିଡ଼ି ଦେଲେ ସ୍ତନ ଯୋଡ଼ିକ ଯେମିତି ସ୍ୱାଭାବିକ ସ୍ଥାନଠାରୁ ଉଠି ଯାଉଛନ୍ତି ଚାଖେଣ୍ଡେ ଉପରକୁ । ସ୍ୱାଭାବିକ କଥା- ଦେହର ଗୋପନୀୟ ଅଂଶକୁ ପ୍ରଦର୍ଶନୀର ସାମଗ୍ରୀ କରିବାକୁ ଆଗ୍ରହର ଏକ ପ୍ରତିଯୋଗୀତା ସଂପ୍ରତି । ଏ ବିଷୟରେ ଗନ୍ଧର୍ବ  ବଡ଼ ସେଚତନ । ସେ ଜାଣନ୍ତି ଇନ୍ଦ୍ରିୟ ଭିତରେ ଅସଲ ପାଜି ହେଉଛନ୍ତି ଆଖି ଯୋଡ଼ିକ । ଶଳା, ସେମିତି ତରାଟିକି ରହିଥିବେ । କିହୋ ଠାକୁର ଚାରିଫୁଟରୁ ପାଞ୍ଚ ଫୁଟ, ସାଢ଼େ ପାଞ୍ଚ ଫୁଟ, ଛ' ଫୁଟର ବିରାଟ ଶରୀର ଦେଇଛନ୍ତି; ଚାହିଁବାକୁ ଆଉ କେଉଁ ସ୍ଥାନ ନାହିଁ । ଆଖି ଠିକ୍ ଚାଲିଯିବ ମୁଣ୍ଡଠାରୁ ଦେଢ଼ଫୁଟ ତଳର ସେହି ସ୍ଥାନଟିକୁ । ତେଣୁ ଗନ୍ଧର୍ବ ଜାଣନ୍ତି କଡ଼କୁ ଚାହିଁଲେ ସେହି ବିଭ୍ରାଟ ଘଟିବ ଓ ଶରୀର ମଧ୍ୟରେ ଇନ୍ଦ୍ରିୟମାନଙ୍କ ମଧ୍ୟରେ ଗୋଟିଏ ପ୍ରବଳ ହାନ୍ଦୋଳ ସୃଷ୍ଟି ହେବ । ସେଥିପାଇଁ ତାଙ୍କ ଦୃଷ୍ଟି ସର୍ବଦା ସାମ୍ନାକୁ ସମାନ୍ତର । ପୁଣି ଗନ୍ଧର୍ବର ଭୟ-କେହି ଚିହ୍ନା ଲୋକ ଦେଖା ହୋଇ ପାରନ୍ତି ଓ ସୌଜନ୍ୟ ଦୃଷ୍ଟିରୁ ତାଙ୍କ ସହିତ କିଛି ଅନାବଶ୍ୟକ (ଯାହା ଆଧ୍ୟାତ୍ମିକ ପରିସର ବାହାରେ) କଥାବାର୍ତ୍ତାରେ ସମୟ ନଷ୍ଟ ହୋଇପାରେ । ତେଣୁ ଆବଶ୍ୟକୀୟ କର୍ମ ସାରି ନିଜ ଘରକୁ ଫେରିଯିବା ତାଙ୍କର ଏକ ନିତ୍ୟ ନୈମିତ୍ତିକ ଅଭ୍ୟାସ । ଅବଶ୍ୟ ତାଙ୍କ ଏବଂ ବିଧ ଗୁଣ ଯୋଗୁଁ ତାଙ୍କୁ ଅନେକ ଅସାମାଜିକ ବୋଲି କହନ୍ତି । କିନ୍ତୁ ମୁଁ ହଲପ୍ କରି କହିପାରେ ସାରା ଗନ୍ଧର୍ବଙ୍କ ପରି ପାଞ୍ଚଟି ଲୋକ ହେଲେ ପୁନର୍ବାର ପ୍ରାଚୀନ ଭାରତଟି ଫେରି ଆସନ୍ତା । ସେତେବେଳେ ଗନ୍ଧର୍ବଙ୍କ ପରି ଲୋକର ଅଭାବ ଥିବାରୁ ଗାନ୍ଧୀ ବୁଢ଼ାଟା ନାଁ ମାରିନେଲା ।

ଥରେ ଆମ ସହରରେ ଗଧିଆ ମାନଙ୍କର ଉପଦ୍ରବ ଦେଖା ଦେଲା । ଆପଣ ଭାବୁଥିବା ସେ ଗଧିଆ ବା ହେଟା ବାଘ । ନାଁ, କେତେଗୁଡ଼ିଏ ଯୁବକ ଗଧିଆ ପରି ବ୍ୟବହାର କଲେ । ମୁଁ ସତ କହୁଛି ଏଇ ଗଧିଆ ଧାରଣାଟି ନେଇଛି ମୋର ଗୁରୁ ଶାନ୍ତନୁ ଆଚାର୍ଯ୍ୟଙ୍କ 'ଅଦିନ ବଉଳ' ଗପରୁ । ନେଲି ଏବେ କ'ଣ ପ୍ରଣବ ଅଶୁଦ୍ଧ ହେଇଗଲା । ଇଲିୟଟଙ୍କ ପରି କବି ତ କହିଛନ୍ତି କେହି ଲେଖକ ପୂର୍ଣ୍ଣ ମୌଳିକ ନୁହଁନ୍ତି । ମୁଁ ଏବେ କଉ ବଡ଼ ଲେଖକଟା କି? ଗଧିଆ ଉପଦ୍ରବ ସହର ଲୋକଙ୍କୁ ଯେତେ ବିବ୍ରତ ନ କଲା, କଲା ଗନ୍ଧର୍ବଙ୍କୁ । ସେ ସେମାନଙ୍କୁ ବାଟକୁ ଆଣିବାକୁ

ଗୋଟିଏ ନୈତିକ କର୍ତ୍ତବ୍ୟ ବୋଲି ମନେ କଲା । ଆହ୍ୱାନ ଦେଲେ ସହରର ଅନ୍ୟାନ୍ୟ ଭଦ୍ରଲୋକଙ୍କୁ । ସେଥିରେ ଆନ୍ତରିକତା ଥିଲା, ଗୋଟିଏ ଆଧ୍ୟାତ୍ମିକ ଆବେଦନ ଥିଲା । ଫଳରେ ଗନ୍ଧର୍ବଙ୍କ ନେତୃତ୍ୱରେ ଗୋଟିଏ ଛୋଟିଆ ଶୋଭାଯାତ୍ରା ବାହାରିଲା ଗଧିଆମାନଙ୍କୁ ସମ୍ମୁଖୀନ କରିବାକୁ । ଅଥଚ ଗଧିଆମାନେ ଏତେ ବିଶୃଙ୍ଖଳ ଥିଲେ ଯେ ଏ ଦଳଟିକୁ ଦେଖିଲାମାତ୍ରେ ଦାନ୍ତ ନେଫିଡ଼ି ଏମିତି ଖେଦି ଆସିଲେ, ଫଳରେ ଶୋଭାଯାତ୍ରାଟି ଛିନ୍ନଛତ୍ର ହୋଇଗଲା । ସବୁଠାରୁ ମଜାକଥା ନିନ୍ଦୁକମାନେ କହିଲେ, କୁଆଡ଼େ ପ୍ରଥମେ ଗନ୍ଧର୍ବ ଶୋଭାଯାତ୍ରାରୁ କାଇଦାରେ ଖସିଗଲେ । କିନ୍ତୁ କେତେକ ଭଲଲୋକ କହନ୍ତି ସେହି ସମୟରେ ଗଧିଆମାନଙ୍କର ହାର୍ଦ୍ଦିକ ପରିବର୍ତ୍ତନ ପାଇଁ ଗନ୍ଧର୍ବ ନିକଟବର୍ତ୍ତୀ କୌଣସି ଲୋକର ଘରେ ଧ୍ୟାନସ୍ଥ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ।

ପାଠକେ ! କ୍ଷମା କରିବେ । କହୁ କହୁ ବହୁତ କଥା କହିଦେବା ଆମର ଗୋଟାଏ ବଦ ଅଭ୍ୟାସ । ଏବେ ମୁଁ ମୂଳ କଥାକୁ ଫେରୁଛି । ହଁ, ଦିନେ ଗନ୍ଧର୍ବ ବଜାରରୁ ଫେରୁ ଫେରୁ କାହିଁକି କେଜାଣି ତାଙ୍କ ସ୍ୱାଭାବିକ ଅଭ୍ୟାସର ବ୍ୟତିକ୍ରମ କରି ଗୋଟିଏ ବରଗଛ ମୂଳକୁ ଚାହିଁ ଦେଲେ ଓ ଦେଖିଲେ ବୁଢ଼ୀଟିଏ ବଡ଼ ଅସହାୟା ଅବସ୍ଥାରେ ଠିଆ ହୋଇଛି । ବୁଢ଼ୀଟିକୁ ଦେଖିଲା ମାତ୍ରେ ତାଙ୍କ ଭିତରେ ସନ୍ତାନ ସୁଲଭ ଭାବର ଉଦ୍ରେକ ହେଲା ଓ ବୁଢ଼ୀଟିକୁ ମା' ବୋଲି ଡ଼ାକି ଦେଲେ । ବୁଢ଼ୀଟି କେମିତି ମରୁଭୂମିରେ ମୃଗଦ୍ୟାନର ସନ୍ଧାନ ପାଇଲା ପରି ମନେ କଲା ଓ କହିଲା- "ମା' ବୋଲି ତ ଡ଼ାକିଲୁ, ଏବେ ଟିକେ ଥାନ ଦେ ମୁଣ୍ଡ ଗୁଞ୍ଜିବାକୁ ।"

ଗନ୍ଧର୍ବ ଟିକେ ହସିଦେଲା (କହିବା ବାହୁଲ୍ୟ ଗନ୍ଧର୍ବର ହସଟି ବଡ଼ ମନ ଲୋଭା), କହିଲା- ଏଇ କଥା, ଆ ମୋ ସାଂଗରେ । ସେ ନିକଟରେ ଗୋଟିଏ ଟିଣ ଛପର ଘର ଦେଖାଇ ଦେଲା । କହିଲା- "ମା' ବୋଲି ତୋତେ ଗ୍ରହଣ କଲି ଆଜିଠୁଁ ଏଇଟି ତୋ ଘର ।"

ବୁଢ଼ୀ କୃତଜ୍ଞ ହେଲା ଓ ଠାକୁରଙ୍କୁ ଡ଼ାକିଲା ଏପରି ମହତ ଲୋକର ବଡ଼ତି କର । କୋଟିଏରେ ଗୋଟିଏ ଲୋକ ମିଳିବେ ତା'ପରି ଦୁନିଆରେ ।

ବୁଢ଼ୀ ମହା ଆରାମରେ ଦିନ କାଟିବାକୁ ଲାଗିଲା । ସପ୍ତାହରେ ଦିନେ ଛୁଟିଦିନ ଦେଖି ଗନ୍ଧର୍ବ ବୁଢ଼ୀ ପାଖକୁ ଆସେ, ମା' ବୋଲି ଡ଼ାକେ; ପାନ ଖାଏ ଓ ପଚାରେ, ମା' ଭଲ ଅଛୁ ତ ଲୋ !

"ଯାହା ହାତ ଧରିଥିଲି ସେଇଟା ପୁରା ଅକର୍ମାଟିଏ । ଟିକେହେଲେ ତା' ମନରେ ଭକତି ଭାବ ଥାନ୍ତା । କେତେ କହିଲି ଟିକେ ଠାକୁର ମାଧବଙ୍କୁ ଡ଼ାକେ, ମଣିଷ ହ । ହେଲେ ବାପା ! ମୋ କଥା କ'ଣ ମାନିଲା ବୁଢ଼ା.... ଦେଖିଲି, ସେ ଆଉ ହବନି । କହିଲି- ଚାଲିଲି ବୁଢ଼ା, ତୋ କର୍ମକୁ ଆଦରି ଏବେ ତୁ ରହ ।"

ଗନ୍ଧର୍ବ ଆଶ୍ୱାନା ଦିଏ- "ଦେଖ୍ ମା, ଏ ବିରାଟ ସଂସାରରେ କେହି ନିରାଶ୍ରୟ ନୁହେଁ । ଉପର ଶକ୍ତିକୁ ପୂଜିଲେ ସମୁଦ୍ରରେ ବି ଅରାଏ ଭୂମି ସେ ରହିବା ପାଇଁ ଖଞ୍ଜିଦେବେ । ତୋଠିଁ ସେଇ ଭାବ ଦେଖିଲି, ତୋତେ ମା ବୋଲି ଡ଼ାକିଲି । ଏବେ ନିଶ୍ଚିନ୍ତ ରହ । ବୁଢ଼ା କଥା ଚିନ୍ତା କରନା, ତାକୁ ବି ଠାକୁର ଦେଖିବେ ।"

ପାଠକେ ! ବୁଢ଼ୀର ଦିନ ଏମିତି ସୁଖରେ କିଛିଦିନ କଟିଗଲା । ଦିନେ ସକାଳେ ବୁଢ଼ୀ ଗୋଟାଏ ଅଦ୍ଭୁତ ଦୃଶ୍ୟ ଦେଖିଲା ଏବଂ ଦୃଶ୍ୟଟିକୁ ଅନୁଭବ କଲା ବି । ଗନ୍ଧର୍ବର ମୁହଁ ଫଣ ଫଣ ଓ ସାଙ୍ଗରେ ଜଣେ ସୁଦୃଶ୍ୟ ଯୁବକ । ଗନ୍ଧର୍ବ ସେ ଯୁବକ ସହିତ ବୁଢ଼ୀର ଘର ସାମ୍ନାରେ କିଛି ସମୟ ଠିଆ ହେଲା । ବୁଢ଼ୀ ଭାବିଲା, ଗନ୍ଧର୍ବର କିଛି ବିଗିଡ଼ି ଯାଇଛି ଆଜି । ସ୍ନେହରେ ଡ଼ାକିଲା, "ଆସୁନୁ ବାପ-ଭିତରକୁ ଆ, ବାହାରେ ଠିଆହେଇ ରହିଲୁ କାହିଁକି ।"

ଗନ୍ଧର୍ବ ସୁଯୋଗ ଦେଖି ମୁହଁ ଖୋଲିଲା- "ଏ ବୁଢ଼ୀ ! ତୋତେ ମା' ବୋଲି ଡ଼ାକିଥିଲି ସତ । ହେଲେ ସବୁଦିନ ଡ଼ାକିବି ଯା'ର କିଛି ଅର୍ଥ ନାହିଁ । ତୁ ବୁଢ଼ୀ ହେଲୁଣି, କେଉଁ ଦିନ ଆଖି ବୁଜିଦେବୁ । ମୁଁ ଭାଇଟିଏ ପାଇଛି । ଦୁନିଆରେ ଭାଇଟିଏ ମିଳିବା କେଡ଼େ କଷ୍ଟ ତୁ ଜାଣିନୁ । ତୁ ଏବେ ଘର ଛାଡ଼, ଏଇ ଭାଇଟି ମୋର ଏ ଘରେ ରହିବ ।"

ବୁଢ଼ୀ ତାଜୁବ୍ ହୋଇ ଗନ୍ଧର୍ବର ମୁହଁକୁ ଚାହିଁଥିଲା । ତା ପାଟିରୁ ବାହାରିପଡ଼ିଲା- "ହଇରେ ଗନ୍ଧି ତୁ ପରା ଧର୍ମ କରୁଛୁ ! ତୋର ଏପୁଣି କି ବିଚାର !"

ଗନ୍ଧର୍ବ ଗର୍ଜୀ ଉଠିଲା- "ଧର୍ମ କ'ଣ ଅଧର୍ମ କ'ଣ ସେଇଟା ମୋ ବିଚାର । ତୋର ସେଥିରେ ମୁଣ୍ଡ ଖେଳାଇବାର କିଛି ନାହିଁ । ତୁ ବର୍ତ୍ତମାନ ଘର ଛାଡ଼ । ତୋତେ ପ୍ରଥମରୁ ଯେତେବେଳେ ମା' ବୋଲି ଡ଼ାକିଥିଲି ଡାକିଥିଲି । ଧର୍ମକୁ ଚାହିଁ କହୁଛି- ଇଚ୍ଛା କଲେ ଏଇ ବାରଣ୍ଡାରେ ରହ । ଭାଇ କିନ୍ତୁ ଘରେ ରହିବ ।"

ଏଇ ବାକ୍‌ବିତଣ୍ଡା ମଧ୍ୟରେ ଯୁବକଟି ବଢ଼ୀର ଖଟକୁ ଅଧିକାର କରି ସାରିଥିଲା

ଓ ବୁଢ଼ୀ ଯନ୍ତ୍ରଚାଳିତ ପରି ବାରଣ୍ଡାକୁ ବାହାରି ଆସି ଠିଆ ହୋଇଥିଲା । ସେତେବେଳେ ତା'ର ରୂପ ଦେଖା ଯାଉଥିଲା ଅତି ଭୟଙ୍କର କାଳୀ ମୂର୍ତ୍ତିଟିଏ ପରି । କ୍ରୋଧରେ ଗୁଡ଼ାଏ ଅଭିସଂପାତ ତା' କଣ୍ଠରୁଦ୍ଧ କରୁଥିଲା ।

ସେ ଚାହିଁଲା ଗନ୍ଧର୍ବକୁ, କିଛି ସମୟ ଭାବିଲା- ଏଇ ତ ମୋତେ ମା' ଡ଼ାକିଥିଲା, ଥାନ ଟିକେ ଦେଇଥିଲା ମୁଣ୍ଡ ଗୁଞ୍ଜିବାକୁ । ମା' କ'ଣ ପୁଅକୁ ଅଭିସମ୍ପାତ ଦେଇ ପାରେ ! କାଳୀ ମୂର୍ତ୍ତି ପରି ଦିଶୁଥିବା ରୂପଟି ହଠାତ୍ କେମିତି ଯଶୋଦାରେ ରୂପାନ୍ତରିତ ହୋଇଗଲା । ସେ ଅନୁଭବ କଲା ଯେମିତି ତା' ସ୍ତନରୁ କ୍ଷୀର ଝରୁଛି, କେବଳ ଗନ୍ଧି ପାଇଁ । କି ଏକ ଆବେଗରେ ତା' ଆଖିରୁ ଦି ଟୋପା ଲୁହ ଗଡ଼ିଗଲା ।

ପାଠକେ, ଏବେ ଉପସଂହାର । ବୁଢ଼ୀ କହିଲା- "ହଉରେ ବାପ ଗନ୍ଧି ! ତୁ ସିନା ଧର୍ମ ହୁଡ଼ିଲୁ, ହେଲେ ମୁଁ ତୋତେ ପୁଅ ପରି ଦେଖିଥିଲି । ଖରା, ବର୍ଷା, କାକରରେ ଏ ବରଣ୍ଡାରେ ପଡ଼ିଥିଲେ ବି ତୁ ମୋର ପୁଅ । ତୁ ସୁଖରେ ରହ, ତୋର କୋଟି ପରମାୟୁ ହେଉ, ଧନ ଜନ ଗୋପ ଲକ୍ଷ୍ମୀରେ ତୋ ଘର ପୁରି ଉଠୁ । ହେଲେ ପୁଅ ମନେ ରଖିବୁ- ପୃଥିବୀକି ପାଦେ ଧର୍ମ  ଟେକି ଧରିଛି, ନ ହେଲେ ଏ ପୃଥି ଧ୍ୱଂସ ପାଇସାରନ୍ତାଣି । ମନେ ରଖିବୁ- ଏ ଦୁନିଆରେ ସତ ଲୁଚି ଯିବନି !

(୧୯୮୩)



# ମିଛ ମଣିଷ

ଆପାତତଃ ନିଜକୁ ଜଣେ ସ୍ୱତନ୍ତ୍ର ଲୋକ ବୋଲି ଭାବିବାକୁ ତା ନିକଟରେ ଯଥେଷ୍ଟ ଉପାଦାନ ଥିଲା ।

ତା ଚେହେରାଟି ମାର୍ଜିତ, ପୋଷାକ-ପତ୍ର ସମ୍ଭ୍ରାନ୍ତ । ପୁଣି ଏଇ ଅଳ୍ପଦିନର ରହଣି ପାଇଁ ଯେଉଁ ବ୍ୟବସ୍ଥାଗୁଡ଼ିକୁ ନିକଟ ସମ୍ପର୍କୀୟମାନଙ୍କ ଦ୍ୱାରା ଖଞ୍ଜି ଦିଆଯାଇଛି କିମ୍ବା ସହରଟିରେ ନିଜର ପ୍ରଭାବ ଯୋଗୁଁ କରିପାରିଛି ତାକୁ ସବୁ ମିଶାଇ ଦେଇ ତା'ର ଗୋଟିଏ ସ୍ୱତନ୍ତ୍ର ପରିବେଶ ସୃଷ୍ଟି କରିଦେଲେ, ସେ ସ୍ୱତନ୍ତ୍ର ବୋଲି ମନେହେବ ନିଶ୍ଚୟ । ମୁଣ୍ଡ ପାଖକୁ ଲାଗି ଟେବୁଲ ଫେନ୍, ଫ୍ଲାସ୍କରେ ଗରମ ଦୁଧ, ଦୁଇ ଚାରିଟା ଫଳର ଠୁଙ୍ଗା, ହର୍ଲିକ୍ସ ବଟଲ, ରୋଟି ଓ ସର୍ବୋପରି ଦାମୀ ଇଞ୍ଜେକ୍ସନ୍, ବଟିକାର ଷ୍ଟ୍ରିପ୍‌ଗୁଡିକ ସହିତ କୋୟର ବୋଡ ଉପରେ ପ୍ରିଣ୍ଟେଡ ବେଡସିଟ୍ ଓ ମୁଲାଏମ ତକିଆ ଦୁଇଟି ତା' ଭିତରର ଅହଂକୁ ଜୀବନ୍ତ କରିଦେଇଛି କେତେକାଂଶରେ ।

ଗୋଟିଏ ହୁଇଲ୍ ଚେୟାରରେ ଦୁଇଜଣ ବେହେରା ଓ ଜଣେ ସୁନ୍ଦରରୀ ନର୍ସ ତାକୁ ଠେଲି ଠେଲି ଆଣି ବେଡ ନିକଟରେ ପହଞ୍ଚାଇ ଦେଲାବେଳେ ତାକୁ ଲାଗୁଥିଲା ସେ ଜଣେ ଭି.ଆଇ.ପି. ଓ କାଁ ଭାଁ କରି ଡରରେ ଠିଆ ହୋଇଥିବା ନିଛାଟିଆ ବ୍ୟକ୍ତିତ୍ୱମାନେ ତା'ର ଅନେକ ଅନେକ କଳ୍ପିତ ଦର୍ଶନାଭିଳାଷୀ ସ୍ତାବକବୃନ୍ଦ । ସେ ବେଡ ଉପରକୁ ଉଠିଗଲା ପରେ ସେ ସମୁଦାୟ ୱାର୍ଡ ଉପରେ ଥରେ ଆଖି ବୁଲାଇ ନେଲା, ଓ ଅନ୍ୟ ରୋଗୀମାନଙ୍କର ମିଳିତ ଦୃଷ୍ଟିକୁ ସାମ୍ନା କରି ନ ପାରି ଗୋଟିଏ ଛୋଟ

ଅଭିନୟରେ ପ୍ରକାଶ କଲା;, ସେ କ୍ଳାନ୍ତ, ତା'ର ବିଶ୍ରାମ ଦରକାର । ସେତେବେଳେ ସେ ଅନୁଭବ କଲା ଗୋଟିଏ ସାଂଘାତିକ କଂପ୍ଲେକ୍ସ ଭିତରେ ସେ ସଢୁଛି ଯେହେତୁ ଏଇ ଅପରିଷ୍କାର, କୋଚଟ ଜୀବମାନଙ୍କର ତା ପ୍ରତି କରୁଣା ବା ସହାନୁଭୂତି ପ୍ରକାଶ କରିବାର ଯୋଗ୍ୟତା/ଅଧିକାର ନଥିବା ସତ୍ତ୍ୱେ ଏକ ବିହ୍ୱଳ ଦୃଷ୍ଟିରେ ତାକୁ ଚାହିଁଛନ୍ତି ।

ସେମାନେ ଚାହିଁ ନାହାନ୍ତି ଯେ, ଯେମିତି ପ୍ରତ୍ୟେକଟି ଆଖି ଭିତରୁ ଅଜସ୍ର କଅଁଳା ବାଛୁରୀମାନେ ଡେଇଁ ଡେଇଁ ଆସୁଛନ୍ତି ଓ ଏକ ନିରୀହ ପ୍ରବଣତାରେ ତାକୁ ଛନ୍ଦିଦେଇ, ଏପର୍ଯ୍ୟନ୍ତ ତା ଭିତରେ ଦୃଢ଼ହୋଇ ନିଜକୁ ପ୍ରତିଷ୍ଠିତ କରିଥିବା ବ୍ୟକ୍ତିତ୍ୱଟିକୁ, ମୁହୂର୍ତ୍ତକ ମଧ୍ୟରେ ତରଳାଇ ଦେଇ ଗୋଟିଏ ଛୋଟିଆ ମଣିଷରେ ପରିଣତ କରିଦେବେ ।

ଗୋଟିଏ ଆଶଙ୍କା କେମିତି ତାକୁ ହିଂସ୍ର କରିଦେଲା । ଶଳା ଛୋଟଲୋକ ଗୁଡାକ ! ସେ ବିରକ୍ତିରେ କାନ୍ଥ କଡ଼କୁ ମୁହଁକୁ ଘୁରାଇନେଲା ।

ମୁହଁ ବୁଲାଇ ନେଲାପରେ ସେ ନିଜ ବିଷୟରେ ଚିନ୍ତା କରିବାକୁ ସୁଯୋଗ ପାଇଲା । କାରଣ ସେ ସେମାନଙ୍କ ସହ ସହାନୁଭୁତିର ମୁହଁ ଦେଖିପାରୁନି । ସେ ଯାହା ଦେଖିପାରୁଛି ଅରାଏ ଧଳାକାନ୍ଥ କେବଳ । ତେଣୁ ଚିନ୍ତା କରିବାକୁ ହାତଗଢ଼ା ଏକ ସୁନ୍ଦର ପରିବେଶ । ସେ ଚିନ୍ତାକଲା ଏବଂ ପାଖକୁ ପାଖ ଗୋଟିଏ ଲେଖା ଯୁକ୍ତି ଯୋଡ଼ିଲା– ସେ ନିଶ୍ଚୟ ସେଇ ଇତର ଲୋକମାନଙ୍କଠାରୁ ବଡ଼ । ସେ ଦରମାରେ ବଡ଼ । ପ୍ରଶାସନିକ କ୍ଷେତ୍ରରେ ସର୍ବୋଚ୍ଚ ପଦବୀକୁ ଛାଡ଼ିଦେଲେ ତା' ସମକକ୍ଷ ଦରମା କାହାର ନାହିଁ । ତା' ହାତରେ ହଜାରେ ସୈନ୍ୟ ଅଛନ୍ତି, ହେଉନ୍ତୁ ବରଂ ବିଶୃଙ୍ଖଳିତ । ଡାକ ଛାଡ଼ିଦେଲେ– 'ବାପାରେ ! ତମକୁ ଚାହିଁ ଆମେ ପଡ଼ିଛୁ... ତମରି ପାଇଁ ଆମ କମରରେ ବଳ... ସେଇ ତମପରି ସନ୍ତାନ-ସନ୍ତତି ଥାଉଁ ଥାଉଁ ଅମୁକ ଲୋକ ମୋତେ ଧମକ ଦେଲା । ମୋତେ ଅପମାନିତ କଲା । ମୋ ଇଜ୍ଜତ ନେଲା...' କିଛି ଚିନ୍ତାନାହିଁ... ଦଳଟି ଦିଶନ୍ତୁ ବରଂ ମେଷପଲ ପରି, ମାଡିଯିବେ, ଦଳମକଚି ଦେବେ, ରେ ରେ କାର ଶବ୍ଦରେ ପବନ ଆକାଶକୁ କମ୍ପାଇ ଦେବେ । ମୁହଁରେ ହସ ଫୁଟିଉଠିବ ଓ ହାତ ଝାଡ଼ି କଥା କହୁଁ କହୁଁ ସିଗ୍ରେଟ୍ ଖଣ୍ଡକରେ କି ସମ୍ରାଟ ପଣିଆ !

ଗୋଟେ ନିର୍ଦ୍ଦିଷ୍ଟ ଦୃଶ୍ୟ ମନକୁ ଆସିଗଲେ ସଂଶୟ ମନରେ ପକ୍ଷ ମେଲେ; ସତରେ ସେ କ'ଣ ଏମିତି ଜଣେ ବଡ଼ଲୋକ ! ହେଇ ସେଦିନ ସେ ମାଂସ ଦୋକାନୀ ପାଖରେ କେମିତି ଅପମାନିତ ବୋଧକଲା ଓ ଗୋଟିଏ ସତର୍କ ଖାମ୍‌ଖେୟାଲ ହସରେ ଅପମାନକୁ ଢାଙ୍କିଦେବାକୁ ଚେଷ୍ଟାକଲା । ସେ ଚୋଟ ସହରରେ ମାଂସ ଦୋକାନରେ

ସବୁଠାରୁ ବେଶୀ ଭିଡ଼ । ଅକସ୍ମାତ ତା'ର ମାଂସ ଖାଇବାକୁ ଇଚ୍ଛା ହେଲା ଏବଂ ସେ ଏମିତି ଚାଲୁ ଚାଲୁ ପହଞ୍ଚିଗଲା । ବେଶ୍ ଭିଡ଼ ଜମିଯାଇଛି । ଏଥଚ କେମିତି କାହିଁକି ସେ ଅସାମଞ୍ଜସ୍ୟ ଚେହେରା ଭିତରୁ ହସ ଝରିପଡ଼ିଲା ଓ କେତେଗୁଡ଼ିଏ ଶବ୍ଦ: ସାର୍ କେତେ ! 'ଶବ୍ଦଗୁଡ଼ିକ ଭିତରୁ ତା' ନିଜସ୍ୱ ପତିଆରା କେମିତି ଫୁଟିପଡ଼ିଲା । ସେ ନିଜକୁ କିଞ୍ଚିତ ଭିନ୍ନ ମନେକଲା ଏବଂ ଏକ କିଲୋର ବରାଦ ଭିତରେ କିଛି ନିର୍ଦ୍ଦିଷ୍ଟ ମାଂସ ଆଡ଼କୁ ହାତ ବଢ଼ାଇଲା । ସେଇ ଅସାମଞ୍ଜସ୍ୟ ମୁହଁରେ ହସ ଭିତରୁ କାଳି ଠାକୁରାଣୀଙ୍କ ଲାଳ ଜିଭପରି ଗୋଟିଏ ଦୀର୍ଘ ପାନଖିଆ ହସ ବାହାରି ପଡ଼ିଲା କେତୋଟି ଶବ୍ଦ ସହି: ରାମ... ରାମ, ତାକୁ ଦେଲେ ଥାନାବାବୁ ଆଉ ରଖିବେ ।' କଥାଟି ସେତିକିରେ ତୁଟି ଯାଇଥାନ୍ତା, କିନ୍ତୁ ସହରର ରାଜନୀତିବାଲାଙ୍କ ସହିତ ସମ୍ପର୍କ ଥିବା ଚିନି ଡିଲରଟି କେମିତି ଗୋଟିଏ ଅର୍ଥପୂର୍ଣ୍ଣ ହସ ହସିଲା ଏବଂ ଯେଉଁଥିରୁ ଭାବ ପ୍ରକାଶ ପାଉଥିଲା- 'ହଇ ହୋ ବାବୁ! ବେଶୀ ହେଲେ ଅଧ୍ୟାପକଟିଏତ, ମଲେ ବି ସଂସାରରେ କିଏ ତୁମକୁ ଗୁରୁତ୍ୱ ଦିଏ... ଆମ ସଂଖ୍ୟା ବେଶୀ । ନେଇ ଯା, ବାନ୍ଧି ଦେଉଛି ପୁଷ୍ଟି, ଚର୍ବି ଓ ଚମ ମାଂସକୁ ମିଶାଇ ।'

ସେ କ୍ଷୁବ୍ଧ ହୋଇଥିଲା ସେଦିନ ଓ ତା ବଡ଼ପଣ ଗୋଟାଏ ସମବେତ ସହାନୁଭୂତିର ଦୃଷ୍ଟିରେ ଉଭେଇ ଯାଇଥିଲା ତା ମନରୁ । ମାଂସ ପୁଟୁଳାଟି ଧରି ଫେରୁଥିଲା ବେଳେ ସେ ତା'ର ଶକ୍ତି ସଞ୍ଚୟ କରୁଥିଲା ଓ ଅବଜ୍ଞାର ଏଇ ପରିବେଶକୁ ଅତିକ୍ରମ କରି ନିଜ ବିଷୟରେ । ନିଜର ଗୁରୁତ୍ୱ ବିଷୟରେ ଗୋଟିଏ ପାଲଟା ଯୁକ୍ତି ମନକୁ ଆଣୁଥିଲା ।

ସେ ଭାବୁଥିଲା ଜଣେ ମାଂସ ବିକାଳୀର ଇଣ୍ଟେଲେକ୍ଟ କେତେବା ! ସେ ମାଂସ ବିକେ, ମାଂସ ବିକିସାରିଲା ପରେ ମୁଣ୍ଡ, ମାଂସର ଭଜା ପ୍ରସ୍ତୁତ କରେ, ଭାଜି ସାରିଲା ପରେ ପୁଡ଼ିଆଟି ଧରି ସହର କେନ୍ଦ୍ରସ୍ଥଳରେ ଥିବା କଣ୍ଟ୍ରି ଲିକର ଦୋକାନରେ ପହଞ୍ଚେ ଓ ପେଟେ ପିଇଦିଏ । ପିଇଦେଇ ସାରିଲା ପରେ ଗୋଡ଼ହାତ ହୁଗୁଳିଯାଏ, ଦେହ ହାଲୁକା ହୋଇଯାଏ ଏବଂ ବ୍ରଜବାବୁ (ବ୍ରଜରଥ)ଙ୍କ କୃଷ୍ଣ ସର୍ପ ତା'ର ସମସ୍ତ ଶକ୍ତିକୁ କେବଳ ନିଜ ଭିତରେ କେନ୍ଦ୍ରୀଭୂତ କରେ । ଛାବଲା ଦୁନିଆର ଚିତ୍ର ଭିତରେ କେତେ ଫୁଲ, ଆଲୋକର ବର୍ଣ୍ଣବିଭବ ଓ ସର୍ବୋପରି ନିର୍ଜନ ରାସ୍ତାରେ ହୋଟେଲ କାମ କରି ଫେରୁଥିବା ଗୋଦଡ଼ ବୁଢ଼ୀ ବା କୋଚଟା ଖୋର୍ଦ୍ଧା ଶାଢ଼ୀର ଦାନ୍ତୁରୀ ମାଇକିନା ତାକୁ ସିନେମା ଷ୍ଟାର ପରି ଦିଶେ । ବିଛଣା ନାହିଁ, ଅଗରବତୀ ନାହିଁ, ନାଇଟ୍ ଲେମ୍ପନାହିଁ, ରାସ୍ତାକଡ଼ରେ କେଉଁ ଅନ୍ଧକାର ସ୍ଥାନରେ ଜୀବନକୁ ଖୋଜିଲାବେଳେ କଦବା କେମିତି

ନାଇଟ୍ ପେଟ୍ରୋଲ୍‌ର କନେଷ୍ଟବଲ ଓ ହାଜତର ଲୁହାବଡ଼କୁ ଅତିକ୍ରମ କରିଯିବା ପାଇଁ ଭଲ ପୁଟୁଳା ମାଂସଟି ଥାନାବାବୁଙ୍କ ଘରେ ବିନା ବ୍ଲାଉଜର ସ୍ତନବତୀ ମା'ଙ୍କ ନିକଟରେ ଥୋଇ ଦେବା କଥା । ସେତିକିରେ ସେ କଳିନେଇଛି ତାଙ୍କ ବଡ଼ ପଣିଆ ।

ପାଲଟା ଯୁକ୍ତିରେ ସେ ଆଶ୍ୱସ୍ତ ହେଲା- ମାଂସ ବିକାଳୀ ଅଙ୍କ ଓ ତା'ର ଇଣ୍ଟେଲେକ୍ଟ ଘର ଶୂନ । କେମିତି ଶୂନ ହେବନି ! ଦିନ ତମାମ ସେ ଛେଳି ଖୋଜେ, ମାଈ ଛେଳିର ପହ୍ଲା କାଟି ତାକୁ ଖାସି ବୋଲି ପ୍ରମାଣ କରେ । ତା' ସତ୍ତ୍ୱେ ସେ ଚେକାପାରି ବସିଥିଲାବେଳେ ଶହେଲୋକ ତା ଚାରିକଡ଼ରେ ଗୋଲେଇ ଭାବେ ଠିଆହୋଇ ତା'ର ଅନୁକମ୍ପାକୁ ଅପେକ୍ଷା କରନ୍ତି । ସେଇ ମୁହୂର୍ତ୍ତକ ପାଇଁ ସେ ବଡ଼, ଖୁବ୍ ବଡ଼... ସମୁଦାୟ ଜଗତରେ ବି, ଯଦିଓ ସେଇ ସହରରେ ତାକୁ ନେଇ ଖୁସି ହୋଇଥିବା ଘୃଣ୍ୟ ବିଶେଷଣଟି ପ୍ରତି ସେ ସଚେତନ ନୁହେଁ ।

ସେ ମନକୁ ମନ ହସିଦେଲା । ବିଚାରା ସାଧାରଣ ଲୋକଟିଏ । ଭାରତ ଗୋଟିଏ ଦେଶ, ତା ଭିତରେ ଓଡ଼ିଶା । ସ୍ଲୋଗାନ୍‌ରେ ଯଦି ଟେକ୍ସ ପଡୁଥାନ୍ତା ! କେଡ଼େ ସୁଧାର ଲୋକଟିମାନ, ଗାନ୍ଧୀ ବୁଢ଼ାର ରକ୍ଷାକବଚ ସେଇ ଟୋପିଟିକୁ ମୁଣ୍ଡରେ ଆଣ୍ଡିଦେଇ କି ନିରୀହତାର ଅଭିନୟ... ଲାଗିଛୁଁ ପ୍ରାଣପଣେ, ତୁମ ଶୁଖିଲା ମୁହଁରେ ହସ ଫୁଟାଇ ଦେବୁ, ତମ ଟାଙ୍ଗର ଭୂଇଁରେ ସବୁଜ ରଂଗ ବୋଲିଦେବୁ ଓ ତୁମ ନୀଳ ଆକାଶକୁ ତମ୍ବା ରଙ୍ଗର ଧୂଆଁରେ ଛାଇଦେବୁ ।

ଭାରତ- ଆର୍ଯ୍ୟାବର୍ତ୍ତ, ସାଂସ୍କୃତିକ ପରମ୍ପରାରେ ସମୃଦ୍ଧ ଦେଶଟା ସ୍ଲୋଗାନରେ ସୀମାବଦ୍ଧ ହୋଇଗଲା କେମିତି । ବୃଦ୍ଧ-ପ୍ରୌଢ଼ ଓ ପକ୍ୱକେଶ ବ୍ୟକ୍ତିର ସମସ୍ତ ବିଶ୍ୱସ୍ତ ସ୍ଲୋଗାନ ମଧ୍ୟରେ ନାଇଟ୍ କ୍ଲବ୍, ସାମ୍ପେନ ଗ୍ଲାସରେ ସ୍ଲୋଗାନ ସବୁ ହଜି ଯାଆନ୍ତି ଚରିତ୍ରହୀନର ଦୃଢ଼ ଚରିତ୍ରର ସଂକଳ୍ପ ପରି । 'ସଂସ୍କୃତି' ଇତିହାସର ଗୋଟିଏ ଶବ୍ଦ ହୋଇଗଲା ଏବଂ ସାତ ସମୁଦ୍ର ପାଣିର ଲୁଣି ହାୱାର ସଂସ୍କୃତି ସମ୍ପନ୍ନ ଲୋକଗୁଡ଼ିକ କେମିତି ହାୱାର ମଣିଷ ହୋଇଗଲେ ।

ସେ ପୁନର୍ବାର କଡ଼ ଲେଉଟାଇଲା ଓ ଇଚ୍ଛାକରି ସେଇ ଅପରିଚ୍ଛନ୍ନ ଲୋକମାନଙ୍କୁ ନିରୀକ୍ଷଣ କରିବାକୁ ଲାଗିଲା । ତା'ର ଅନୁଭୂତି କ୍ରମେ ନୂତନ ବାଟରେ ରୂପାୟିତ ହେଉଛି । ନିଜକୁ କଳିବା ପାଇଁ ପାଖରେ ଅନ୍ୟ ଏକ ଚରିତ୍ର ବାସ୍ତୁର ଆବଶ୍ୟକତା ରହିଛି । ସେମିତି ଏସବୁ ଅପରିଚ୍ଛନ୍ନ ରୁଚିଗର୍ହିତ ବ୍ୟକ୍ତିମାନେ ଯାହାଙ୍କର ବର୍ତ୍ତମାନରେ ସେ ନିଜକୁ ଏକ ପୃଥକ- ବଡ଼ ବ୍ୟକ୍ତି ବୋଲି ସିଦ୍ଧାନ୍ତ ନେଇ ଯନ୍ତ୍ରଣାରେ ଏକ

ଅନତିକ୍ରମଣୀୟ ପ୍ରଭାବରେ ଅତିଷ୍ଠ ହେଉଛି ।

ସ୍ୱତଃ ମନକୁ ପ୍ରଶ୍ନଟିଏ ଆସିଗଲା । ବ୍ୟକ୍ତିଟିକୁ ଚିହ୍ନିବାର ଉପାୟ ଭିତରେ କେଉଁ କଥାଟି ସତ୍ ! ରୂପ ନା ଗୁଣ ? ରୂପତ ଏମିତି କଦାକାର ଓ କୁତ୍ସିତ ଯେ ସେମାନଙ୍କୁ ନେଇ ମିତ୍ର ଭାବରେ ଗୋଟିଏ ଅନୁଭୂତି ମନକୁ ଅଣାଯାଇ ନପାରେ । ଗୁଣ- ସେ ତ ଆପେକ୍ଷିକ, ଅସମାଧିତ ପ୍ରଶ୍ନ । ସେ'ବା କେଉଁ ମାନଦଣ୍ଡରେ ବିଚାର କରି ସିଦ୍ଧାନ୍ତ ନେଇନେବ ଅମୁକ ଲୋକଟି ପୁଣି, ତା'ର ଉର୍ଜସ୍ୱଳ ପ୍ରତିଭା ଢାଙ୍କି ହେଇଯାଇଛି ଅପରିଷ୍କାର ପୋଷାକ- ପରିଚ୍ଛଦରେ, ରୁକ୍ଷବହୁଳ ମୁହଁରେ, ଯିଙ୍ଗୁଳିଆ ସ୍ୱଭାବରେ । ମୁହଁଗୁଡ଼ାକୁ ଦେଖିଲେ କେମିତି ନିଜସ୍ୱ ଅହଂରେ ଭାରକ୍ରାନ୍ତ । କେଉଁ ବିଶ୍ୱାସରେ ସେମାନଙ୍କ ମିତ୍ର ବୋଲି ଗ୍ରହଣ କରିନେଇ ହେବ ।

ସେ ପୁଣିଥରେ ସମୁଦାୟ ୱାର୍ଡରେ ଆଖି ଘୁରାଇ ନେଲା । ସେମିତି ସେ ଲୋକଗୁଡ଼ିକ- ସହାନୁଭୂତିର ଆଖି ସହିତ ଅସହାୟ ଭାବରେ ବେଡରେ ଗଡୁଛନ୍ତି ନିଜ ନିଜର ଯନ୍ତ୍ରଣାମାନଙ୍କ ସହିତ । ଯେମିତି ଗୋଟିଏ ପ୍ରକାଣ୍ଡ ଯନ୍ତ୍ରଣାର କକ୍ଷ, ସେଥିରୁ ମୁକ୍ତି ନାହିଁ କାହାର ଓ ସେଥିପାଇଁ ଯନ୍ତ୍ରଣାର ମାଡ଼ ଭିତରେ ଅତିଷ୍ଠ ସେମାନେ କୌଣସି ନୂତନ ଆଗନ୍ତୁକର ଆବିର୍ଭାବରେ ବିବ୍ରତ ପୁଣି ନିଜ ବିଚାରରେ ସହାନୁଭୂତିଶୀଳ ହୋଇ ଅସହାୟ ଆଖିରେ ପ୍ରଶ୍ନ ତୋଳୁଛନ୍ତି- ଆରେ ତୁ ଭଦ୍ରଲୋକଟା କେଉଁ ଦୁଃଖରେ ଏ ଦୁଃଖରାଜ୍ୟକୁ କିଛି ଦିନ ପାଇଁ ବରିନେଲୁ !

ସେ ଜଣେ ସମ୍ଭ୍ରାନ୍ତ ରୋଗୀ ଓ ତାକୁ ଏଟେଣ୍ଡ କରୁଥିବା ତା'ର ବିଶ୍ୱସ୍ତ ଛାତ୍ର ସହରର ଭଦ୍ରଲୋକ- ଏଇ ଧାରଣାଟିକୁ କେମିତି ତା ମନରେ ବଦ୍ଧମୂଳ କରି ଦେଇଥିଲେ । କିନ୍ତୁ କେତେଦିନର ରହଣିରେ ତା'ର ସବୁ ନୂଆ ନୂଆ ଅନୁଭୂତି ରୂପ ପାଇଛି । ତାକୁ କାହିଁକି ମନେହେଉଛି ଏଇ ସବୁ ଆଟୋପ ଆଡ଼ମ୍ବର ଗୋଟାଏ ହାତଗଢ଼ା ଉପଚାର, ସ୍ୱାଭାବିକ ନଙ୍ଗଳା ଜୀବନଠାରୁ ବହୁଦୂରେ । ଜୀବନ କ'ଣ ? ଗୋଟାଏ ଡେକୋରେସନ୍‌ରେ ମିଛ ହୋଇଯିବା ପୋଷାକ ପତ୍ର ଖୋଲିଦେଇ ଔପଚାରିକତାକୁ ଅସ୍ୱୀକାର କରିଦେବା ?

ଔପଚାରିକତା କେମିତି ମଣିଷକୁ ମିଛ କରିଦେଉଛି । ସେ ଅତୀତରେ ଅନୁଭବ କରିଛି କ୍ଲାସ୍‌ର ରୁମ୍‌ରେ ପ୍ରଥମ ଧାଡ଼ିରେ ବସିଥିବା ଚରିତ୍ରମାନଙ୍କର ଦୁଷ୍ଟ ଚାହାଣୀ, ବିପର୍ଯ୍ୟସ୍ତ ବେଣୀ ବନ୍ଧନ ଓ ସର୍ବୋପରି ଓଠର ଅର୍ଥପୂର୍ଣ୍ଣ ହସରେ ରଙ୍ଗ ବେରଙ୍ଗ ଚୋପାମାନ ପ୍ରସ୍ତୁତ ପାଠ୍ୟକ୍ରମକୁ ଗୋଳମାଳ କରନ୍ତି ଓ ପିଚୁରାସ୍ତାର ସାଇନ୍‌ବୋର୍ଡରେ

ନାଁ ଲିପିବଦ୍ଧ ହୋଇଯିବାର ଭୟରେ ସେ ତଥାକଥିତ ଭଦ୍ର ସମାଜର ଉପଚାର ଭିତରେ ରୋଗୀର ଯନ୍ତ୍ରଣାଠାରୁ ଏକ ଯୋରଦାର ଯନ୍ତ୍ରଣାରେ ଅହରହ ଘାଣ୍ଟି ହୋଇଯାଉଛି ।

ବିଦ୍ରୋହର ରୂପ ବା କ'ଣ ? କିଛି ଉତ୍ତେଜନା ଓ ଔପଚାରିକ ଦୁନିଆରେ ସର୍କସ ବାଘପରି ସବୁ କଥାକୁ ଅନିଚ୍ଛାକୃତ ଭାବେ ମାନିନେଇ ସହଜ ଅଭିନୟ କରିଯିବା କଥା । ଅଭିନୟର ଜୟ ହେଉ । ସ୍ଲୋଗାନ ସେଇ ଚନ୍ଦାମୁଣ୍ଡିଆ ବୃଦ୍ଧମାନଙ୍କର ଯିଏ ରାତିରେ ଝିଅ ବା ନାତୁଣୀମାନଙ୍କର ପ୍ୟାଣ୍ଟିକୁ ଖୋଲି ଦେଇ ଗୋଟିଏ ଗରମ ତ୍ୱକ୍‌କୁ ଅନୁଭବ କରି ବୟସକୁ ଅନ୍ଧାରରେ ଭୁଲିଯିବାର କାମନା ନେଇ ଜୀବନ ବଞ୍ଚୁଛନ୍ତି ସେମାନେ ।

ସେ ନିଜ ଭିତରୁ ମୁକୁଳି ଯାଇଥିଲା କ୍ରମେ । ତା'ର ମନହେଲା ଏଇ ମୁହୂର୍ତ୍ତରେ ତା'ର ଆଟୋପର ସାମଗ୍ରୀଗୁଡ଼ିକୁ ସେ ଯଥାସ୍ଥାନକୁ ଫେରାଇ ଦେବ ଏବଂ ୱାର୍ଡର ସାଧାରଣ ରୋଗୀଟିଏ ପରି ଗୋଟିଏ ନିରୀହ ସରଳତାରେ ମିଶିଯିବ ସେଇମାନଙ୍କ ସହିତ । ଜୀବନ ସହିତ ମିତ୍ର ବସିବ ।

ସେ ବିଛଣାରେ ଉଠିବସିଲା ଓ ପାଖ ଟେବୁଲରେ ଥିବା ତା ଫଳ ପାକେଟଗୁଡ଼ିକୁ ଅନାଇଲା । ଲାଲ୍ ଲାଲ୍ ଆପେଲ, କଳା ଧଳା ଅଙ୍ଗୁର, ହର୍ଲିକ୍ସ ଶିଶି, ବିସ୍କୁଟ, ରୋଟି ଇତ୍ୟାଦି । ତା'ର ସେଇ ମୁହୂର୍ତ୍ତରେ ଧାରଣା ହେଲା, ଏଇ ପଦାର୍ଥଗୁଡ଼ିକ ତାକୁ ଜୀବନ ଠାରୁ ଦୂରେଇ ଦେଉଛନ୍ତି ଓ ଏଇ ସାଧାରଣ ଲୋକଙ୍କଠାରୁ ତା ଭିତରେ ଗୋଟିଏ ବ୍ୟବଧାନ ସୃଷ୍ଟି କରୁଛନ୍ତି, ଏବଂ ସେଇ ବସ୍ତୁମାନେ ଯେମିତି ସେ ହସ୍‌ପିଟାଲର ସବୁଠାରୁ ସୁନ୍ଦରୀ ନର୍ସ ପୁଷ୍ପାଦି'କୁ ଉପାଦନ ଯୋଗାଉଛନ୍ତି, ତାକୁ ଗୋଟିଏ ବଡ଼ ମଣିଷ ବୋଲି ଭାବିବାକୁ ଓ ଅନ୍ୟାନ୍ୟ ରୋଗୀମାନେ ତାଙ୍କ ସାନ୍ନିଧ (ଯେ କୌଣସି କାରଣରୁ ହେଉ) ଚାହୁଁଥିଲାବେଳେ ସେ ଗୋଟିଏ ଧରା ନଦେବା ପକ୍ଷୀପରି ଇଞ୍ଜେକ୍‌ସନ୍ ସିରିଞ୍ଜ ଧରି ଅଧାହସ, ଅଧା ଅପ୍ରକାଶିତ ଭାବରେ କେବଳ ତାରି ହାତରେ ଇଞ୍ଜେକସନ୍‌ଟି ଫୋଡ଼ିଦେଇ ଅଧିକାଂଶ ସମୟରେ ତା ଭଲମନ୍ଦ ବୁଝି ନେଉଛନ୍ତି ।

ପୁଷ୍ପାଦି' ସହିତ କୌଣସି ସମ୍ପର୍କ ସ୍ଥାପନ କରାଯାଇ ନ ପାରେ, ଅଥଚ ବସ୍‌ଷ୍ଟାଣ୍ଡ ବା ପ୍ଲାଟ୍‌ଫର୍ମର ସମ୍ଭ୍ରାନ୍ତ ଟ୍ରେନ୍‌ରେ ଯାତ୍ରା କରୁଥିବା ସୁନ୍ଦରୀ ଝିଅର ମୁହୂର୍ତ୍ତକର ମନକୁ ବାନ୍ଧି ରଖିବାର ଧାରାପରି ପୁଷ୍ପାଦି'ର ହସହସ ଭାବ ତାକୁ ସମୟରେ ଆମୋଦିତ କରୁଥିଲେ ବି ଆଜି ସେ ସେଥିପ୍ରତି ବିତସ୍ପୃହ ହୋଇପଡ଼ିଲା ଏବଂ ତା ପ୍ରତି ଗୋଟିଏ ଅନ୍ୟମନସ୍କ ଭାବ ପ୍ରକାଶ କଲା ।

ଆଜି ସେ ତା ଖୋଳପାରୁ ମୁକୁଳି ଯାଉଛି ଏବଂ ସତ୍ ଜୀବନଟିକୁ ଅତି ଦୟନୀୟ ଭାବେ ଅନ୍ୱେଷଣ କରୁଛି । ତା'ର ମନେହେଲା ସେ ପାଇ ଯାଉଛି କ୍ରମେ ସେଇଟିକୁ ।

ସେ ଉଠିପଡ଼ିଲା ଓ ପାଖ ବେଡ୍‌ରେ ଶୋଇଥିବା ମଫସଲି ଲୋକଟିର ବିଛଣା କଡ଼ରେ ବସିଗଲା । ସେ ରୋଗୀଟି ଶୋଇ ଯାଇଥିଲା । ତା' ଦେହରେ, କପାଳରେ ସେ ତା'ର ଆପାତତଃ ସ୍ନେହଶୀଳ ହାତଟି ଘୁରାଇ ନେଲା । ରୋଗୀଟି ଆଖି ଖୋଲିଲା ଏବଂ ବଲ୍ ବଲ୍ କରି ତା ମୁହଁକୁ ଚାହିଁଲା । ସେ ଚାହିଁଲା ଏଇଥିପାଇଁ, ଏତେ ଦିନ ଧରି ଦେଖି ଆସୁଥିବା ଅନ୍ୟ ରାଜ୍ୟ ମଣିଷଟି ହଠାତ୍ କାହିଁକି ଆଜି ତା' ରାଜ୍ୟର ମଣିଷ ହୋଇଗଲା । ସେ କିଛି ପ୍ରଶ୍ନ କରିପାରିଲା ନାହିଁ, ଅଥଚ ଗୋଟିଏ ନୂଆ ସାଙ୍ଗଭାଇର ହୃଦୟ ଆବେଦନରେ ବୋଧହୁଏ ଆଶ୍ୱସ୍ତ ହେଇ ଆଖିବୁଜି ଦେଲା ।

ତା'ପରେ ସେ ଏଇ ଆଚରଣ ପ୍ରଦର୍ଶନ କଲା ପ୍ରତ୍ୟେକଟି ରୋଗୀ ନିକଟରେ, ଏବଂ ଠିକ୍ ସେଇ ସମୟରେ ପୁଷ୍ପାଦି' ତା'ର ସ୍ୱଭାବସୁଲଭ ଆକର୍ଷଣୀୟ ଭାବରେ ସିରିଞ୍ଜ୍ ଧରି ତା ନିକଟରେ ଯେତେବେଳେ ପହଞ୍ଚିଗଲା, ସେ ଭଲ ହୋଇଗଲାଣି ବୋଲି ସ୍ପଷ୍ଟ ଜଣାଇ ଦେଲା ଓ ପୁଷ୍ପାଦି' ଫେରି ଯାଉଥିଲାବେଳେ ତାଙ୍କୁ ଅଟକାଇ ଗୋଟିଏ ବାକ୍ୟ ସେ ବିହ୍ୱଳ ହୋଇ ଉଚ୍ଚାରଣ କଲା, 'ପୁଷ୍ପାଦି' ଲଙ୍ଗଳା ହୋଇପଡ଼ିଲେ ଦୁନିଆଟା ଭାରି ସୁନ୍ଦର ନା ।'

ପୁଷ୍ପାଦି' କିଛି ବୁଝିପାରିଲାନି ବୋଧହୁଏ । ତଥାପି ସେ ବୁଝାଇବାକୁ ଚେଷ୍ଟା କଲା– ତୁମ ବୟସର ଚାପ ସତ୍ତ୍ୱେ ଗୋଟିଏ ଆର୍ଟିଫିସିଆଲ ଗାରମେଣ୍ଟରେ ତମ ସ୍ତନ ଦୁଇଟିକୁ ଯେମିତି ଜୀବନ୍ତ କରି ଗୋଟିଏ ଅହଂକାରରେ ନିଜକୁ ସ୍ୱତନ୍ତ୍ର ବୋଲି ଭାବୁଛ, ସେ ସବୁ ଖୋଲିଦିଅ; ତୁମ ଓହଳି ପଡିଥିବା ସ୍ତନରେ ମଧ୍ୟ ଗୋଟାଏ ପ୍ରାକୃତିକ ସୌନ୍ଦର୍ଯ୍ୟ ଅଛି ।

ତାପରେ ସେ ତା'ର ସମସ୍ତ ଫଳ ପକେଟ୍‌କୁ ରୋଗୀମାନଙ୍କ ଭିତରେ ବାଣ୍ଟୁଥିଲାବେଳେ ଦେଖିଲା ପୁଷ୍ପାଦି' କେମିତି ବିଷର୍ଣ୍ଣ ଓ ତା'ର ଏଇ ପାଗଳାମୀକୁ ସ୍ୱୀକାର ନକରି ସିରିଞ୍ଜ ସହିତ ଡିଉଟି ରୁମ୍‌କୁ ଫେରିଗଲା ।

ସେ ସେଇ ମୁହୂର୍ତ୍ତରେ କରୁଣ ହୋଇଗଲା– ମିଛର ଆବରଣ ମୁକ୍ତ ହେବାକୁ ସତ୍ ମଣିଷଟି ପାଇଁ ତଥାପି ଅନନ୍ତ ସମୟ ଅପେକ୍ଷା କରିଛି ।



# ଦେଶ ବୋଇଲେ

ଏଇ ଶାଳା ବକ୍ତୃତା ପ୍ରତିଯୋଗିତାରେ ଯେତିକି ଝାମେଲା... ବୈଦିକ ରୀତିରେ ପାରମ୍ପରିକ ବିବାହ ପରି । ନିଜର ରୁଚି ନାହିଁ, ସ୍ୱାଧୀନତା ନାହିଁ, କେବଳ ବାପା-ମା', ଭାଇ-ଭଉଣୀର ଆକସ୍ମିକ ଆମୋଦକୁ ବାଧ୍ୟଶିଶୁ ପରି ମାନିନେବା କଥା । ଉଦ୍ଦୀପନା, ପ୍ରଥମ ଥର ପାଇଁ ଗୋଟିଏ ଅଜଣା ଝିଅକୁ ପାଖରେ ଧରି ଶୋଇବା ପାଇଁ । ନହେଲେ କେଉଁ ଗାରେଣ୍ଟି ଅଛି ଗୋଟାଏ, ଫିକା ନୀଳ ଆଲୋକରେ ପଞ୍ଜାବୀ ପକେଟ/ ବ୍ଲାଉଜ୍‌ରେ ଠୋପାଏ 'ମାଇଁ ଚଏସ୍' ବା 'ଇଣ୍ଟିମେଣ୍ଟ'ର ବୁନ୍ଦା ଝାଡି ସାରା ରାତିକୁ କଥାର ଅରଣ୍ୟରେ ହଜାଇ ଦେବାର ନିଶା ପାଣିଚିଆ ହୋଇଯିବ ନି... ଗୋଟାଏ ନିବେଦିତ ଦୃଷ୍ଟି... ତମର ଏ ଦେହ, ଦାରୁଣ ନିଦାଘର ବାଲି ଭୂଇଁର କାମନା ଟୋପାଟାଏ ଜଳ, କେତେବେଳେ ଆଷାଢ଼ର ଆଶା ଶୋଇବାର ଉପକ୍ରମ ଭିତରେ । ଡିବେଟ୍ ପରି ଯୁକ୍ତିତର୍କର ସୁଯୋଗ ନା ଅନୁଶାସନର ରାୟରୁ ମାନିନେବା କଥା ଗଧର ବୋଝ ବୋହିବା ପରି । ତା ବୈଦିକରୀତିର ନାରୀଟିକୁ ଧରି ସଫଳ ସଂସାରୀରେ ପରିଣତ ହୋଇଗଲା । ଗୋଛାଏ ପ୍ରତିଦ୍ୱନ୍ଦ୍ୱୀଙ୍କ ଭିତରେ ଏକ ହେବାର ଝୁଙ୍କଟାକୁ ଅସ୍ୱୀକାର କରାଯାଇ ନପାରେ ।

ମନର ଯୁକ୍ତିଟିକୁ ଦୋହରାଉଥିଲା ଆଦିମ । ଯୁକ୍ତି ତର୍କର ସୁଯୋଗ ବୋଲି ପ୍ରତିଯୋଗିତାରୁ ଓହରିଯିବା ଗୋଟିଏ ପ୍ରକାର ପରାଜୟ । ନେକଷ୍ଟ ଅକେଜନରେ ଡିବେଟ୍‌ରେ ପରିଣତ କରାଯାଇପାରେ, ସେଇଟା ହାତରେ କଥା- ଆଦିମ ନିଶ୍ଚିତ

ଆଜି ସେ ତା ଖୋଳପାରୁ ମୁକୁଳି ଯାଉଛି ଏବଂ ସତ୍ ଜୀବନଟିକୁ ଅତି ଦୟନୀୟ ଭାବେ ଅନ୍ୱେଷଣ କରୁଛି । ତା'ର ମନେହେଲା ସେ ପାଇ ଯାଉଛି କ୍ରମେ ସେଇଟିକୁ ।

ସେ ଉଠିପଡ଼ିଲା ଓ ପାଖ ବେଡ୍‌ରେ ଶୋଇଥିବା ମଫସଲି ଲୋକଟିର ବିଛଣା କଡ଼ରେ ବସିଗଲା । ସେ ରୋଗୀଟି ଶୋଇ ଯାଇଥିଲା । ତା' ଦେହରେ, କପାଳରେ ସେ ତା'ର ଆପାତତଃ ସ୍ନେହଶୀଳ ହାତଟି ଘୁରାଇ ନେଲା । ରୋଗୀଟି ଆଖି ଖୋଲିଲା ଏବଂ ବଲ୍ ବଲ୍ କରି ତା ମୁହଁକୁ ଚାହିଁଲା । ସେ ଚାହିଁଲା ଏଇଥିପାଇଁ, ଏତେ ଦିନ ଧରି ଦେଖି ଆସୁଥିବା ଅନ୍ୟ ରାଜ୍ୟ ମଣିଷଟି ହଠାତ୍ କାହିଁକି ଆଜି ତା' ରାଜ୍ୟର ମଣିଷ ହୋଇଗଲା । ସେ କିଛି ପ୍ରଶ୍ନ କରିପାରିଲା ନାହିଁ, ଅଥଚ ଗୋଟିଏ ନୂଆ ସାଙ୍ଗଭାଇର ହୃଦୟ ଆବେଦନରେ ବୋଧହୁଏ ଆଶ୍ୱସ୍ତ ହେଇ ଆଖିବୁଜି ଦେଲା ।

ତା'ପରେ ସେ ଏଇ ଆଚରଣ ପ୍ରଦର୍ଶନ କଲା ପ୍ରତ୍ୟେକଟି ରୋଗୀ ନିକଟରେ, ଏବଂ ଠିକ୍ ସେଇ ସମୟରେ ପୁଷ୍ପାଦି' ତା'ର ସ୍ୱଭାବସୁଲଭ ଆକର୍ଷଣୀୟ ଭାବରେ ସିରିଞ୍ଜ୍ ଧରି ତା ନିକଟରେ ଯେତେବେଳେ ପହଞ୍ଚିଗଲା, ସେ ଭଲ ହୋଇଗଲାଣି ବୋଲି ସ୍ପଷ୍ଟ ଜଣାଇ ଦେଲା ଓ ପୁଷ୍ପାଦି' ଫେରି ଯାଉଥିଲାବେଳେ ତାଙ୍କୁ ଅଟକାଇ ଗୋଟିଏ ବାକ୍ୟ ସେ ବିହ୍ୱଳ ହୋଇ ଉଚ୍ଚାରଣ କଲା, 'ପୁଷ୍ପାଦି' ଲଙ୍ଗଳା ହୋଇପଡ଼ିଲେ ଦୁନିଆଟା ଭାରି ସୁନ୍ଦର ନା ।'

ପୁଷ୍ପାଦି' କିଛି ବୁଝିପାରିଲାନି ବୋଧହୁଏ । ତଥାପି ସେ ବୁଝାଇବାକୁ ଚେଷ୍ଟା କଲା– ତୁମ ବୟସର ଚାପ ସତ୍ତ୍ୱେ ଗୋଟିଏ ଆର୍ଟିଫିସିଆଲ ଗାର୍ମେଣ୍ଟରେ ତମ ସ୍ତନ ଦୁଇଟିକୁ ଯେମିତି ଜୀବନ୍ତ କରି ଗୋଟିଏ ଅହଂକାରରେ ନିଜକୁ ସ୍ୱତନ୍ତ୍ର ବୋଲି ଭାବୁଛ, ସେ ସବୁ ଖୋଲିଦିଅ; ତୁମ ଓହଳି ପଡିଥିବା ସ୍ତନରେ ମଧ ଗୋଟାଏ ପ୍ରାକୃତିକ ସୌନ୍ଦର୍ଯ୍ୟ ଅଛି ।

ତାପରେ ସେ ତା'ର ସମସ୍ତ ଫଳ ପକେଟ୍‌କୁ ରୋଗୀମାନଙ୍କ ଭିତରେ ବାଣ୍ଟୁଥିଲାବେଳେ ଦେଖିଲା ପୁଷ୍ପାଦି' କେମିତି ବିଷର୍ଣ୍ଣ ଓ ତା'ର ଏଇ ପାଗଳାମୀକୁ ସ୍ୱୀକାର ନକରି ସିରିଞ୍ଜ ସହିତ ଡିଉଟି ରୁମ୍‌କୁ ଫେରିଗଲା ।

ସେ ସେଇ ମୁହୂର୍ତ୍ତରେ କରୁଣ ହୋଇଗଲା- ମିଛର ଆବରଣ ମୁକ୍ତ ହେବାକୁ ସତ୍ ମଣିଷଟି ପାଇଁ ତଥାପି ଅନନ୍ତ ସମୟ ଅପେକ୍ଷା କରିଛି ।



# ଦେଶ ବୋଇଲେ

ଏଇ ଶାଳା ବକ୍ତୃତା ପ୍ରତିଯୋଗିତାରେ ଯେତିକି ଝାମେଲା... ବୈଦିକ ରୀତିରେ ପାରମ୍ପରିକ ବିବାହ ପରି । ନିଜର ରୁଚି ନାହିଁ, ସ୍ୱାଧୀନତା ନାହିଁ, କେବଳ ବାପା-ମା', ଭାଇ-ଭଉଣୀର ଆକସ୍ମିକ ଆମୋଦକୁ ବାଧ୍ୟଶିଶୁ ପରି ମାନିନେବା କଥା । ଉଦ୍ଦୀପନା, ପ୍ରଥମ ଥର ପାଇଁ ଗୋଟିଏ ଅଜଣା ଝିଅକୁ ପାଖରେ ଧରି ଶୋଇବା ପାଇଁ । ନହେଲେ କେଉଁ ଗାରେଣ୍ଟି ଅଛି ଗୋଟାଏ, ଫିକା ନୀଳ ଆଲୋକରେ ପଞ୍ଜାବୀ ପକେଟ/ ବ୍ଲାଉଜ୍‌ରେ ଠୋପାଏ 'ମାଇଁ ଚଏସ୍' ବା 'ଇଣ୍ଟିମେଣ୍ଟ'ର ବୁନ୍ଦା ଝାଡି ସାରା ରାତିକୁ କଥାର ଅରଣ୍ୟରେ ହଜାଇ ଦେବାର ନିଶା ପାଣିଚିଆ ହୋଇଯିବ ନି... ଗୋଟାଏ ନିବେଦିତ ଦୃଷ୍ଟି... ତମର ଏ ଦେହ, ଦାରୁଣ ନିଦାଘର ବାଲି ଭୂଇଁର କାମନା ଟୋପାଟାଏ ଜଳ, କେତେବେଳେ ଆଷାଢ଼ର ଆଶା ଶୋଇବାର ଉପକ୍ରମ ଭିତରେ । ଡିବେଟ୍ ପରି ଯୁକ୍ତିତର୍କର ସୁଯୋଗ ନା ଅନୁଶାସନର ରାୟରୁ ମାନିନେବା କଥା ଗଧର ବୋଝ ବୋହିବା ପରି । ତା ବୈଦିକରୀତିର ନାରୀଟିକୁ ଧରି ସଫଳ ସଂସାରୀରେ ପରିଣତ ହୋଇଗଲା । ଗୋଛାଏ ପ୍ରତିଦ୍ୱନ୍ଦ୍ୱୀଙ୍କ ଭିତରେ ଏକ ହେବାର ଝୁଙ୍କଟାକୁ ଅସ୍ୱୀକାର କରାଯାଇ ନପାରେ ।

ମନର ଯୁକ୍ତିଟିକୁ ଦୋହରାଉଥିଲା ଆଦିମ । ଯୁକ୍ତି ତର୍କର ସୁଯୋଗ ବୋଲି ପ୍ରତିଯୋଗିତାରୁ ଓହରିଯିବା ଗୋଟିଏ ପ୍ରକାର ପରାଜୟ । ନୈକଷ୍ଟ ଅକେଜନରେ ଡିବେଟ୍‌ରେ ପରିଣତ କରାଯାଇପାରେ, ସେଇଟା ହାତରେ କଥା- ଆଦିମ ନିଶ୍ଚିତ

ଥିଲା ସ୍ୱିଚ୍‌କୁ ତାର, ଏ ଯୁକ୍ତି ଛାତ୍ର ମାନିନେବେ । ଆପାତତଃ ସ୍ଥିର କଲା ପ୍ରତିଯୋଗିତାରେ ଭାଗ ନେବ, ଘଣ୍ଟାଏ ପୂର୍ବରୁ ବକ୍ତୃତାର ବିଷୟବସ୍ତୁ, ପୁଣି ଗଣ୍ଡେ ଖାଇଦେଇ କେଉଁଠି କେମିତି ଖେଳାଇ ପକାଇ ବଡମଣିଷଙ୍କର ଉକ୍ତି କେତୋଟିକୁ ଚିଉସ୍ତ କରି ଜଣାଇଦେବାକୁ ପଡ଼ିବ, ମୋତେ ଯେମିତି ଦେଖୁଛ, କଳୁଛ, ମୁଁ ସେମିତି ନୁହେଁ । ମୁଁ ସ୍ୱତନ୍ତ୍ର, ମୁଁ ଭିନ୍ନ କିସମର... ତମ ସମଗ୍ର ଅଜ୍ଞାନୀ ବୋକାମାନଙ୍କ ମଧରେ ମୁଁ ଏକମାତ୍ର ବ୍ୟକ୍ତି । ମୁଁ କ୍ଲାସ୍‌ର ସବୁଠାରୁ ସୁନ୍ଦରୀ (ବରଂ ଆଟିଷ୍ଟିକ୍) ଝିଅଙ୍କୁ ଚାହିଁ ଅଧାପକର ଟେପ୍‌ରେକର୍ଡର ବକ୍ତବ୍ୟକୁ ଉପେକ୍ଷା କରେ । ମୁଁ ତା ଗାଲର ତ୍ୱକ୍, ଆକ୍ଷିର ପୃଥିବୀକୁ କଳନା କରେ ଓ ବେଣୀ ଦୁଇଟି ଆଗକୁ ଆସି ସ୍ତନାଙ୍କୁରରେ କେମିତି ଢଳିପଡ଼ିଥାଏ (ଧନ୍ୟ ରାଧାନାଥ), ତାକୁ ଅନୁଧାନ କରେ । ମୁଁ ରୂପକୁ ଦେଖେ ଏବଂ ତା ସହିତ ମିଶେ ଦେହ ବାହାରେ । କେବଳ ସେହି ଆର୍ଟିଷ୍ଟିକ୍ କନ୍ୟା ନୁହେଁ । ଚାରିଟା ବାଜିଗଲେ ଯେ ସେହି ବାରଣ୍ଡାରେ ଟହଲ ମାରେ ପାନ ଦୋକାନ ଚା ଦୋକାନରେ ବି- ଯାହାକୁ ଗୋଟିଏ ଗୋଟିଏ ଛୋଟିଆ ପୃଥିବୀ କୁହାଯାଇପାରେ । ସେହି ହେଲା ମୋର ଅନୁଭୂତି ଓ ପାଠପଢ଼ାର ପରିସର । ତୁମ ମୁଖସ୍ଥକରା- ଯୁଗଯୁଗ ଧରି ବାଜି ଆସିଥିବା ଟେପର ଶବ୍ଦ ନୁହେଁ । ତୁମେ ମୋତେ ଲଫଙ୍ଗା, ବଜାରୀ କହିଲେ ବି ତୁମର ସାମ୍ନାରେ ଠିଆ ହୋଇ ତୁମକୁ କହିବି, ଦେଖବେ ବୋକା ! ତୁମ ବିଚାରରେ ଏଇ ଲଫଙ୍ଗା ଟୋକା ଜୀବନକୁ କେମିତି ଚିହ୍ନିଛି, ତା ସମସ୍ୟାରେ ଛନ୍ଦି ହୋଇପଡିଛି ।

ଆଦିମ ପ୍ରକୃତିସ୍ଥ ହେଲା- ମତଲବୀ ଦୁନିଆ ବିଷୟରେ ଚିନ୍ତାକଲେ ମୁଣ୍ଡ ପାଗଳ ହୋଇଯିବ ଓ ଶେଷରେ ସମସ୍ତଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ବ୍ରାହ୍ମଣ କାନ୍ଧରେ ଛେଳି କୁକୁର ପରି ଗୋଟିଏ ସିନିକ୍ ପାଲଟି ଯାଇ କେଉଁ ଦିନ ଆଖି ବୁଜି ଦେବ ସୁନ୍ଦର ଦୁନିଆଟିକୁ ଅବହେଳା କରି କରି ।

ସିନିକ୍ ହେବାଟା ଇଚ୍ଛାକୃତ ନୁହେଁ; ପାରିପାର୍ଶ୍ୱିକ ଛଳନାପୂର୍ଣ୍ଣ । ସ୍ୱରୂପ ପ୍ରକାଶିତ ଆଦିମ ଅନେକ ଆଦିମରେ ପରିଣତ ହୋଇଯିବ । ଆଦିମ ପ୍ରବଳ ଆତ୍ମ ସନ୍ତୋଷରେ କେମିତି ଉତ୍ସାହିତ ହୋଇ ପଡିଲା ଓ ମେସ୍‌ର ଖଟ ଉପରୁ ଝଟ୍‌ପରି ଓହ୍ଲାଇ ଆସି ଆଇନା ହୋଇ ସମ୍ମାନରେ ଥୋଇଲା । ମୁହଁର ଉପର ଅଂଶକୁ ଛାଡି ଅବଶିଷ୍ଟରେ କ୍ରିମ ବୋଳିଲା ଏବଂ ମୁହଁଟିକୁ ପରିଷ୍କାର କରି ସେଭ କଲା । ହାଙ୍ଗରରୁ ତା ବିଚାରରେ ଷ୍ଟାଇଲିସ୍ ପୋଷାକ ପେୟାର ବାହାର କରି ପିନ୍ଧିନେଲା । ବେକ ମୂଳରେ କିଛି ଏକ୍‌ସୋଟିକା ଓ ଦୁଇହାତ ଚକରେ ଝାଡିନେଇ ପାପୁଲି ଦୁଇଟିକୁ ଘସିଦେଲା । ବେକ

ମୂଳରେ କିଛି ଏକ୍‌ସୋଟିକା ଓ ଦୁଇହାତ ଚକରେ ଝାଡିନେଇ ପାପୁଲି ଦୁଇଟିକୁ ଘସିଦେଲା । ତା'ପରେ ପାପୁଲି ଦୁଇଟିକୁ ସମତାଳରେ ଦୁଇଥର ଝାଡିଦେଇ ମୁହଁ ଉପରେ ଆସ୍ତେ ବୁଲାଇ ନେଲା । ଆଇନାରେ ମୁହଁଟି କିଛି ପରିମାଣରେ ଉଜ୍ଜ୍ୱଳ ଦିଶିଲା ।

ଆଦିମ କେମିତି ତନ୍ମୟ ହୋଇଗଲା- ଆକର୍ଷଣୀୟ ପୋଷାକ ଓ ସାମାନ୍ୟ କସ୍‌ମେଟିକ୍ ମଣିଷର ପରସନାଲ୍‌ଟି କେତେକାଂଶରେ ବଢାଇ ଦିଏ, ଯେମିତି ତା'ର ବର୍ତ୍ତମାନ । କିଛି କଥାବାର୍ତ୍ତା ନାହିଁ, ଚୁପ୍‌ଚାପ୍, ସ୍ୱାଭାବିକ ଗାମ୍ଭୀର୍ଯ୍ୟ ସହିତ ପାଖଚଲା ଲୋକ/ପରିବା ବିକାଳୀ । ବହିଥାକକୁ ଫୁଲିଲା ଫୁଲିଲା ଛାତିରେ ଜାକିଧରି ଚାଲୁଥିବା ଝିଅ ଉପରେ ସତର୍କ ଦୃଷ୍ଟିପାତ, କେହି ଆଉ ଭିତରକୁ ପଢ଼ିବେନି- ଚାଲିଛି ଜଣେ ବ୍ୟକ୍ତିତ୍ୱ ସମ୍ପନ୍ନ ଭଦ୍ରଲୋକ । ଏଇ ଶାଳା ଦୁନିଆ... କେତେ ମୁଖା, ଶାସ୍ତ୍ରୀୟ ପଦ୍ଧତିର ଅଭିନୟ, କେବଳ କହିଦେବାକୁ: ମୁଁ ଭଦ୍ରଲୋକ ହୋ ସାଙ୍ଗ ଭାଇ । ମୁଁ ଭଦ୍ରଲୋକ ଯେ ହଲିଲା ପାଣିକୁ ଗୋଡ଼ ବଢ଼ାଏ ନି ।

ଆଦିମ ହସିଦେଲା- ଆଟୋପର ଦୁନିଆ, ଆଟୋପ ଭିତରେ ସନ୍ତୁଳିତ ଆତ୍ମାଟି ବଡ ଦହଗଞ୍ଜ । ତଥାପି ବ୍ୟକ୍ତିତ୍ୱ, ଗାମ୍ଭୀର୍ଯ୍ୟ, ନିଜର ସ୍ୱାତନ୍ତ୍ର୍ୟ... ତାଏସ ଉପରେ ଠିଆହୋଇ ପଡ଼ିଲା ପରେ ଅନ୍ୟଠାରୁ ଏକ ସ୍ୱତନ୍ତ୍ର ଉଚ୍ଚତାକୁ ଉଠିଯିବାର ନିଶା ।

ଆଦିମକୁ ଏସବୁ ଲାଗେ ଟ୍ରାଡିସ୍‌ନାଲ ନାଟକର ଚରିତ୍ରମାନଙ୍କ ପରି । ତଥାପି ତାହା ଦୀର୍ଘଦିନର ଚଳଣୀ ଓ ଆନନ୍ଦ... ଚଳିଯିବା, ସିନିକ ହେବା ଗୋଟାଏ ଆବଶ୍ୟକତା ନୁହେଁ, ବରଂ କିଛି ଦିନପରେ ସୁଟ୍ ପରି ଆଖିବୁଜି ଦେବା ।

ଆଦିମ ସତର୍କ ହେଲା, ସମୟ ହାତରୁ ଖସିଯାଉଛି । ପ୍ରେମିକାଟି ଅନ୍ୟର ପୌରୁଷରେ ଆକର୍ଷିତ ହୋଇ ତୁମ ହାତରୁ ଖସିଗଲା ପରି । ସେ ଭାବିଲା ବିଷୟ କ'ଣ ହୋଇପାରେ ଓ ପ୍ରସ୍ତୁତି କେଉଁ ପ୍ରକାର ହେବା ଆବଶ୍ୟକ । ସେ କାହିଁକି ଭାବିନେଲା ସାଂପ୍ରତିକ ରାଜନୀତି, ଅର୍ଥନୀତି କିମ୍ବା ଆନ୍ତର୍ଜାତିକ ପାୱାରଗେମ୍‌କୁ ନେଇ କୌଣସି ବିଷୟ ଦିଆଯାଇପାରେ । ସେ ସେଲ୍‌ଫରୁ କେତେଖଣ୍ଡ ବହି ବାହାର କଲା ଓ କେତେଗୁଡିଏ ପଏଣ୍ଟ ନୋଟ୍ କରି ସେଗୁଡିକୁ ବାରମ୍ବାର ଦୋହରାଇଲା । ଏଇ ଅବସ୍ଥାରେ ହଠାତ୍ ସେ ଅନୁଭବ କଲା ସେ କିଛି ନୂଆକଥା ଜାଣୁନି, ଅତୀତରେ ବକ୍ତୃତା ମାନଙ୍କରେ ଏଇସବୁ କଥା ଓ ଯୁକ୍ତିକୁ ଜଣେ ପେଶାଦାର ବକ୍ତାପରି ସଫଳ ପ୍ରୟୋଗ କରି ବିଚାରକ ମଣ୍ଡଳୀର ଦୃଷ୍ଟି ଆକର୍ଷଣ କରିଛି । ସବୁ ତାକୁ ଜଳ ଜଳ ଦିଶିଲା ଓ ସେ ବହି ବନ୍ଦ କରିବା ସହିତ ଟୁକୁରା କାଗଜଗୁଡ଼ିକୁ ପବନତରେ ଉଡାଇ

ଦେଲା । ଏବେ କ'ଣ କରିବ ଭାବୁ ଭାବୁ ତା ସୁ ଉପରେ ଆଖି ପଡ଼ିଲା ଓ ସେଥିରେ ରଙ୍ଗ ଲଗାଇବା ତା ପାଇଁ ଅଧିକ ଦରକାରୀ ମନେହେଲା ।

ହାତରେ ସମୟ ମାତ୍ର କେତେ ମିନିଟ୍ । ଯୋତାରେ ରଙ୍ଗ ଦେବାରେ କିଛି ବ୍ୟୟ ହେବ... ହେଉଁ ବରଂ, ଯୋତାରେ ରଙ୍ଗଦେବ । ସେ ଗୋଟିଏ ପେଶାଦାର ମୋଚି ପରି ଯୋତାରେ ରଙ୍ଗ ଲଗାଇଲା ଓ ରଙ୍ଗ ଦେଲାବେଳେ ଭାବିଥିଲା ନଦେଲେ ବିଶେଷ କ'ଣ କ୍ଷତି ହୁଅନ୍ତା । ସେତେବେଳେ ତା'ର ମନେ ପଡ଼ିଲା, ବକ୍ତୃତା ସଭାମାନଙ୍କରେ ଅନେକ ଦର୍ଶକ ଉଭୟ ସେକ୍ସର । ପ୍ରତ୍ୟେକ ଚରିତ୍ରର ମତଭେଦ ପ୍ରତ୍ୟେକଠାରୁ ଭିନ୍ନ, ସେଥିପାଇଁ ସେ ମୁହଁର ଦାଢ଼ି ସଫକଲା । ରୁଚିପୂର୍ଣ୍ଣ ପୋଷାକ ପିନ୍ଧିଲା ଓ ଏଇ ଯୋତାରେ ରଙ୍ଗ ବୋଲୁଛି । ହୁଏତ ଏସବୁ ଉପରେ ଗୁରୁତ୍ୱ ଦେଇ ନଥାନ୍ତା ଓ ନିଜର ଜ୍ଞାନର ସୀମାକୁ କେବଳ ପ୍ରସାରିତ କରିଥାନ୍ତା କେତୋଟି ଦାମୀ ବହିର ପୃଷ୍ଠା ଦେଇ । ଏଇ କୋଡ଼ିଏ/ବାଇଶ ବର୍ଷର ଉଦ୍ଦାମ ଜୀବନରେ ବାର୍ଦ୍ଧକ୍ୟର ଅନୁଭୂତି ଆସିଗଲା- ଦାମୀ ବହିର ପୃଷ୍ଠା ଭିତରୁ ସତକଥାଗୁଡ଼ିକ ସାଉଣ୍ଟି ଆଣି ଜ୍ଞାନକୁ ବ୍ୟାପକ କରିବା ଗୋଟିଏ ବୋକାମିରେ ପୁଅ । ସଂପ୍ରତି ଆଟୋପ ବଡ଼ କଥା, କଡ଼କଥା ନେଇଆଣି ଥୋଇବା ସଫଳତା... ଦୁନିଆଟା ଆଜି ବଡ଼ ସଜାଗରେ ପୁଅ !

ଏଇ ପ୍ରସ୍ତୁତି ଓ ବିରୁଦ୍ଧ ଚିନ୍ତା ମଧ୍ୟରେ ମହାନ୍ତି ଆସିଛି ଆଦିମର ମନ ଭିତରକୁ । ବଡ଼ ଅଦ୍ଭୁତ ଝିଅ । ଦୁନିଆରେ କ'ଣ ନାହାନ୍ତି; ମନ ଦେଲେ ଯାହାକୁ ଯେତେ । ହେଲେ ସେ କେମିତି ଗୋଟାଏ କଙ୍କି ପରି-ହାତ ପାହାନ୍ତାରେ ସାର୍ଟ କଲାର ଉପରେ ବସିପଡ଼ିଲା ପରି ଅଛି; ତାକୁ ଧରିବା କଷ୍ଟ... ପୁଣି ତାକୁ ଧରି ଯନ୍ତ୍ରଣା ଦେବାଟା (ଯଦି ସେଇଟା ସତ୍ୟ ହୋଇଥାଏ) ଗୋଟାଏ ଅପରାଧର କଥା ହେବ- ଆଦିମ ଭାବେ । ଆଦିମ ଭାଗନେଉଥିବା ପ୍ରତ୍ୟେକ ପ୍ରତିଯୋଗିତାରେ ସେ ଆସି ଡାଏସ ନିକଟବର୍ତ୍ତୀ ପ୍ରଥମ ଧାଡ଼ିରେ ଗୋଟିଏ ସ୍ଥାନ ଅଧିକାର କରିବ । ଅଧିକାର କଲ ଭଲ କଥା, ହେଲେ ପୁଣି ବସି ବସି ଚାହିଁବ ସେ ସମୟରେ ତୁମେ ଚାହିଁଦେଲେ ତୁମ ପଏଣ୍ଟ ଗୋଳମାଳ ହେଇ ଯିବାକୁ ବାଧ୍ୟ । ବିବାଦର କଳାଛାଇ ଯେତେବେଳେ ତା ମୁହଁକୁ ଢାଙ୍କି ଯିବାକୁ ବାଧ୍ୟ । ବିଷାଦର କଳାଛାଇ ସେତେବେଳେ ତା ମୁହଁକୁ ଢାଙ୍କି ଯିବ ଓ ତା ଆଚରଣରେ ଅତିଷ୍ଠତା ପ୍ରକାଶ ପାଇବ । ବାଳିକାରେ ।

ମନେ ମନେ ହସିଦେଇ କହେ: ତୁ ଯଦି ବୁଝିପାରନ୍ତୁ... ସବୁ ଅନର୍ଥର ମୂଳ ତୁ ବୋଲି । ସେ ବା କାହିଁକି ବୁଝିବ... ସେତ ଗୋଟିଏ ଅଶରୀରୀ ସନ୍ତୁଷ୍ଟ ଆତ୍ମା ପରି ନିଜ

ଜ୍ଞାତି-ପରିଜନର ସୁଖ-ସ୍ୱାଚ୍ଛନ୍ଦକୁ କେବଳ ଅନୁଧ୍ୟାନ କରେ ଛାଇ ପରି । କେମିତି ମ ସେ ଝିଅଟା... ଆଦିମ ଗୁମ୍ ମାରିଯାଏ, ଦେହ ଉପରେ କସ୍‌ମେଟିକ୍‌ସ୍‌ର ଅତ୍ୟାଚାର ନାହିଁ, ଶାଢ଼ିର ରଙ୍ଗବେରଙ୍ଗର ସମାହାର ନାହିଁ, ଅଥଚ କେମିତି ଆକର୍ଷଣୀୟ ଲାଗେ ତା' ଦେହର ରଙ୍ଗ, ରଙ୍ଗ ସାଙ୍ଗକୁ ମୁଣ୍ଡରେ ଟୋପା, ଟୋପା ସାଙ୍ଗକୁ ଫିକା ରଙ୍ଗର ଶାଢ଼ୀ ଓ ଶାଢ଼ୀ ସାଙ୍ଗକୁ ସାମ୍ପୋ କରା ବାଳକୁ ଏଣୁତେଣୁ ଗୁଡ଼ାଇ ଦେବାର ଢଙ୍ଗ । ତରକା ତରକା ଆଖିରେ କେତେ ଅପ୍ରକାଶିତ କଥା ।

ତାକୁ କଥା କହିଦେଲେ, ମିଶିଗଲେ ସବୁ ସରିଯାଆନ୍ତା ବୋଧ ହୁଏ । ସେହି ଗତାନୁଗତିକତା- ତମେ ଖୁବ୍ ଆର୍ଟିଷ୍ଟିକ୍.... ତମର ସବୁ ସୁନ୍ଦର, ମୁଁ ମଧ୍ୟ କମ୍ ନୁହେଁ... କ'ଣ ଅସୁବିଧା ହୁଅନ୍ତା ! ସେ କାହିଁକି ଆପତ୍ତି କରନ୍ତା କି । ସେ ତ ପ୍ରତିଯୋଗିତାର ସାମ୍ନା ବେଞ୍ଚରେ ବସେ, କମନରୁମ୍‌ର ପରଦା ଫାଙ୍କରୁ ଅନୁଧ୍ୟାନ କରେ ଓ ଆଦିମ ଚାହିଁଦେଲେ ହସିଦେଇ ଅନ୍ୟକଥାର ବାହାନା କରେ । ସତରେ ମିଶିଗଲେ ସବୁ ସରିଯାଆନ୍ତା... ପ୍ରଥମ ପ୍ରଥମର ରୋମାଞ୍ଚ ଶେଷରେ କେମିତି ପାଣିଚିଆ ଧରନ୍ତା ଓ ଦିନେ ସୁଷମା ମହାନ୍ତି ଗର୍ଭିଣୀ ଗାଈଟିଏ ପରି ପହ୍ନା ଫୁଲାଇ ଅନ୍ୟର ଅନୁକମ୍ପାର ପାତ୍ରୀ ହୁଅନ୍ତା । ସୁଷମା ମହାନ୍ତିର ସେମିତି ଏକ ଅବସ୍ଥାକୁ ଆଦିମ କେବେ ଚିନ୍ତା କରିପାରେନା ।

ଆଦିମ ପ୍ରକୃତିସ୍ଥ ହେଲା... ମିଛଟାରେ କାହିଁକି ସେ ସୁଷମା ମହାନ୍ତି କଥା ଏତେ ଚିନ୍ତା କରିବ । ସେ ତ ତା ଇଚ୍ଛାର ବାଳିକା । ତା'ର ଅଧିକାର ଅଛି- ଆଦିମ କହୁଥିଲାବେଳେ ମୁହଁରୁ ଗୋଡ଼ ପର୍ଯ୍ୟନ୍ତ ଚାହିଁ ରହିବାର । ସଜାଗ ଦୁନିଆରେ ସେ ବ୍ୟତିକ୍ରମ୍ୟ, ହୁଏତ ଚାହିଁଥିବ ଆଦିମ ଅତିକ୍ରମ୍ୟ ହେଉ । ଅବଶ୍ୟ ଆଦିମ ଅତିକ୍ରମ୍ୟ, ସେଇଥିପାଇଁ ସେ ପ୍ରତିଯୋଗିତାର ଦର୍ଶକମଣ୍ଡଳୀର ପ୍ରଥମ ବେଞ୍ଚରେ ବସେ । ଆଦିମ ହାତଘଣ୍ଟା ଦେଖିଲା- ଆଉ ମାତ୍ର ଘଣ୍ଟାଏ ସମୟ । ଉତ୍କଣ୍ଠା କ୍ରମେ ବିବ୍ରତ ଅବସ୍ଥାକୁ ଆସିଗଲା । ଏ ପର୍ଯ୍ୟନ୍ତ ବିପ୍ଳବ 'ବିଷୟବସ୍ତୁ' ସହିତ ଫେରିଲା ନାହିଁ ।

ଆଦିମ ଯୋତା ପିନ୍ଧିନେଲା ଓ ଯୋତାର ଷ୍ଟ୍ରାପ୍ ଭିଡିଲା । ପରେ ସୋରାଇରୁ ପାଣି ଗଡ଼ାଇ ପିଇଲା ଓ ଆବଶ୍ୟକ ନଥିଲେ ବି ଖଣ୍ଡେ ସିଗ୍ରେଟରେ ନିଆଁ ଧରାଇଲା । ସମୟ ସରିଯାଉଚି, କେବଳ ସରିଯାଉନି ଯେ ପ୍ରତି ମୁହୂର୍ତ୍ତରେ ସତର୍କ ମୁହୂର୍ତ୍ତରେ ସତର୍କ କରୁଛି ଆଉ କିଛି ବାକି ରହିଗଲା କି ! ଫାଇନାଲ ଘଣ୍ଟା ବାଜିଗଲେ ଖାତା ଛଡ଼ାଇ ନେବା କଥା ଯେ ।

ସେ ପୁନର୍ବାର ଖଟତଳୁ ଟୁକୁରା କାଗଜଗୁଡ଼ାକ ଗୋଟାଇ ଆଣିଲା ଓ ସେଥିରେ

ଆଖି ପକାଇଲା ବେଳେ ଏକ ପ୍ରକାର ମନୋଟନିରେ ଘାଣ୍ଟି ହୋଇଗଲା । ସେଇ ଯାହା ନୂଆ ନୂଆ କେତେଜଣ ବଡମଣିଷ ପୃଥିବୀରେ ଜନ୍ମ ନେଇଥିଲେ ଓ ଅନୁଭୂତିର କଥା କିଛି କହି ଯାଇଥିଲେ । ଏବେ କାହିଁ ପୁରୁଣା ରେକର୍ଡ ଘସି ହୋଇ ହୋଇ ବିକୃତ ଶବ୍ଦ କଲାପରି ଭଲ କଥାଗୁଡ଼ା ବାରମ୍ବାର ପ୍ରୟୋଗ ହୋଇ ଅର୍ଥପ୍ରକାଶର କ୍ଷମତା ହରାଇଗଲେଣି । ନୂଆ ମଣିଷ କାହିଁ? ତାକୁ ଲାଗେ ମଣିଷ ସବୁ ମରିଗଲେଣି ଓ କଥାମାନ ଅନ୍ତର୍ଦ୍ଧାନ ହୋଇଗଲେଣି । ଏବକା ମଣିଷଗୁଡ଼ା କେମିତି ଯାନ୍ତ୍ରିକ ଶବ୍ଦ ପ୍ରଚାରର ମାଧ୍ୟମ ହୋଇ ଗଲେଣି ।

ଆଦିମ ଭାବିଲା ସେ ବଞ୍ଚିଗଲା ଓ ତା ମନୋଟନିର ସମୟ ଅତିକ୍ରମ କରିଗଲା । କାରଣ କବାଟରେ ନକ୍ ଓ ପରେ ବିପ୍ଲବର ସ୍ୱର: ଗୁରୁ । ଚଞ୍ଚଳ ଖୋଲ, ଆସିଗଲା ବିଷୟ ।

ରୁମ୍‌ରେ ପଶିଯାଇ ବିପ୍ଲବ ଖଟ ଉପରେ ବସିଗଲା ଓ କପାଳରୁ ଝାଳ ପୋଛି ଗ୍ଲାସେ ପାଣି ପାଇଁ ଅପେକ୍ଷା କଲା । କାରଣ ବିଷୟଟି ଜାଣିଲା ପରେ ଶୀଘ୍ର ଆଦିମ ନିକଟରେ ପହଞ୍ଚାଇ ଦେବାକୁ ସେ ଜୋର ସାଇକ୍‌ଲିଂ କରିଥିଲା, ଫଳରେ ଅତିରିକ୍ତ ଧକ୍‌କାରେ ଧଇଁ ସଇଁ ହୋଇ ପଡ଼ିଥିଲା । ପାଣି ପିଇ ସାରିଲା ପରେ ସେ ଟିକିଏ ସତେଜ ହେଲା ଏବଂ ପକେଟରୁ କାଗଜ ଟୁକୁରାଟି ବାହାର କରୁକରୁ ବକ୍ତୃତା ପ୍ରତିଯୋଗିତାର ସାମ୍ପ୍ରତ୍ୟ ଫଳକୁ ନିଜ ବାକ୍ୟରେ ପ୍ରକାଶ କଲା: "ଗୁରୁ, ଥେର ମାତ୍ । ଶାଳା ଟପ୍ ବିଷୟ ଅଛି– 'ଦେଶ ଗଠନରେ ଛାତ୍ରର ଭୂମିକ', ଗୁରୁ କୁଆପଥର ପରି ଖାଲି ଝାଡିଦେବ ।"

ବିଷୟଟି ଶୁଣିଲାପରେ ଆଦିମର ମୁହଁ କେମିତି ବିଷର୍ଣ୍ଣ ହୋଇ ପଡ଼ିଲା, ଖଣ୍ଡିଏ ସିଗ୍ରେଟ୍‌ରେ ନିଆଁ ଧରାଇଲା ଓ ଫ୍ଲାଟ ହୋଇ ଖଟରେ ଶୋଇଗଲା । ତା'ର ଦୃଷ୍ଟି କୋଠରୀର ଛାତ ଓ ମୁହଁରୁ ବାହାରୁଥିବା ଧୂଆଁ କୁଣ୍ଡଳି ଉପରେ ସୀମାବଦ୍ଧ ଥିଲା । ଏମିତି ଗୋଟାଏ ସ୍ଥିତାବସ୍ଥା କିଛି ସମୟ ଧରି ଚାଲିଲା ଏବଂ ବିପ୍ଲବ ତାର ଭୂମିକା ଠିକ୍ କରି ନ ପାରି କେବଳ ଆଦିମର ଏଇ ସବୁ ବ୍ୟତିକ୍ରମକୁ ଲକ୍ଷ୍ୟ କରୁଥିଲା ।

ବିପ୍ଲବ ତା ନାଁକୁ ଜଷ୍ଟିଫାଏ କରେ ନା, ସେ ଭାସମାନ ଏବଂ ଆଦିମମାନଙ୍କ ଚରିତ୍ରର ସ୍ତବକତାରେ ସେମାନଙ୍କ ପୌରୁଷ । ତେଣୁ ଆଦିମର ପ୍ରତିକ୍ରିୟା ଉପରେ କୌଣସି ପ୍ରଶ୍ନ କରିବା ଅବା ତା'ର କୌଣସି ଉତ୍ତର ପାଇବାର ସମାଧାନ ଦେବାର ବୌଦ୍ଧିକତା ତା'ର ନାହିଁ । ଆଦିମକୁ କେବଳ 'ଗୁରୁ' କହିବାରେ ତା'ର ଆନନ୍ଦ ।

ସେଇଥିପାଇଁ ନୀରବ ରହିବା ଆପାତତଃ ତା ପାଇଁ ଏକାନ୍ତ ଆବଶ୍ୟକ ।

ଆଦିମ ହଠାତ ଉଠି ପଡ଼ିଲା ଓ ଚକାପାରି ବସିପଡ଼ି ମୁହଁ ତଳକୁ ଝୁଲାଇଦେଲା । ତାପରେ କ'ଣ ଭାବି ଗମ୍ଭୀରଭାବେ ତା'ର ନିଷ୍ପତ୍ତି ଜଣାଇ ଦେଲା ବିପ୍ଳବକୁ: ମୁଁ ଏ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବି ନାହିଁ ।

ଏମିତି ଗୋଟିଏ ଆକସ୍ମିକ ଉତ୍ତରରେ ବିପ୍ଳବ ବିସ୍ମିତ ହେବା ପୂର୍ବରୁ ଆଦିମ ଘଟରୁ ଓହ୍ଲାଇଗଲା ଓ ବିପର୍ଯ୍ୟସ୍ତ ଭାବରେ କୋଠରୀରେ ଘୂରିବାକୁ ଲାଗିଲା । ଏମିତି କିଛି ସମୟ ଘୁରିଲା ଓ ଗୋଟିଏ ପଟ କାନ୍ଥ ନିକଟରେ ଅଟକିଗଲା । କାନ୍ଥରେ ଝୁଲୁଥିବା ଫଟୋଗୁଡ଼ିକୁ ସେ ଜଣ ଜଣ ଦେଖିଲା,- ମହାତ୍ମା ଗାନ୍ଧୀ, ଶିରିଡ଼ି ବାବା ପରି ଦିଶୁଥିବା ତା'ର ଜେଜେ ଓ ଉତ୍କଳମଣି ଗୋପବନ୍ଧୁ । ଆଦିମର ଦୃଷ୍ଟି ପଲକହୀନ ଥିଲା । ତିନି ଜଣ ବ୍ୟକ୍ତି, ତିନୋଟି ଚେହେରା, ସେମାନଙ୍କ ତିନି ପ୍ରକାର ସ୍ୱତନ୍ତ୍ର ଦୃଷ୍ଟି । ସେଇ ଦୃଷ୍ଟିମାନଙ୍କର ଯେମିତି ଅନେକ ପୁସ୍ତକ ପୃଷ୍ଠାର ପାଠ ପୂର୍ଣ୍ଣ ହୋଇ ରହିଛି ଯାହାକୁ ପଢ଼ି ପଢ଼ି ମଣିଷ ହୁଏତ ଗୋଟିଏ ଗୋଟିଏ ସତ୍ ମଣିଷରେ ରୂପାନ୍ତରିତ ହୋଇ ପାରିଥାନ୍ତା... ଅଥଚ ହେଲା ନାହିଁ, ହେଇ ପାରିଲା ନାହିଁ ସେମାନଙ୍କର ମୃତ୍ୟୁ ପରେ ପରେ । ଲୁହା ଫ୍ରେମର ଚଷମା କାଚ ଭିତରେ ମହାତ୍ମାର ଆଖିରେ କେତେ ସ୍ୱପ୍ନ, କେତେ ସମ୍ଭାବନା... ଛଳନା ନାହିଁ, ମୃଦୁହସର ଆନ୍ତରିକ ସ୍ପର୍ଶରେ ସବୁ ସତ୍ ବୋଲି ଏମିତି ଧାରଣା କେଉଁ ଆଖି ଦେଇପାରନ୍ତା । ସେ ଚିନ୍ତା କରିଥିଲା କି ଦେଶ କହିଲେ କେବଳ ଏକ ଭୂଖଣ୍ଡ ନୁହେଁ, କୋଟିଏ ଲୋକର ହୃଦୟାବେଗ ସହିତ ନିଜ ଆବେଗକୁ ମିଶାଇ ବସିବାର ଅନୁଭୂତି ବୋଲି ।

ଆଦିମକୁ ଆଜି କେମିତି ଅର୍ଥହୀନ ମନେ ହେଉଛି ବ୍ରାହ୍ମମୁହୂର୍ତ୍ତରେ ଜେଜେଙ୍କର ଉଦାତ୍ତ କଣ୍ଠର ବାଣୀ: 'ସର୍ବେ ଭବନ୍ତୁ ସୁଖିନଃ', ଏବଂ ତା'ର ଅବିଶ୍ୱାସ ଆସିଯାଉଛି ତା ଠାରେ ଜେଜେଙ୍କର ବିଶ୍ୱାସ ନାହିଁ । କେମିତି ସାଢେ ଛ' ଫୁଟର ହାଡୁଆ ମଣିଷଟା ସତୁରୀ ବର୍ଷରେ ସଳଖ ହୋଇ ଗାଁ ଦାଣ୍ଡରେ ଚାଲେ ଓ କୁହାଟ ମାରିଦେଲେ ସାରା ଗାଁ ଉଠିପଡ଼ି ଠିଆ ହୋଇ ଯାଏ ତା' ନିକଟରେ । ତା' ଚଉଡ଼ା ଛାତି ଥିଲା ଗାଁ ଲୋକଙ୍କର ଆଶ୍ରୟସ୍ଥଳ, ସେ ଖୁଆଇ ଖୁଆଇ ଲୋକଙ୍କୁ ଅଣନିଃଶ୍ୱାସୀ କରି ପକାଉଥିଲା । ସ୍ନେହ, ପ୍ରେମ-ସହାନୁଭୂତିର ଦାନରେ ନିଜେ ନିଃସ୍ୱ ହୋଇପଡ଼ିଲା । ସେ ଥିଲା ସ୍ୱତନ୍ତ୍ର, ଗାଁ ଲୋକଙ୍କ ପାଇଁ ଏକ ନମୁନା ।

ତା' ଦୃଷ୍ଟି ଆସ୍ତେ ଘୂରିଗଲା ଅନ୍ୟ ଲୋକଟି ଆଡ଼େ... ତାଙ୍କ ଦୃଷ୍ଟି ସହିତ

ନିଜର ଦୃଷ୍ଟି ମିଳିଗଲା ପରେ ଆଦିମ କେମିତି କରୁଣ ହୋଇପଡ଼ିଲା । ଆଦିମକୁ ଲାଗିଲା ଯେମିତି କୋଟିଏ ସନ୍ତାନର ସେବା ଭିତରେ ଟିକିଏ ସମୟ ବି ପାଇଲା ନାହିଁ ମୁହଁଟିକୁ ପରିଷ୍କାର କରିବା ପାଇଁ । ସେମାନେ ସବୁ ବିତରଣ କରି ଚାଲିଗଲେ, ଅଥଚ ଆମେ ଅପଦାର୍ଥ... ପ୍ରବଳ କ୍ଷୋଭରେ ଆଦିମର ନିଜ ଉପରେ କେମିତି ଘୃଣା ଆସିଗଲା ।

ଆଦିମ ସ୍ମରଣ କଲା ତା' ବାପାଙ୍କୁ, ବାପମାନଙ୍କୁ । ସେମାନେ ହୁଏତ ଜଣେ ଜଣେ ଅବଧାନ, ସରସ୍ୱତୀ, ଗଣେଶ ପୂଜାରୁ ଆରମ୍ଭ କରି ବିଭିନ୍ନ ସମୟରେ ଉପାର୍ଜନର ଉପାୟ ଖୋଜି ଖୋଜି ସେମାନଙ୍କୁ କେବଳ କେତୋଟି ନିର୍ଦ୍ଦିଷ୍ଟ ସୂତ୍ର ଧରାଇ ଦେଇଛନ୍ତି... ମଡ଼ାଉଥା ଏମିତି ଯୁଗଯୁଗ ଏବଂ ଆମେ ଏମିତି ତମ ପାଇଁ କାନ୍ଦୁ କାନ୍ଦୁ ମିଳୁଥିବା ପଦାର୍ଥତକ ବାନ୍ଧି ପକାଇଥାଉଁ । ଆଦିମ ମୁହଁ ତଳକୁ କରି ଫେରି ଆସିଲା ତା' ଖଟ ନିକଟକୁ ଏବଂ ବିପ୍ଳବକୁ କୌଣସି କଷ୍ଟ ନ ଦବାକୁ, ସ୍ଥିର ଭାବରେ ପୂନର୍ବାର ତା'ର ମତ ଜଣାଇ ଦେଲା: ସେ ବକ୍ତୃତାରେ ଆଜି ଅଂଶ ଗ୍ରହଣ କରିବ ନାହିଁ ।

ବିପ୍ଳବ ନୀରବରେ ଉଠି ଠିଆ ହେଲା ଏବଂ ଆପାତତଃ ସେ କୋଠରୀରୁ ବାହାରି ଯିବାକୁ ସ୍ଥିର କଲା; ଯେହେତୁ ଆଦିମର ନିଷ୍ପତ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ଶକ୍ତି ତା'ର ନାହିଁ ବୋଲି ସେ ସଚେତନ ।

ବିପ୍ଳବ ଚାଲିଗଲା ପରେ ଆଦିମ ଶୋଇଯିବାକୁ ଚେଷ୍ଟା କଲା । ଶୋଇ ଯାଇଥିଲେ ସେ ହୁଏତ ବଞ୍ଚି ଯାଇଥାଆନ୍ତା । ସଂପ୍ରତି ଅବଧାନଗିରି ବିରୁଦ୍ଧରେ ତା'ର ପ୍ରତିକ୍ରିୟାକୁ ସେ ଭୁଲିଯାଇଥାନ୍ତା ଓ ନିଜ ଭାଙ୍ଗିଗଲା ପରେ ଏକ ଶାନ୍ତ ଶୀତଳ ଅନୁଭୂତିରେ ସେ ବାହାରକୁ ଯାଇଥାନ୍ତା, ଟୋକୀମାନଙ୍କୁ ଯାତାୟାତ କରୁଥିବାର ଦେଖିଥାନ୍ତା ଏବଂ ଛକ ସ୍ଥାନମାନଙ୍କରେ ଚଳନ୍ତି ରାଜନୀତିକୁ ନେଇ ସେଇ ପାନଦୋକାନୀଠାରୁ ବଜାର ଲୋକଙ୍କ ଆଲୋଚନା ଶୁଣିଥାନ୍ତା । ଶେଷରେ ରାତି ଆସିଥିଲେ ପୁନର୍ବାର ଶୋଇଯାଇଥାନ୍ତା ।

ଆଦିମ ଶୋଇପାରିଲା ନାହିଁ । ଅବଧାନଗିରିର ଧାରଣାଟା ଯେମିତି ତାକୁ ଭୂତ ଭଳି ମାଡିବସିଛି । ଯୁବକ ଛାତ୍ରମାନଙ୍କୁ ନୀତିବାକ୍ୟ ଶୁଣାଇବା ଯେମିତି ତାଙ୍କର ଧର୍ମ କୋଥଳୀ ଭିତରେ ତୁଳସୀ କଣ୍ଠିକୁ ଗଣି ଗଣି 'ହରେକୃଷ୍ଣ'ର ଶବ୍ଦ ଭିତରେ ଘର ଓଳାଉଥିବା ଚାକରାଣୀର ଝୁଲିପଡ଼ିଥିବା ସ୍ତନକୁ ଚାହିଁ ଆମୋଦିତ ହେବା ତାଙ୍କର ଅଧିକାର ଯେମିତି ! ଆଉ ହବନି ବାପୁ ।

ଗୋଟିଏ ନିଷ୍ଫଳ ଅଭିମାନରେ ଆଦିମ ତକିଆରେ ମୁହଁ ଗୁଞ୍ଜି ଦେଲା ।

ଆଦିମର ଇଚ୍ଛା ହେଲା ସେ କାନ୍ଦିବ ଏବଂ କାନ୍ଦି କାନ୍ଦି ଲୁହର ବନ୍ୟାରେ ବାପା, ବାପାମାନଙ୍କର ପାପକୁ ସେ ସବୁ ଧୋଇଦେବ । ଧୋଇଦେବ ଯେ ଯେଉଁଠୁ ଆରମ୍ଭ ହେବ ଗୋଟାଏ ନୂଆ ପ୍ରସୂତିର ବେଦନା ।

ଆଦିମ ଅନେକ ଥର ଏମିତି ସ୍ୱପ୍ନ ଦେଖୁଛି । ଏ ସ୍ୱପ୍ନ ତାକୁ ସତପରି ଲାଗେ ଯେତେବେଳେ ସୁଷମା ମହାନ୍ତିର ଆଖିରେ, ଓଠରେ ପରିପୂର୍ଣ୍ଣ ଦୁନିଆର ଚିତ୍ର ସେ ଦେଖେ ।

ଆଜି ବି ଏବେଠାରୁ ସୁଷମା ମହାନ୍ତି ପ୍ରତିଯୋଗିତା ହଲ୍‌ର ପ୍ରଥମ ଧାଡ଼ିରେ ବସିଥିବ ଆଦିମକୁ ଅପେକ୍ଷା କରି ଏବଂ ତା'ର ଅନୁପସ୍ଥିତିରେ ହସର ମୁହଁଟି ତା'ର ଫିକା ବାସିଫୁଲ ପରି । ପରଦିନ ସକାଳେ ସେ କହିପାରେ: ସୁଷମା, ଦେଶ କହିଲେ ଏକ ଭୂଖଣ୍ଡ, ନା ଗୋଟାଏ ଉପଲବ୍ଧି ଏ ପର୍ଯ୍ୟନ୍ତ ମୁଁ ବୁଝିପାରିଲି ନାହିଁ ।

ଆପାତତଃ ଆଉ ଅଧିକ କ'ଣ କହିପାରନ୍ତା ଆଦିମ !



## ସମୟ: ସହଯାତ୍ରୀ

ଦିନେ ଦିନେ ରାତିରେ ଏମିତି ବି ହୁଏ ବିରୁପାକ୍ଷ ହଠାତ୍ ବିଛଣାରୁ ଉଠିପଡ଼େ ଏବଂ କବାଟ ଖୋଲି ବାହାରକୁ ଚାଲିଯାଏ । ବାଲକନିରେ ଠିଆ ହୋଇ ସେ ଦେଖେ ଗୋଟିଏ ସହର, ଜହ୍ନ ଆଲୋକର ଶୀତ ମିଶି ସେ ସହର ଉପରେ ଥଣ୍ଡାର ଏକ ସୂକ୍ଷ୍ମ ଆସ୍ତରଣ ବୋଲି ଦେଇଛି: ଯେମିତି ଭୟଙ୍କର ସହରଟି କିଛି ସମୟ ପାଇଁ ନିର୍ଦ୍ଦୋଷ ବ୍ୟକ୍ତିର ଅଭିନୟ କରୁଛି ।

ବିରୁପାକ୍ଷର ଇଚ୍ଛା ହୁଏ ପାଦ ଚିପି ଚିପି ସେ ସହର ଭିତରେ ପ୍ରବେଶ କରନ୍ତା ଏବଂ ତା ଉପରେ ଶୀତର ସେ ପରଦାଟାକୁ ଟାଣି ଦେଇ ତା'ର ଅସଲ ରୂପକୁ ରୋକ୍‌ଠୋକ୍ ପଦାରେ ପକେଇ ଦିଅନ୍ତା । କିନ୍ତୁ ସେ ରୂପକୁ ଦେଖିବ କିଏ ! ଯେଉଁମାନଙ୍କର ସ୍ୱରୂପ ପ୍ରକାଶ ପାଇବ ସେମାନେ ପ୍ରତ୍ୟେକ ସହରର ଜଣେ ଜଣେ ସମ୍ଭ୍ରାନ୍ତ କିମ୍ବା ନିଓ ସମ୍ଭ୍ରାନ୍ତ ବ୍ୟକ୍ତି । ସେମାନେ ହୁଏତ ବିରୁପାକ୍ଷର ଏ ଆଚରଣରେ ଉତ୍ତ୍ୟକ୍ତ ହେବେ ଏବଂ କୌଣସି ସମୟରେ ତା'ର ସ୍ଥିତି ଗୋଟାଏ ଫୁଟା ଶିମୁଳୀ ତୁଳା ପରି ଆକାଶରେ ଉଡୁଥିବ ।

ସହରଟା ତା' ଆଖିରେ କ୍ରମେ ପୃଥିବୀରେ ପରିଣତ ହୁଏ ଏବଂ ଜହ୍ନ ଆଲୋକରେ ନିରୀହ ଦିଶୁଥିବା ଅତିକାୟ କୋଠାମାନଙ୍କ ଉପରେ ମୁଣ୍ଡମାଳ ସବୁ ଦେଖାଯାଏ ଭୟଙ୍କର ଆଉ ବିକୃତ । ସେମାନେ ବିରୁପାକ୍ଷର ଚତୁର୍ଦ୍ଦିଗରେ ନୃତ୍ୟ କରନ୍ତି, ସେ ଅତିଷ୍ଠ ହୁଏ ଓ ଘର ଭିତରେ ପଶିଯାଇ କବାଟ ବନ୍ଦ କରେ । ପୁଣି କିଛି ଗୋଟାଏ

ମାଡ଼ି ମାଡ଼ି ପଡ଼ିବାର ଭାବ ତା' ଚାରିପଟରେ ଘୂରିବୁଲେ । ସେ ଲାଇଟ୍ ବନ୍ଦ କରେ ଓ ନିରୂପମାର ଅର୍ଦ୍ଧଲଗ୍ନ ଦେହଟା ଉପରେ ହାତ ବୁଲାଉ ବୁଲାଉ ଅନ୍ଧାରରେ ଉପରକୁ ଚାହେଁ ।

ଅନ୍ୟ କୌଣସି ରାତିରେ:

ବିରୁପାକ୍ଷ ସଂକ୍ଷିପ୍ତ ଦୂରତ୍ୱରେ ରହି ନିରୂପମାର ଉଲଗ୍ନ ଦେହକୁ ନିରୀକ୍ଷଣ କରେ । ଦେହର ଅବଶିଷ୍ଟ ଅଂଶରେ ଥିବା ଆବରଣକୁ ଧୀରେ ଖୋଲି ଦିଏ, ହାତରେ ସେ ଦେହକୁ ଅନୁଭବ କରେ ଓ ଖୋଜେ କେଉଁଠି ସେ ଆକର୍ଷଣର ଚାବିକାଠି ଯାହା ଫଳରେ ତା'ର ଦେହଟା ବିରୁପାକ୍ଷ ପାଇଁ ଏକ ଆବଶ୍ୟକତାରେ ପରିଣତ ହେଇଛି ।

କିଛି ପାଏନା ସେ, ବରଂ ପରମୁହୂର୍ତ୍ତରେ ନିରୂପମାର ନିଜସ୍ୱ ଅହଙ୍କାର ଏବଂ ଆତ୍ମବଡ଼ିମା ସେ ଦେହରେ ପ୍ରତିଫଳିତ ହୁଏ । ବିରୁପାକ୍ଷ ନିଜକୁ ଚାହେଁ, ନିଜର ସର୍ବାଙ୍ଗରେ ହାତ ବୁଲାଇ ନିଜକୁ ଅନୁଭବ କରେ । ତା'ର ପୌରୁଷ ଆଉ ନିରୂପମାର ଅହଙ୍କାର ଦୁଇ ବିରୋଧୀ ଶକ୍ତି ହେଇ ଦିନରେ କିଛି ପାରିବାରିକ ବିଶୃଙ୍ଖଳା ସୃଷ୍ଟି କରନ୍ତି ।

ବନ୍ଦୀ ବିରୁପାକ୍ଷ ନିକଟରେ ମୁକ୍ତି କେବଳ ଗୋଟିଏ ସ୍ୱରରେ ରୁପାନ୍ତରିତ । ଫଳରେ ସାମ୍ପ୍ରତିକ ଦୁନିଆ ଓ ବିରୁପାକ୍ଷ ସାମ୍ନାସାମ୍ନି ।

ରାତିରେ ଏମିତି ଦୃଶ୍ୟ ଘଟୁଥିଲାବେଳେ ନିରୂପମା ତା'ର ସ୍ୱାଭାବିକ ଢ଼ଙ୍ଗରେ କର ମୋଡ଼େ ଓ ମସୃଣ ଗୋଡ଼ଟିକୁ ବିରୁପାକ୍ଷର ପେଟ ଉପରେ ଥୋଇଦିଏ, ଯେମିତି ରାତିଟା କେବଳ ବିରୁପାକ୍ଷ ତା ମଧ୍ୟରେ କିଛିଟା ବୁଝାମଣା ।

ବିରୁପାକ୍ଷ ଚିନ୍ତାକରେ ଗୋଟିଏ ରାତି ପାଇଁ ଏଇ ଯେଉଁ ବୁଝାମଣା ତା ପଛରେ ଥିବା କ୍ରିୟାଟା କେଡ଼େ କୁତ୍ସିତ । ଯା'ର ଉପରେ ପୁଣି ଆତ୍ମା ଆଉ ତାକୁ ନିୟନ୍ତ୍ରଣ କରୁଥିବା ଚେତନାରେ ଯଦି ବୁଝାମଣା ହେଇ ନପାରିଲା... ମୁକ୍ତି କାହିଁ !

ଦିନେ ଏମିତି ହେବ ବିରୁପାକ୍ଷ ତା' ପରିବେଶରୁ ମୁକ୍ତ ହେବା ପାଇଁ ଘରୁ ଚାଲିଯିବ ଓ ଏ ସହରରେ ପ୍ରତ୍ୟେକଟି ଗଳିରେ ବୁଲି ସାମାଜିକ ଲୋକମାନଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କରିବାକୁ ଆଗ୍ରହ ପ୍ରକାଶ କରିବ । ସେମାନଙ୍କୁ କହିବ: ଚାଲନ୍ତୁ ଆମେ କିଛି ଗୋଟେ ଆରମ୍ଭ କରିବା, ମାନେ ନିଜକୁ ଧୋଇନେବା ଓ ଦେହରେ ଥିବା ଅନେକ ଦିନର ପୋଷାକପତ୍ରକୁ ଖୋଲିଦେଇ ନୂଆ ପୋଷାକ ପିନ୍ଧିବା, କ୍ଷତିଗ୍ରସ୍ତ

ହେବାନି, ବରଂ ଆମର ଦୃଷ୍ଟିଶକ୍ତି ବଢ଼ିବ ଓ ଦୁନିଆର ବିରାଟ ଅଂଶକୁ ଦେଖିପାରିବା ।

ଲାଭ କ'ଣ ! ପୁରୁଣା ପୋଷାକରେ ତ ଆମେ ଅଭ୍ୟସ୍ତ ହେଇଗଲୁଣି, ତା' ଗନ୍ଧରେ ଆମେ ମୁଗ୍ଧ, ସେଇ ପୋଷାକରେ ଆମେ ବାହାରେ ଚିହ୍ନିତ । ପୁଣି କ'ଣ ! ତା'ଛଡ଼ା ନୂଆ ପୁରୁଣା ଏତେ ନିକଟବର୍ତ୍ତୀ, ସେଥିରେ କୌଣସି ଆବଶ୍ୟକତା ନାହିଁ ବୋଲି ଆମର ଧାରଣା । ତେଣୁ, ତମେ ଦୂରରେ ରହ । ତମର କୌଣସି ପ୍ରକାର ଉପଦେଶ ଗ୍ରହଣ କରିବା ଅର୍ଥ ଦୀର୍ଘ ଦିନର ଅଭ୍ୟାସ ଠାରୁ ଦୂରକୁ ଚାଲିଯିବା ।

ବିରୁପାକ୍ଷ ଘରକୁ ଫେରି ଆସିବ... ସେଇ ପୁରୁଣା ଘର, ନିରୂପମା ବଗିଚାରେ ଅଯତ୍ନ ବର୍ଦ୍ଧିତ ଫୁଲଗଛ କେତୋଟି, ଗୋଟିଏ ରୁଦ୍ଧ ପରିବେଶ ଯେଉଁଠି ମୁକ୍ତିର ଚିନ୍ତା ଶୀର୍ଣ୍ଣକାୟ ।

ଏମିତି ଗୋଟାଏ ରାତି ।

ବିରୁପାକ୍ଷ ଉଠି ପଡ଼ିଲା । ନାଇଟ୍ ଗାଉନ୍ ଦେହରେ ଗଳାଇ ଝରକା ଦେଇ ବାହାରକୁ ଚାହିଁଲା । ପରିଚିତ ଦୃଶ୍ୟ, ସହର ଉପରେ ଶୀତରାତି । ସହରଟି ଶୋଇପଡ଼ିଛି ତା'ର ଜୀବମାନଙ୍କୁ ନେଇ । ସେମାନେ ହୁଏତ ଶାନ୍ତିରେ ନିଶ୍ୱାସ ମାରୁଥିବା ଜୀବନ ସହିତ ବୁଝାମଣା କରି ନେଇଛନ୍ତି ବୋଲି । କ'ଣ ସେମାନଙ୍କର ଇଚ୍ଛା ! ସମୟ ସହିତ ଜୀବନଟା କ'ଣ ସ୍ଥିର ହେଇଗଲା ।... ନାଁ ଗୋଟାଏ ଅଜଗର ପରି ଯାହାର ଚାଲିବାଟା ଅନାକର୍ଷଣୀୟ ଏବଂ ଉତ୍ତେଜନାହିନ ।

ବିରୁପାକ୍ଷ ଝରକା ବନ୍ଦ କଲା ଓ କାନ୍ଥ ଘଣ୍ଟାକୁ ଚାହିଁଲା । ଅଳ୍ପ ସମୟ ପୂର୍ବରୁ ଦୁଇଟା ବାଜିଯାଇଛି ଏବଂ ଆସନ୍ତାକାଲି ଠିକ୍ ଏଇ ସମୟକୁ ମଧ୍ୟ ଏମିତି କିଛି ପୂର୍ବରୁ ଦୁଇଟା ବାଜିଯାଇଥିବ । ମଣିଷକୁ ଠକିବା ପାଇଁ ସମୟର ଏହା ଯେମିତି ଏକ ଫିକର । ପ୍ରତିଦିନ ଏକ ନିୟମିତ ସମୟକୁ ନିର୍ଦ୍ଦେଶ କରୁଥିଲେ ବି ମଣିଷ କହିବ ସମୟ ଚାଲି ଯାଉଛି । ସମୟରେ ବିରୁପାକ୍ଷ ପାଇଁ ଏଇଟା ବି ଏକ କନ୍‌ଫିଉଜନ୍: ସମୟ ସ୍ଥିର ନାଁ ତା'ର ଗତି ଅଛି ।

ସମୟ ସ୍ଥିର ହେଉ କି ତା'ର ଗତି ସେ ବିଷୟରେ ଚିନ୍ତା କରି ଅଯଥା ଭାରାକ୍ରାନ୍ତ ହେବାକୁ ବିରୁପାକ୍ଷ ବେଳେବେଳେ ପସନ୍ଦ କରେନା । କିନ୍ତୁ କାନ୍ଥ ଘଣ୍ଟା ଯେତେବେଳେ ଗୋଟାଏ ଶାନ୍ତ ପରିବେଶକୁ ନଷ୍ଟ କରି ବିରୁପାକ୍ଷର ଚିନ୍ତାରେ ବିଶୃଙ୍ଖଳା ଆଣି ଠନ୍ ଠନ୍ କରି କେତୋଟି ନିୟମିତ ଶବ୍ଦ କରେ, ସେତେବେଳେ ବିରୁପାକ୍ଷ ବିବ୍ରତ ହୁଏ ଓ

ଦର୍ପଣରେ ମୁହଁକୁ ଦେଖେ । ମୁହଁ ଉପରେ କେତୋଟି କଳା ଗାର ଯେମିତି ତାକୁ କହେ, ସମୟ ତମ ଦେହ ଉପରେ ତା'ର ସୂକ୍ଷ୍ମ ପାଦଚିହ୍ନ ରଖି ଚାଲିଯାଉଛି । ସେମିତି କିଛି ଆରମ୍ଭ ଶେଷ ନଥିଲେ ବି ତମ ଚାରିପଟେ ଅନ୍ତତଃ ଥରେ ଲେଖା ଘୁରିଯାଇ ତମକୁ ସତର୍କ କରୁଛି- ମୋର ଗତି ଅଛି ।

ଅନାବଶ୍ୟକ, ସମୟର ଯାହା ଇଚ୍ଛା ସେ କରୁ ।

କିନ୍ତୁ ପୁଣି ଏକ ପରିବର୍ତ୍ତନ ଯାହାର ମୁଦ୍ରାଙ୍କ ତା'ର ଦେହ, ମନ ତଥା କାର୍ଯ୍ୟ କାରଣରେ ପ୍ରତିଫଳିତ । ସମୟ ଦୁଃସହ ବିରୁପାକ୍ଷ ନିକଟରେ, ପୁଣି ସ୍ତ୍ରୀ-ସମାଜ ସମ୍ପର୍କ ବିଚାରରେ ବି ।

ବିରୁପାକ୍ଷ ଉଠି ପଡ଼ିଲା ଏବଂ କିଛି ସମୟ ପଦଚାରଣ କରି ଇଜି ଚେୟାରକୁ ଟାଣିନେଲା ବିଛଣାର ଖୁବ୍ ନିକଟକୁ ଯେଉଁଠି ନିରୂପମା କଞ୍ଚା ଦେହଟା ଗଡୁଛି ଅପର୍ଯ୍ୟାପ୍ତର ଧର୍ଷିତା ଗୋଟିଏ ନାରୀର ଶରୀର ପରି ।

ନିରୂପମା ଶରୀର ଉପରେ ନୀଳ ଆଲୋକ ପ୍ରତିଫଳିତ । ତା'ର ଗୋଲାପ ରଙ୍ଗ ଦେହରେ ନୀଳ ଆଲୋକ ମିଶିଯାଇ ତାକୁ ପରିଣତ କରି ଦେଇଛି ଏକ ପରୀରେ । ଅନାବୃତ୍ତ ସ୍ତନ ଦୁଇଟିରେ ଅହଙ୍କାର, ମୁହଁରେ ସାମୟିକ ସନ୍ତୋଷ, ଖୋଲା ଗୋଡ଼ ଦୁଇଟିରେ ଉତ୍ତେଜନା ।

ବିରୁପାକ୍ଷ ଠିଆ ହେଲା ଓ ପରେ ନିରୂପମାର ଶରୀର ଉପରେ ଝୁଙ୍କିପଡ଼ିଲା । ବିରୁପାକ୍ଷ ଅନୁଭବ କରୁଛି ଯେମିତି ଦେହଟା ତା'ର ଆୟତ୍ତର ବାହାରକୁ ଚାଲିଯାଉଛି ଏବଂ କିଛି ମୁହୂର୍ତ୍ତ ପରେ ସେ ଦେହରେ ପ୍ରଳୟ ଘଟିବ । ତା'ର ଖର ନିଶ୍ୱାସ ପ୍ରଶ୍ୱାସରେ ନିରୂପମା ମୁହଁ ଉପରେ ଝୁଲି ପଡ଼ିଥିବା ସରୁ ବାଳ କେରାକ ହଲିଯାଉଛି ।

ବିରୁପାକ୍ଷ ତା'ର ଦୁଇ ହାତରେ ନିରୂପମା ଗାଲର ମସୃଣତାକୁ ଅନୁଭବ କଲା ଅତି ସନ୍ତର୍ପଣରେ । ପ୍ରତି ମୁହୂର୍ତ୍ତରେ ତା'ର ପ୍ରତ୍ୟୟ କମିଯାଉଛି, ଯଦି ନିରୂପମାର ନିଦ ଭାଙ୍ଗିଯାଏ ସେ ହୁଏତ ହଠାତ୍ ରିଏକ୍ଟ କରିବ ! ଅଭଦ୍ର କଉଠିକାର ।

- ମୁଁ ତୁମର ସ୍ୱାମୀ ନିରୁ ।

- ସୋ' ହ୍ୱାଟ୍ ! ସମୟ ଜ୍ଞାନ ନାହିଁ ?

ତାପରେ ବିରୁପାକ୍ଷର ଆତ୍ମା 'ମୋର ଅଧିକାର' 'ମୋର ଅଧିକାର' ବୋଲି ଚିତ୍କାର କରିବ ଏବଂ ସେ ବିରୁପାକ୍ଷ, କୋଠରୀର ଚାରିକାନ୍ଥରେ ଧଳା ରଙ୍ଗ ଉପରେ

ଅସହାୟ ଦୃଷ୍ଟି ବୁଲାଇନେବ ।

ଦୁର୍ବଳ ବିରୁପାକ୍ଷ ନିରୂପମାର ମୁହଁ ଉପରୁ ଥରିଲା ହାତ ଦୁଇଟିକୁ କାଢ଼ି ଆଣିଲାବେଳେ ତା'ର ସ୍ତନ ନିକଟରେ ସ୍ଥିର ହୋଇଗଲା । ଆପାତତଃ ଦୁଇଟି ନିଷିଦ୍ଧ ଫଳ ବିରୁପାକ୍ଷ ପାଇଁ; ତାକୁ କେବଳ ଦେଖାଯାଇପାରେ ନିରୂପମାର ଅଜଣାତରେ ।

ଗୋଟିଏ ଦୁର୍ଦ୍ଦଶାଗ୍ରସ୍ତ ନାୟକ ପରି କିଛି ସମୟ ଚିନ୍ତାକରି ପରେ ପୁଣି ବସିପଡ଼ିଲା ଇଜି ଚେୟାରରେ ।

ବିରୁପାକ୍ଷ ଗୋଟାଏ ନାମ, ଗୋଟାଏ ଶରୀରର ଅସ୍ତିତ୍ୱ ପରିଚୟରେ । ସେ ଭଦ୍ର, ସାମାଜିକ, ତା'ର ଯୁବତୀ ସ୍ତ୍ରୀ, ଦୁନିଆ ଦୃଷ୍ଟିରେ ସମ୍ଭ୍ରାନ୍ତ ।

ପୁଣି ତା' ଭିତରେ ଆଉ ଏକ ବିରୁପାକ୍ଷ । ତା'ର ସ୍ୱତନ୍ତ୍ର ସେ ପରିଚୟ ଅସ୍ୱୀକୃତ, ସ୍ଥିତି ବିପର୍ଯ୍ୟସ୍ତ । ସେ ସର୍ବଦା ଗୋଟିଏ ବନ୍ଦୀ ରାଜକୁମାର । ତା'ର ଅଧିକାରଠାରୁ ବସ୍ତୁଜଗତ୍ ବହୁ ଦୂରରେ । ତା'ର ଅଧିକାର କହିଲେ ତା'ର ଏକାନ୍ତ ନିଜସ୍ୱ ଉପଲବ୍ଧି । ତା' ସହିତ ଅନ୍ୟର ଉପଲବ୍ଧି ମିଶି ଗୋଟାଏ ସାର୍ବଜନୀନ ଉପଲବ୍ଧି; ବିରୁପାକ୍ଷର ଇଚ୍ଛା ହେଲେ ବି ସେଥିପ୍ରତି ଅନ୍ୟର, ବିଶେଷକରି ନିରୂପମାର ଅସହଯୋଗ ତାକୁ ବନ୍ଦୀ କରି ରଖିଛି ।

ବିରୁପାକ୍ଷ ନିକଟରେ ମୁକ୍ତି ଏକ ଲୋଭନୀୟ ବସ୍ତୁ ହେଲେ ବି ତା'ର ପ୍ରାପ୍ତି ହିଁ ତା' ପାଇଁ ଏକ ସଂଗ୍ରାମ ।

ପାଖ ସେଲଫ୍‌ରୁ ଖଣ୍ଡେ ମାଗାଜିନ ଟାଣିଆଣି ବିରୁପାକ୍ଷ ହାତରେ ଧରିଲା । କିନ୍ତୁ ପୃଷ୍ଠାଗୁଡ଼ିକୁ ଖୋଲିବା ଯେମିତି ଏକ ବିରକ୍ତିକର ବ୍ୟାପାର । ସେ ଖଣ୍ଡକୁ ପୁଣି ଯଥା ସ୍ଥାନରେ ଥୋଇ ଦେଲା ।

ବର୍ତ୍ତମାନ ସେ ହୁଏତ କିଛି ଚିନ୍ତା କରିପାରେ କୌଣସି ସମସ୍ୟା ନେଇ । କିନ୍ତୁ ଗୁଡ଼ାଏ ଚିନ୍ତା ତା'ର ମାନସିକ ଅବସ୍ଥାକୁ ଏମିତି କରି ଦେଇଛି, ଫଳରେ କିଛି ଚିନ୍ତା କରି କୌଣସି ସିଦ୍ଧାନ୍ତରେ ପହଞ୍ଚିବାର ଧୈର୍ଯ୍ୟର ଅଭାବ ତା' ପାଖରେ । ଆଜିକାଲି ତା' ଚିନ୍ତାରେ କ୍ରମିକତା ନାହିଁ, ବରଂ ଟୁକୁରା ଟୁକୁରା ହେଇ ବ୍ୟାପକ ।

ବିରୁପାକ୍ଷ ଉଠିପଡ଼ିଲା ଏବଂ ସେ କୋଠରୀ ମଧ୍ୟରେ ପାୟଚାରୀ ଆରମ୍ଭ କରିଦେଲା ।

ସମାଜ ସହିତ ତା'ର ସମ୍ପର୍କ ନେଇ ବିବ୍ରତ ହେବା ତା ପାଇଁ ସାମୟିକ ।

କିନ୍ତୁ ନିରୂପମା ! ସେ ଯଦି ଦିନେ ଆତ୍ମହତ୍ୟା କରିଦିଏ...!!

ବିରୁପାକ୍ଷ ମୁଣ୍ଡରେ ହଠାତ୍ ଏକ ଧାରଣା ପଶିଗଲା ନିରୂପମାକୁ ନେଇ । ନିରୂପମା କୌଣସି ଦିନ ଆତ୍ମହତ୍ୟା କରିଦେଇପାରେ । କାରଣ ବିରୁପାକ୍ଷ ସହିତ ତା'ର ବୁଝାମଣା ଦିନେ ଏମିତି ଏକ ଅଚଳ ଅବସ୍ଥାକୁ ଆସିଯିବ, ଫଳରେ କିଛି ଉପାୟ ନ ଦେଖି ସାଧାରଣ ସ୍ତ୍ରୀ ବୁଦ୍ଧିରେ ଯାହା କରିଦେବା କଥା ସେ କରିଦେବ ।

ଅବସନ୍ନ ବିରୁପାକ୍ଷ ଘରକୁ ଫେରିବ ଓ ଗେଟ୍ ଖୋଲିବାକୁ ଯାଇ ଦେଖିବ, ତା' କ୍ୱାର୍ଟର ସାମ୍ନାରେ ଅନେକ ଲୋକ ଯେମିତି ତାକୁ କେବଳ ଅପେକ୍ଷା କରିଛନ୍ତି । ସେମାନଙ୍କ ମୁହଁ ଗମ୍ଭୀର । ନିରୂପମାର ମୃତ ଶରୀରକୁ ସମବେଦନା ଦେଖାଇବାକୁ ଯାଇ ତା' ପ୍ରତି ଘୃଣା ପ୍ରକାଶ କରୁଥିବେ । ବିରୁପାକ୍ଷ ହଠାତ୍ କିଛି ବୁଝି ନପାରି ସେ ଲୋକମାନଙ୍କୁ ପଛକରି ଘରେ ପଶିବ ଓ ପଙ୍ଖା ଦେହରେ ଲଟକିଥିବା ନିରୂପମାର ଶରୀରକୁ ଦେଖି ଆଶ୍ଚର୍ଯ୍ୟ ହେବ (ଯେହେତୁ ଡ଼ରିଯିବାର ଲୋକ ସେ ନୁହେଁ) ।

ଟେବୁଲ ଉପରେ ଖଣ୍ଡେ କାଗଜରେ ଲେଖାଥିବା 'ମୋ ମୃତ୍ୟୁ ପାଇଁ କେହି ଦାୟୀ ନୁହେଁ' । ତାପରେ ଅନ୍ତତଃ ସେ ଆଶ୍ୱସ୍ତ ହେବ ଜୀବନରେ ଗୋଟେ ପ୍ରକାର ଝାମେଲା ଶେଷ । ପରବର୍ତ୍ତୀ କାର୍ଯ୍ୟକ୍ରମ ଠିକ୍ କରିବା ପୂର୍ବରୁ  ବିରୁପାକ୍ଷର ପରିଚୟ ହେଇଥିବ, ସେ ଜଣେ ଖୁନୀ ଆସାମୀ । ସମାଜ ମଧ୍ୟରେ ସେ ଏକ ବ୍ୟତିକ୍ରମ ।

ବିରୁପାକ୍ଷ ସାମ୍ନା କରିବ ଗୋଟାଏ ବିରାଟ ଦୁନିଆ ଯେଉଁଠି ସେ ନିଜେ କେବଳ ନିଜର ସମର୍ଥକ ।

ବିରୁପାକ୍ଷ ବିରୁଦ୍ଧରେ ଅଭିଯୋଗ ନିହାତି ସହଜ– ନିରୂପମା ସହିତ ବୁଝାମଣାର ଅଭାବ ଏବଂ ତା ପ୍ରତି କର୍ତ୍ତବ୍ୟର ଅବହେଳା ଯୋଗୁଁ ସେ ଆତ୍ମହତ୍ୟା କଲା ।

'ଯଦି ମୁଁ ଆତ୍ମହତ୍ୟା କରିଥାନ୍ତି କିମ୍ବା ସମାଜର ପ୍ରତ୍ୟେକ ଲୋକ ମୋ ସହିତ ବୁଝାମଣାରେ ପହଞ୍ଚି ପାରୁ ନାହାଁନ୍ତି ବୋଲି ଆତ୍ମହତ୍ୟା କରିଥାନ୍ତେ... ।'

'ବିରୁପାକ୍ଷ ଦାସ, ଗୁଡ଼ାଏ ଅନାବଶ୍ୟକ କଥା କହି କୋର୍ଟର ଅବମାନନା କରନା । ବରଂ ନିଜ ସପକ୍ଷରେ କିଛି ବଳିଷ୍ଠ ଯୁକ୍ତି ଥିଲେ ଧର୍ମାବତାରଙ୍କ ସାମ୍ନାରେ ପେଶ କରି ନିଜକୁ ଦୋଷମୁକ୍ତ କର ।'

ଦୋଷମୁକ୍ତ ! ଦୋଷ କ'ଣ, ମୁକ୍ତି କ'ଣ ! ବଞ୍ଚିବାରେ ଯେତେବେଳେ ମୁକ୍ତି ନାହିଁ, ଦୋଷରୁ ପୁଣି ମୁକ୍ତି କ'ଣ ! ତେବେ କିଛି କହିବାକୁ ହେବ । କ'ଣ ସେହି

କିଛି..., ଯାହାକୁ କହିଦେଲେ କୋର୍ଟର କାଠଗଡ଼ାରେ ଦେହକୁ ଝାଡ଼ିଝୁଡ଼ି ଦେଇ ସେଲୁନ୍‌ରୁ ବାହାରି ଆସିଲା ପରି ଦରଜା ମୁହଁରେ ସାର୍ଟ କଲର ଟେକିଦେବ ।

'ନାଁ, ମୋର କିଛି କହିବାର ନାହିଁ । ନିରୂପମା ନିଜର ପ୍ରତିନିଧି । ତା' ଉପରେ ମୋର କିଛି କର୍ତ୍ତୃତ୍ୱ ନଥିଲା । ସେ ଯଦି ପରିବେଶକୁ ସମ୍ମୁଖୀନ ହେଇନପାରିଲା ସେଥିରେ ମୋର କିଛି କରିବାର ନାହିଁ । ସେମିତି ତା ଆତ୍ମହତ୍ୟାରେ ମଧ୍ୟ ମୋର କିଛି କହିବାର ନାହିଁ । ସେ ହୁଏତ ଚାହିଁଥିଲେ ମୋ ପରି ବଞ୍ଚିପାରିଥାନ୍ତା । କିନ୍ତୁ ପାରିଲା ନାହିଁ, ଆତ୍ମହତ୍ୟା କଲା ।'

ଆସାମୀ ବିରୁପାକ୍ଷ ଦାସ ନିଜ ସପକ୍ଷରେ କିଛି ଯୁକ୍ତି ବାଢ଼ି ନପାରିବାରୁ ଅଦାଲତ ବିଚାରରେ ଦୋଷୀ... ତେଣୁ ଏତେବର୍ଷ ସଶ୍ରମ କାରାଗାର... ।

ଏମିତି ଗୁଡ଼ାଏ ଅଜବ ଚିନ୍ତାର ଶେଷ ପର୍ଯ୍ୟାୟରେ ବିରୁପାକ୍ଷ ମନକୁ ମନ ହସିଲା । ବାଃ, ଶଳା ଦୁନିଆଟେ ତ, ଚାଲିଛି ଗୋଟେ ଢ଼ଙ୍ଗରେ ।

ନିରୂପମା କର ମୋଡ଼ିଲା, କିଛି ପ୍ରଳାପ କଲା ଓ ପରେ ପୁଣି ନୀରବରେ ଶୋଇପଡ଼ିଲା ।

ବର୍ତ୍ତମାନ ବିରୁପାକ୍ଷ ନିରୂପମାକୁ ଡ଼ାକିପାରେ । ନିରୂପମା ଉଠିବ ଏବଂ ହାତପାପୁଲିର ପଛପଟରେ କିଛି ସମୟ ଦୁଇ ଆଖିକୁ ଦଳି ସାରିଲା ପରେ ବିରୁପାକ୍ଷକୁ ଚାହିଁ ହାତମାରିବ, ପୁଣି ହୁଏତ ପରେ ପରେ ବିଛଣାରେ ଗଡ଼ି ପଡ଼ିବ । ଠିକ୍ ସେତିକିବେଳେ ବିରୁପାକ୍ଷ କହିବ, ନିରୂ ତମ ସହିତ ଦି'ପଦ କଥା ଥିଲା । ସେ ଗ୍ରହଣ କରିବା ପୂର୍ବରୁ ଗୋଟାଏ ଖାମଖିଆଲି ଦୀର୍ଘ 'ହୁଁ' ମାରିବ ଏବଂ ପରେ ପ୍ରକୃତିସ୍ଥ ହୋଇ କହିବ: କୁହ ।

– ଏଇ ଯଦି ତମ ମୋ ଭିତରେ ଗୋଟେ ରାଜିନାମା ହୋଇଯାନ୍ତା... ।

– ରାଜିନାମା ! ରାଜିନାମା କ'ଣ ?

– ମାନେ, ମୋତେ ତମେ ବୁଝିବାକୁ ଚେଷ୍ଟା କରନ୍ତ, ଦେଖନ୍ତ ମୁଁ କେମିତି ପରିବେଶର ଚାପରେ ଗୋଟିଏ ବିନ୍ଦୁରେ ପରିଣତ ହେବାକୁ ଯାଉଛି ।

– ତମେ କେବେ ମୋ ମନକୁ ଜାଣିବାକୁ ଚାହିଁଛ ? ଦେଖନା, ମଣିଷ କେମିତି ଜହ୍ନରେ ଥେଇ ଥେଇ ନାଚୁଛି । ଆଛା, ସେମାନେ ଯେତେବେଳେ ଆପୋଲ ଯାନରେ ଚାଲି ଯାଉଥିବେ, ଏ ପୃଥିବୀ ତାଙ୍କୁ କେମିତି ଦିଶୁଥିବ ? ସତରେ କ'ଣ ଶୂନ୍ୟ ମଣ୍ଡଳରେ

ଏମିତି ସ୍ଥାନ ଅଛି ଯେଉଁଠି ସବୁବେଳେ ସୂର୍ଯ୍ୟଙ୍କର ଆଲୋକ ପ୍ରତିଫଳିତ ? ଆଉ କେତେଦିନ ପରେ ଲୋକ କୁଆଡ଼େ ମଙ୍ଗଳ ଗ୍ରହକୁ ଯିବ, ଆମେ ଏମିତି ଘରେ ବସିଥିବା ! ପୁରୀ, କୋଣାର୍କ, ଦାର୍ଜିଲିଂ, ସିମ୍ଲା ସବୁର ଦୂରତ୍ୱ କେତେ ? ତମେ ସନ୍ଧ୍ୟାରେ ଫେରିଲାବେଳେ ମୋର ମନେ ହୁଏ ତମେ ଜଣେ ରୁଗ୍ଣ ଲୋକ, ତମ ବଞ୍ଚିବା ମରିବା ସମାନ । ଗୋଟିଏ ନିର୍ଜୀବ ବସ୍ତୁ ସହିତ ବୁଝାମଣା କ'ଣ ସମ୍ଭବ...!!!

–ତମକୁ ବିବାହ କରିବା ମୋର ଇଚ୍ଛାକୃତ ନୁହେଁ । ନାଁ, ମୁଁ ପ୍ରେମ ବୋଲି କିଛି ବୁଝେ, ନାଁ ମୋର ଯୌନକାମନାରେ କିଛି ଧାରାବାହିକତା ଅଛି । ବେଳେବେଳେ ଦେହରେ ଉତ୍ତେଜନା ଆସେ । ତେଣୁ ଯୌନକ୍ରିୟାର ଉପଚାର ଅପେକ୍ଷା ରେପ୍‌କୁ ମୁଁ ପସନ୍ଦ କରେ । ତଥାପି ଯେହେତୁ ତମର ମୋର ଅବଶିଷ୍ଟ ଜୀବନ ଗୋଟିଏ ବିଛଣାରେ ପରିକଳ୍ପିତ, ସେ ଦୃଷ୍ଟିରୁ ଆମେ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ମିଳିତ ହେବା ଅନାବଶ୍ୟକ ।

–ମୋର ସେଥିରେ ବିଶ୍ୱାସ ନାହିଁ ।

'ଡ଼େମ୍ ଇୟୋର ଫେଥ୍,' ନିଜ ଭିତରେ ନିରୂପମାର ଯୁକ୍ତିକୁ ଚିନ୍ତା କରି ବିରୁପାକ୍ଷ ରିଏକ୍ଟ କଲା । ପରେ ଖଣ୍ଡେ ସିଗ୍ରେଟ୍‌ରେ ନିଆଁ ଲଗାଇ ବିରୁପାକ୍ଷ ଇଜିଚେୟାର୍‌ରେ ଚିତ୍ ହୋଇ ପଡ଼ିଯାଇ ସିଲିଂ ଫ୍ୟାନ୍ ଉପରେ ଦୃଷ୍ଟି ନିବଦ୍ଧ କଲା । ସିଗ୍ରେଟ୍ ସରିବା ପରେ କେତେବେଳେ ବିରୁପାକ୍ଷ ଆଖିକୁ ନିଦ ଆସି ଯାଇଛି ହୁଏତ ।

ସକାଳର ମେଞ୍ଚାଏ ସୂର୍ଯ୍ୟାଲୋକ ଯେତେବେଳେ ଝରକା ଦେଇ ବିରୁପାକ୍ଷର ମୁହଁ ଉପରେ ପଡ଼ିଲା, ସେ ହଠାତ୍ ଉଠି ପଡ଼ିଲା ଓ ଦେଖିଲା ନିରୂପମା ଆଉ ବିଛଣାରେ ନାହିଁ ।

ନିରୂପମା ସ୍ୱାଭାବିକ ଭାବେ ଡ୍ରଇଂ ରୁମ୍‌ରେ ସେଦିନ ସକାଳର ଚା' ପ୍ରସ୍ତୁତ କରୁଛି । ବିରୁପାକ୍ଷ ଗୋଟେ ଚେୟାର ଅଧିକାର କରୁ କରୁ ପ୍ରଥମ କପ୍‌ଟା ନିରୂପମା ତା' ହାତକୁ ବଢ଼େଇ ଦେଲା । ତା'ପରେ ନିଜ କପ୍‌ରେ ଚୁମ୍ ଦେଇ ବିରୁପାକ୍ଷର ମୁହଁକୁ ଲକ୍ଷ୍ୟ କଲା । କ'ଣ ବୁଝିଲା କେଜାଣି ତା'ର ବିରୁପାକ୍ଷ ପ୍ରତି ସେ ଦିନର ପ୍ରଥମ ସଂଳାପ ହେଲା: ରାତିରେ ଅନେକ ସମୟ ଧରି ଶୋଇନା ବୋଧହୁଏ ?

'ନାଁ,' ଅନ୍ୟମନସ୍କ ବିରୁପାକ୍ଷ ଉତ୍ତର ଦେଲା ।



# ବିବର୍ତ୍ତନ

ସନାତନର ମାନସିକ ବିକୃତି ଘଟିଛି ବୋଲି ଜଣାଗଲା ପରେ ଡ଼ାକ୍ତର ଶର୍ମାଙ୍କ ମାନସିକ ଚିକିତ୍ସାଳୟରେ ତା'ର ଚିକିତ୍ସା ବ୍ୟବସ୍ଥା କରାଗଲା । ମନ ପରିବର୍ତ୍ତନ ପାଇଁ ଚିକିତ୍ସାଳୟଟିରେ ଡ଼େ୍ନ୍ସ ହଲ୍ ଠାରୁ ଫୁଲ ବଗିଚା, କୃତ୍ରିମ ପାହାଡ଼ଠାରୁ ବନଝରଣା ପର୍ଯ୍ୟନ୍ତ ସବୁ କିଛି ରହିଛି । ସାମ୍ନାରେ ବିରାଟ୍ ପାର୍କ ଯେଉଁଥିରେ ଦୁଇଫୁଟ ପାଣି ଥିବା ଛୋଟ ଜଳାଶୟରେ ମାଛମାନେ ପହଁରନ୍ତି । ତାକୁ ଲାଗି ପକ୍କା ଚାନ୍ଦିନୀ ।

ପାଞ୍ଚ ଏକର ଜମି ଉପରେ ଏହି ଅନୁଷ୍ଠାନର ପ୍ରତିଷ୍ଠା ମୂଳରେ କ'ଣ ଗୋଟେ ଇତିହାସ ରହିଛି ବୋଲି ଅନେକ ମନ୍ତବ୍ୟ କରୁଥିଲେ ବି ତା'ର ପ୍ରକୃତ ତଥ୍ୟ କ୍ୱଚିତ୍ ଲୋକେ କହିପାରନ୍ତି । ବୋଧହୁଏ ଏ ସମ୍ପର୍କରେ ସଠିକ୍ ବିବରଣୀ ମିଳେ ମୁଖ୍ୟ ନର୍ସ ଶ୍ରୀଲତା ଦାସଙ୍କ ଠାରୁ । ମୁଖ୍ୟତଃ ଶର୍ମାଙ୍କର ଡାକ୍ତରଖାନାଟି ହେଲେ ବି ଶ୍ରୀଲତା ଦାସ ସେଥିର ସର୍ବମୟୀ କର୍ତ୍ତ୍ରୀ । ସେଥିପାଇଁ ଅନ୍ୟ ନର୍ସ ଯେ କେତେବେଳେ ମନ୍ତବ୍ୟ ନକରନ୍ତି ତା' ନୁହେଁ, ତେବେ ନିଜର ଜୀବିକା ପାଇଁ ସେଥିରେ ସଂଯତ ଭାବ ଥାଏ ।

ଅନେକ ଜହ୍ନ ରାତିରେ ଚିକିତ୍ସାଳୟରେ ଡାକ୍ତର ଶର୍ମା ନିଜର ଭାୟୋଲିନ୍ ଖଣ୍ଡକ ଧରି ସେ ଚାନ୍ଦିନୀ ଉପରେ ବସନ୍ତି ଏବଂ ତା'ପରେ ଚୂରଟର ଶେଷ ଅଂଶକୁ ଫିଙ୍ଗିଦେଇ ଗୋଟେ ଅଜଣା ସ୍ୱରର ମୂର୍ଚ୍ଛନା ତୋଳନ୍ତି । ଶର୍ମାଙ୍କ ଭାୟୋଲିନ୍ ଶବ୍ଦରେ ଅନ୍ୟ ନର୍ସମାନେ ଉତ୍ତେଜିତ ହେଲେ ବି କେବଳ ଶ୍ରୀଲତା ଦାସ ଶର୍ମାଙ୍କ ନିକଟକୁ ଆସିବାକୁ ସାହସ କରେ । ସେତେବେଳେ ତା'ଦେହରେ ଧଳା ଏପ୍ରନ୍ ନଥାଏ ଯେଉଁଟା

ତାଙ୍କ ଲୋଳିତ ଯୌବନର ଇଚ୍ଛାକୃତ ଗର୍ବିତ ରୂପକୁ ଢ଼ାଙ୍କି ରଖିଥାଏ ଅନ୍ୟ ସମୟରେ । ବୟସ୍କା ଶ୍ରୀଲତା ଦାସ ଗୋଟିଏ କିଶୋରୀ ହେଇଯାଏ ଏବଂ ଶର୍ମାଙ୍କର ଚନ୍ଦାମୁଣ୍ଡରେ ଆଙ୍ଗୁଳି ସଞ୍ଚାଳନ କରେ । ଶର୍ମାଙ୍କ ଭାୟୋଲିନ୍ ସ୍ୱର ନୀରବ ହୋଇଆସେ । ତାଙ୍କର ଦୃଷ୍ଟି ନିବଦ୍ଧ ହୁଏ ଶ୍ରୀଲତା ଦାସ ଉପରେ । ଶ୍ରୀଲତା ଦାସର ଓଠ ଥରେ, ତା'ର ହୃଦୟ କହେ... ଆଉ କାହିଁକି ଶ୍ୟାମ ଏ ବଂଶୀ ସ୍ୱନ ! ଏ ଦେହ ଯୌବନ ତମରି ସେବାରେ । ନାଁ, ରାଧା କୁଳଟା, ନାଁ କୃଷ୍ଣ ଚରିତ୍ରହୀନ... ଏହା ଏକ ଆଧ୍ୟାତ୍ମିକ ମିଳନ । ଖାଲି ଯାହା ଆମର ଅସହିଷ୍ଣୁ ମଣିଷ ତାକୁ ଗୋଟେ ଅପବାଦ ବୋଲି ପ୍ରଚାର କରେ ।

ସେତେବେଳେ ଡ଼ାକ୍ତର ଶର୍ମା କହନ୍ତି ତାଙ୍କୁ ଚିକିତ୍ସାଳୟର ପ୍ରତିଷ୍ଠା ମୂଳରେ ଥିବା ଇତିହାସ । ସେ କେତେବର୍ଷ ତଳର କଥା ମାତ୍ର । ସେ ଥିଲେ ଯୁବକ ଏବଂ ସୁରଭୀର ଉଲଗ୍ନ ଶରୀରକୁ ଅନୁଧ୍ୟାନ କରିବା ତାଙ୍କର ଥିଲା ଏକ ବ୍ୟସନ । ଗୋଟିଏ ସାମାନ୍ୟ କାରଣରୁ (ଶର୍ମାଙ୍କର ଅନ୍ୟ ସ୍ତ୍ରୀ ପ୍ରତି ଆସକ୍ତି) ସୁରଭୀ ଆଖି ବୁଜିଦେଲା । ସମାଜରେ ଶର୍ମା, ନିଜର ସମ୍ମାନ, ପ୍ରତିଷ୍ଠା ଚାହୁଁଥିଲେ । ତେଣୁ ଦେହର ଆବଶ୍ୟକତାକୁ ଚାପିଦେଇ ସେ ଦ୍ୱିତୀୟ ବିବାହର ସ୍ୱପ୍ନ ଦେଖିଲେନି । କିନ୍ତୁ ସୁରଭୀର ମୃତ୍ୟୁ ପରେ ସେ ନିଜକୁ କେମିତି ଏକ ଦୋଷୀ ଆସାମୀ ପରି ମନେ କଲେ ଆଉ ତା'ର ପ୍ରାୟଶ୍ଚିତ ଏ ଡ଼ାକ୍ତରଖାନା ।

ଶର୍ମା କ୍ରମେ ଭାବପ୍ରବଣ ହେଇପଡ଼ନ୍ତି ଏବଂ ଶ୍ରୀଲତା ଦାସର ହାତକୁ ନିଜ ଛାତିରେ ଚାପି ଧରନ୍ତି । ସେ କହନ୍ତି- ଆଦର୍ଶ ଆଉ ଆବଶ୍ୟକତା, ଗୋଟିଏ ସମାଜ ପ୍ରତି ନକଲି ଆନୁଗତ୍ୟ ହେଲେ ଅନ୍ୟଟି ବ୍ୟକ୍ତିର ଏକାନ୍ତ ନିଜସ୍ୱ ଯନ୍ତ୍ରଣା । ମୁଁ ଏବେ କାହାକୁ ଧରିବି, କାହାକୁ ଛାଡ଼ିବି ! ଏମିତି ବରଂ ବେଶ୍... ବାହାରେ ଅଭିଜ୍ଞ ଭଦ୍ର ଡ଼ାକ୍ତର ଶର୍ମା ତମ ପାଖରେ ବୃଦ୍ଧ ପ୍ରେମିକ । ବଞ୍ଚିବା ପାଇଁ ମୋର ଏ ଦ୍ୱୈତ ରୂପ ଶ୍ରୀଲତା, ଆଉ ସେଥିପାଇଁ ଯାହା ଅନୁଶୋଚନା ।

ଚିକିତ୍ସାଳୟରୁ କୌଣସି ଚିତ୍କାର ଶୁଭେ । ଶର୍ମା ପ୍ରକୃତିସ୍ଥ ହୁଅନ୍ତି । ଯାଇ ଦେଖନ୍ତି ଯୁବତୀ ନର୍ସ ପ୍ରତି ଅସଦ୍ ବ୍ୟବହାର । ବ୍ଲାଉଜ୍ ଚିରି ଯାଇଛି, ବର୍ତ୍ତୁଳ ସ୍ତନ ଉପରେ ରାମ୍ପୁଡ଼ା ଚିହ୍ନ, ଗାଲରେ ରୋଗୀର ଦାନ୍ତକ୍ଷତ । ଶର୍ମା ସେତେବେଳେ ଯେମିତି କଳା ପୋଷାକରେ ଆଚ୍ଛାଦିତ ଜଣେ ଜଜ୍, ଖୁନ୍ କରିଥିବା ଲୋକକୁ ଫାଶୀଦଣ୍ଡ ଦେବା ତାଙ୍କର ଏକମାତ୍ର କର୍ତ୍ତବ୍ୟ । ରୋଗୀ ପ୍ରତି ଆଉ ଗୋଟେ ଇଲେକ୍ଟ୍ରିକ୍ ସକ୍‌ର ଆଦେଶ ଦେଇ ନିଜ ଭିତରେ ମୃତ୍ୟୁ ଯନ୍ତ୍ରଣା ଅନୁଭବ କରନ୍ତି ଏବଂ ହସ୍ପିଟାଲ୍‌ର ଚଉଡ଼ା

କରିଡ଼ରରେ ଲମ୍ବା ଷ୍ଟେପ୍ ପକାଇ ଚୂରଟ ଟାଣନ୍ତି । ରାତିର ନୀରବତାରେ ରୋଗୀର କରୁଣ ଚିତ୍କାର ଫେଣ୍ଟାଫେଣ୍ଟି ହେଇ ପରିବେଶଟା ଶର୍ମାଙ୍କୁ କେମିତି ଭାରି ଭାରି ମନେହୁଏ ।

'ୟା' ମଧ୍ୟରେ ସନାତନକୁ ଦୁଇଥର ସକ୍ ଦିଆଯାଇଛି । ଅଥଚ୍ ତା'ର କିଛି ପରିବର୍ତ୍ତନ ହେଇନି ଏଯାଏ, ବରଂ ଦିନକୁ ଦିନ ପାଗଳାମୀ ବଢୁଛି ।

ସନାତନ ପାଗଳାମୀର ଇତିହାସ ହୁଏତ ଡ଼ାକ୍ତର ଶର୍ମା ରେକର୍ଡ଼ କରିନାହାନ୍ତି । ସେ କେବଳ ପ୍ରିୟପରିଜନଙ୍କ ଠାରୁ ଶୁଣିଥିବେ ତା'ର ପାଗଳାମୀ ଆକସ୍ମିକ । ତେଣୁ ଚିକିତ୍ସା ପାଇଁ କେସ୍ ଷଡ଼ିର ଆବଶ୍ୟକତା ନଥିବ । କିନ୍ତୁ ଯେଉଁ ଦିନ ସାମାଜିକ ଲୋକମାନେ ସେମାନଙ୍କ ଅନୁମାନ ଠିକ୍ ବୋଲି ଶେଷ ସିଦ୍ଧାନ୍ତରେ ପହଞ୍ଚିଲେ ଏବଂ ପରେ ପରେ ଘୋଷଣା କଲେ ସନାତନର ମସ୍ତିଷ୍କ ବିକୃତି ଘଟିଛି, ସେଦିନ ସନ୍ଧ୍ୟାରେ ଯେଉଁ ଘଟଣା ସବୁ ଘଟିଗଲା ତାହା ତା'ର ମାନସିକ ପ୍ରତିକ୍ରିୟାର କେତୋଟି ସୂଚନା ମାତ୍ର ।

ସେଦିନ ସନ୍ଧ୍ୟାରେ ପରିବାରର ଲୋକମାନେ ହଠାତ୍ ସନାତନର ପଢ଼ାଘରେ ବହିପତ୍ର ଫିଙ୍ଗା ହେବାର ଶବ୍ଦ ଶୁଣିଲେ । ତା'ପରେ ସନାତନ ପାଟିକରି କାନ୍ଦିଲା, ଯେମିତି ଚାହାଳିରେ ଲୀଳାବତୀ ସୂତ୍ର ଘୋଷି ପାରିନଥିବା ଚାଟ ଅବଧାନଙ୍କ ବେତ୍ରାଘାତରେ ଚିତ୍କାର କରେ । ଏମିତି ଏକ ଆକସ୍ମିକ ଶବ୍ଦରେ ଘରର ସମସ୍ତ ସଭ୍ୟ ତଟସ୍ଥ ହୋଇଯାଇଥିଲେ ଏବଂ ଘଟଣା କ'ଣ ଜାଣିବା ପାଇଁ ତା' ପଢ଼ାଘର ନିକଟରେ କାନ ଡ଼େରିଥିଲେ ।

ସନାତନର ପାଟିଶୁଣି ପାଖ ପଡ଼ିଶାରୁ କେତେଜଣ ଭଦ୍ରଲୋକ ଆସି ପରିବାର ଲୋକଙ୍କ ସହିତ ମିଶିଗଲେ । ସମସ୍ତଙ୍କ ମନରେ ଆଶଙ୍କା ।

ସନାତନକୁ ଅନେକ ଡ଼ାକିବା ସତ୍ତ୍ୱେ କବାଟ ଖୋଲିବା ଦୂରର କଥା, କିଛି ଉତ୍ତର ମିଳିଲା ନାହିଁ । କେବଳ ସେ କାନ୍ଦୁଥିଲା ।

ଶେଷରେ ବଳପ୍ରୟୋଗ ପୂର୍ବକ କବାଟ ଖୋଲା ହେବାର ବ୍ୟବସ୍ଥା ହେଲା ଏବଂ ଖୋଲା ହେଲା ମଧ୍ୟ । ସନାତନ ଏକାଥରକେ ଏତେଗୁଡ଼ିଏ ଲୋକ ଦେଖି କେମିତି ସଙ୍କୁଚିତ ହୋଇପଡ଼ିଲା । ମାର୍କେଟ୍ ସାମ୍ନାରେ ଟହଲ ମାରୁଥିବା ସଂଖ୍ୟାଠାରୁ ଏମାନେ ଯେ ଅଧିକ ତାହା ନୁହେଁ, ତେବେ ସନାତନର ଚେତନାରେ ଏମାନେ ଅନ୍ୟ

ଲୋକ । ତେଣୁ ସେମାନଙ୍କଠାରୁ ଆତ୍ମରକ୍ଷାର କୌଣସି ଉପାୟ ନଦେଖି ସନାତନ ଖଟତଳେ ପଶିଗଲା ଏବଂ ଗୋଟାଏ କୋଣରେ ଜାକିଜୁକି ହୋଇ ମାଡ଼ ଭୟରେ କାକୁସ୍ଥ ବୁଢ଼ୀଟିଏ ପରି ନିଜର ଅସହାୟତା ପ୍ରକାଶ କଲା ।

ପରିବାରର ଲୋକଙ୍କୁ ଛାଡ଼ିଦେଲେ ଉପସ୍ଥିତ ସଜ୍ଜନଙ୍କ ପାଇଁ ଏହା ଏକ ଆକର୍ଷଣୀୟ ଦୃଶ୍ୟ । କାରଣ ସନାତନ ଦେହରେ କୌଣସି ରୋଗର ଲକ୍ଷଣ ନାହିଁ । ସେ ବଳିଷ୍ଠ, ସୁସ୍ଥ । ତେଣୁ ଜଣେ ବ୍ୟକ୍ତିର ଅସହାୟତା ଦେଖି ଅନ୍ୟମାନଙ୍କ ପକ୍ଷେ ସହାନୁଭୂତି ପ୍ରକାଶ କରିବାର ଯେଉଁ ମାନସିକ ପ୍ରସ୍ତୁତି ଦରକାର, ସେଇ ମୁହୂର୍ତ୍ତରେ ସନାତନକୁ ଦେଖି ସେମାନଙ୍କର ସେ ଧାରଣା ଆସିପାରିଲା ନାହିଁ । ବରଂ ତାର ଏ ଅବସ୍ଥା ଦେଖି ସେମାନେ କେମିତି କୌତୂହଳ ହେଇ ଉଠିଲେ, ଯଦିଓ ବାହ୍ୟ ଆଚରଣରେ କିଞ୍ଚିତ୍ ଭଦ୍ର ।

ତାପରେ ସନାତନର ବାପା ଅନ୍ୟମାନଙ୍କ ମୁହଁକୁ ଚାହିଁଲେ... କ'ଣ ଆପଣମାନେ ଭାବୁଛନ୍ତି ? ବାଉତି ଲାଗିଛି, ହିଷ୍ଟ୍ରିଆ, ନା ଆଉ କିଛି... ଆଖିରେ ସେମିତି ଉତ୍ତର- ଆମକୁ କ'ଣ ଜଣା, ଆଜିକାଲି ତ ଅନେକ ରୋଗ ।

ଦଳ ଭିତରୁ ଜଣେ ଲୋକ ବାହାରି ଗଲେ ଯାହାଙ୍କର ମୁଣ୍ଡ ପାଲିସ୍ ଚନ୍ଦା । ସେ ଜଣେ ସାମାଜିକ ଲୋକ ।  ଖଟ ପାଖରେ ଲଇଁପଡ଼ି ହାତରେ କଅଁଳ ଘାସରୁ କୋରାଏ ଧରି ପଶୁକୁ ପ୍ରଲୋଭିତ କଲା ସ୍ୱରରେ ଡ଼ାକିଲେ ।

ସନାତନକୁ ଭଦ୍ରଲୋକଙ୍କ କଥା ଏମିତି ଶୁଣାଯାଉଥିଲା- ବାପା ସନାତନ ! ସେଠାରେ ବସନ୍ତି ନାହିଁ, ବାହାରି ଆସ । ଛି, ସୁନାଟା ପରା ଚାଲି ଆସ । ଏଇ ଦେଖୁନା ବାପା ତମ ପାଇଁ କେତେ ବ୍ୟସ୍ତ, କାନ୍ଦି କାନ୍ଦି ମା'ଙ୍କ ଆଖି ଫୁଲିଗଲାଣି । ଭାଇ ଭଉଣୀମାନେ ବୋକା ହେଇ ଗଲେଣି । ଆଉ ଆମାନଙ୍କ କଥା କ'ଣ ଅବା କହିବି... ତମ ଅବସ୍ଥା ଦେଖି ଆମକୁ ବହୁତ ହସ ମାଡୁଥିଲେ ବି ସାମାନ୍ୟ ସୌଜନ୍ୟବୋଧରୁ ଦେଖୁନା ଆମେ କେମିତି ସହାନୁଭୂତି ଦେଖାଉଛୁ । ବାପାଟା ପରା, ଆଉ ଏତେ ଲୋକଙ୍କୁ ହଇରାଣ ନକରି ବାହାରି ଆସ ।

ସନାତନ କାନ୍ଥ ପାଖକୁ ଆହୁରି ଲାଗିଯାଉଥିଲା । ଖଟତଳେ ତାକୁ ଦେଖାଯାଉଛି କେବଳ ଅନ୍ୟମାନଙ୍କର ଗୋଡ଼ ଦୁଇଟି ଲେଖା । ସେମାନଙ୍କ ମଧ୍ୟରୁ କେତେକ ଆଣ୍ଠୁରେ ହାତ ଭରାଦେଇ ଲଇଁ ପଡ଼ିଥିଲେ ମଧ୍ୟ ।

କିଛି ହଟ୍ଟଗୋଳ, ଅନୁରୋଧ ବିଫଳ ହେଲା ସନାତନ ପାଖରେ। ସେ ତଥାପି ସ୍ଥିର।

ଶେଷରେ ଲଇଁ ପଡ଼ିଥିବା ଲୋକମାନଙ୍କ ମଧ୍ୟରୁ ଜଣେ ଖଟତଳେ ପଶିବାକୁ ଆରମ୍ଭ କଲେ। ଆତ୍ମରକ୍ଷାର ଅନ୍ୟ ଉପାୟ ନଥିଲା ସନାତନ ପାଖରେ। ଶେଷଥର ପାଇଁ ସେ ନିଜକୁ ପ୍ରସ୍ତୁତ କରିନେଇ ଥିଲା, ଯଦିବା ମୁକ୍ତିପାଏ।

ସନାତନଠାରୁ ମଣିଷର ଶେଷ ଲକ୍ଷଣ ଟିକକ ଦୂରେଇ ଗଲା। ସେ ଗୋଟିଏ ହିଂସ୍ର ପଶୁ ପରି ବ୍ୟବହାର କରିବାକୁ ଲାଗିଲା। ଲୋକମାନଙ୍କ ଭିତରୁ କେହି ସେତେବେଳେ ସନାତନକୁ ଧରିବାକୁ ଯାଉଥିବା ଭଦ୍ରଲୋକଙ୍କ ଉଦ୍ଦେଶ୍ୟରେ ସତର୍କ ବାଣୀ ଶୁଣାଇଥିଲେ- ସାବଧାନ ଆଜ୍ଞା, କାମୁଡ଼ି ଦେଇପାରେ।

ସନାତନକୁ ଖଟ ଉପରେ ଶୁଆଇ ଦିଆଗଲା ପରେ ଚାରିପଟୁ ସେମାନେ ତାକୁ ଦେଖୁଥିଲେ। ସେ ଚନ୍ଦାମୁଣ୍ଡିଆ ଲୋକଜଣକ ତା ମୁହଁକୁ ଗୋଟିଏ ଲକ୍ଷ୍ୟରେ ଚାହିଁଥିଲେ।... ମେଞ୍ଚଡ଼ ଟୋକା ଖଣ୍ଡେ, ତୋର ପୁଣି ଏତେ ଦିମାକ୍! ଦେଖୁଚୁ, ଦେଖୁଚୁ ଏ ମୁଣ୍ଡକୁ, ଉପରେ ଯେମିତି ପାଲିସ୍ ଭିତରେ ସେମିତି ବନ୍ଧୁର। ବାନ୍ଧିହେଇ ଚଳିବା ପାଇଁ ଏ ମୁଣ୍ଡ ଆଇନ୍ କରିଛି। ସେ ନିୟମକୁ ତମ ଚଉଦ ପୁରୁଷ ମାନି ଆସିଛନ୍ତି, ତମେ ବି ମାନିବ... ଏହା ସତ୍ୟ।

ନାଁ... ଆଁ, ସନାତନ ଚିତ୍କାର କଲା। ତାପରେ ହାତ ମୁଠା ମୁଠା କରି ଥରିବାକୁ ଲାଗିଲା।

ସନାତନର ବାପା ସାମାଜିକ ଲୋକମାନଙ୍କୁ ଚାହିଁଲେ; ସେମାନେ ମତବ୍ୟକ୍ତ କଲେ- ତା'ର ମସ୍ତିଷ୍କ ବିକୃତି ଘଟିଛି। କୌଣସି ମାନସିକ ଚିକିତ୍ସାଳୟରେ କିଛିଦିନ ରହିଲେ ସେ ହୁଏତ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇପାରେ, ଯେହେତୁ ରୋଗ ବେଶି ଦିନର ନୁହେଁ। ତାପରେ କିଛି ଶାନ୍ତ୍ୱନା ଓ ସମବେଦନା ଜଣାଇ ସେମାନେ ବିଦାୟ ନେଲେ। ପରଦିନ ସକାଳେ ସନାତନକୁ ଡ଼ାକ୍ତର ଶର୍ମାଙ୍କ ଚିକିତ୍ସାଳୟକୁ ସ୍ଥାନାନ୍ତରିତ କରାଗଲା।

ସନାତନ ବେଳେବେଳେ ପ୍ରଳାପ କରେ, ତା' ସାମ୍ନାକୁ ଯେଉଁମାନେ ଆସୁଛନ୍ତି ପ୍ରତ୍ୟେକଙ୍କ ହାତରେ ଗୋଟେ ଲେଖା ଧାରୁଆ ଛୁରୀ। ସେମାନେ ତା' ନିକଟରେ ଠିଆ ହୋଇ ଛୁରୀକୁ ଧାର କରୁଛନ୍ତି। ତାକୁ ହତ୍ୟା କରିବା ପାଇଁ ଚାରିଆଡ଼େ ଏକ ବ୍ୟାପକ ଷଡ଼ଯନ୍ତ୍ର କୁଆଡ଼େ।

ଅନ୍ୟ କେତେବେଳେ ସେ ତା ଡ଼ାଏରୀର ପୃଷ୍ଠା ଓଲଟାଏ ।

ଶର୍ମା ଦେଖନ୍ତି ତାଙ୍କ ଚିକିତ୍ସାଳୟରେ ଅଧିକାଂଶ ରୋଗୀ ଯୁବକ । ସେମାନେ ଯେମିତି ଗୋଟିଏ ମିଳିତ ସ୍ୱରର ଖଣ୍ଡିତ ଲହରୀ । ତାଙ୍କୁ ଚିକିତ୍ସା କରିବାକୁ ହେଲେ ସମସ୍ତ ସ୍ୱରକୁ ଚିହ୍ନିବା ପାଇଁ ପଡ଼ିବ । ସେଥିପାଇଁ ଅନେକ ସମୟରେ ସେ ଚିନ୍ତିତ ହୋଇପଡ଼ନ୍ତି ।

ସନାତନର ଆବିର୍ଭାବ ଶର୍ମାଙ୍କ ପାଇଁ ଗୋଟେ ନୂଆ ସମସ୍ୟା । ସେ ଯେତେ ଚେଷ୍ଟା କଲେ ବି କୌଣସି ଏକ ମୂଳରେ ପହଞ୍ଚି ପାରୁ ନାହାନ୍ତି । କରିଡ଼ରରେ ଟହଲ ମାରୁ ମାରୁ ଶର୍ମା ସନାତନର ରୁମ୍ ପାଖରେ ଠିଆ ହୋଇଗଲେ । ଦେଖିଲେ ସନାତନ ଶୋଇ ଯାଇଛି ଏବଂ ତା ଡ଼ାଏରୀ ବିଛଣା କଡ଼ରେ ଖୋଲା ହେଇପଡ଼ିଛି ।

ପ୍ରଥମ ପୃଷ୍ଠାଟି ଦେଖି ସାରିଲା ପରେ ଶର୍ମାଙ୍କର ମନେ ହେଲା ସେ ଯେମିତି କ୍ରମେ ସନାତନର ପରିବର୍ତ୍ତନ, ମାନସିକ ପ୍ରତିକ୍ରିୟାକୁ ଆବିଷ୍କାର କରିବାକୁ ଯାଉଛନ୍ତି ଓ ତାକୁ ନୂଆ କରି ଚିକିତ୍ସା କରିବାର ଏକ ସହଜ ସୂତ୍ର ପାଇଯିବେ । ସେ ଉତ୍ସାହିତ ହେଲେ ଓ ପାଟିକରି ଶ୍ରୀଲତା ଦାସଙ୍କୁ ଡ଼ାକିଲେ ।

ଶ୍ରୀଲତା ଦାସ ଟେବୁଲ୍‌ରେ ଝୁଙ୍କି ପଡ଼ିଥିଲାବେଳେ ଡ଼ାକ୍ତର ଶର୍ମା ଡ଼ାଏରୀର ପୃଷ୍ଠା ଓଲଟାଉ ଥିଲେ:

"ଜୀବନର କିଛି ବିଶିଷ୍ଟ ଘଟଣା ଡ଼ାଏରୀରେ ରେକର୍ଡ଼ିଂ କରିବାର ଆଗ୍ରହ ମୋର ନାହିଁ । କାରଣ ଗୋଟେ ପାରମ୍ପରିକ ଜୀବନର କଣଟା ବା ନୂତନତା ଅଛି । ସେଇ ଖାଇବା, ଶୋଇବା- ଯୌବନରେ ଗୋଟେ ବିବାହ ଏବଂ କିଛି ପିଲାଛୁଆ... । ତାପରେ କିଛିଦିନ ସାଂସାରୀକ ଜୀବନ, ପୁଣି ହିପୋକ୍ରେସି... ଗୀତା, ଭାଗବତ, କୋରାନ୍, ବାଇବେଲ୍... ଅନେକ ଜୀବନ ପରି ଗୋଟିଏ ସମ୍ପୂର୍ଣ୍ଣ ଜୀବନ । ତେଣୁ ଏପରି ଏକ ନିୟମବନ୍ଧା ଇତିହାସର ଆବଶ୍ୟକତା କ'ଣ !

କିନ୍ତୁ ହଠାତ୍ ଦିନେ ମୁଁ ଦେଖିଲି ମୋ ପିଲାଦିନ ଗୁଡ଼ା ଅବୈଧ ସନ୍ତାନ ପରି ପରିଚୟହୀନ । ହାତରେ ଗଢ଼ିଥିବା ବାଲିଘରକୁ କେତେଜଣ ସାମାଜିକ ଲୋକ ସେମାନଙ୍କ ଜୋତା ଟୋ'ରେ କିକ୍ ମାରି ସମାନ କରି ଦେଇଛନ୍ତି ଏବଂ ମୁଁ ହେଇଯାଇଛି ଏକ ବ୍ୟକ୍ତି ସ୍ୱତନ୍ତ୍ର ପୃଥିବୀର । ଗାଁ ଲୋକଙ୍କର ପାଣିପବନ ମୋତେ ମନା, ଗାଁଦାଣ୍ଡର ସରକାରୀ ରାସ୍ତାରେ ଚାଲିବାକୁ ହେଲେ ମୋ ପାଇଁ ଅନେକ କଟକଣା ।

ମୁଁ ନିଜକୁ ବିଶ୍ଲେଷଣ କରେ: ସତରେ କ'ଣ ମୋର କିଛି ପରିବର୍ତ୍ତନ ହେଇଛି। କିଛି ପାଏନା, ଅଥଚ ମୋ ପ୍ରତି ଏକ ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀ। ପ୍ରଥମେ ପ୍ରଥମେ ବେଶ କୌତୂହଳପୂର୍ଣ୍ଣ। ମୁଁ ଡ଼ାଏରୀ ଲେଖିବାକୁ ଠିକ୍ କଲି କିଛି ବିଶେଷ ଘଟଣା ରେକର୍ଡ଼ିଂ କରିବାକୁ ନୁହେଁ, ଏହିପରି ଏକ ବ୍ୟତିକ୍ରମକୁ ଲକ୍ଷ୍ୟ କରିବା ପାଇଁ।

(ଡ଼ାଏରୀର ଆଉ ଏକ ଅଂଶ)

"ଆଜି ଘରକୁ ଫେରି ଶୁଣିଲି ବାପା ମୋ ଉପରେ ଭୀଷଣ ରାଗିଛନ୍ତି ଏବଂ ପରିବାରର ଅନ୍ୟାନ୍ୟ ସଭ୍ୟମାନେ ଏକ ବିରୋଧୀ ଗୋଷ୍ଠୀର ଲୋକ ପରି ମୋତେ ବ୍ୟବହାର କରୁଛନ୍ତି। ବାପାଙ୍କର ରାଗିବା କାରଣ ହେଲା, ମୁଁ କୁଆଡ଼େ ଆଜି ବୁଲି ବାହାରିଲାବେଳେ ଆମ ପଡ଼ୋଶୀ ରମାନାଥ ବାବୁଙ୍କ ଝିଅକୁ (ଯେଉଁ ଝିଅଟି ତା ବାପାଙ୍କ ବନ୍ଧୁ ସହିତ ଅବୈଧ ପ୍ରେମରେ ଲିପ୍ତ ରହି ଗୋଟିଏ ପାପଗର୍ଭ ନଷ୍ଟ କରିଛି ବୋଲି ଜନରବ) ଆଖି ମାରିଲି ବୋଲି ନିଜେ ରମାନାଥ ବାବୁ ବାପାଙ୍କ ପାଖରେ ଅଭିଯୋଗ କରିଛନ୍ତି। ବୋଉ ପୁଣି କହିଲା: ମୁଁ ଛାତ୍ର ଆନ୍ଦୋଳନରେ ଭାଗ ନେଉଛି ବୋଲି ବାପାଙ୍କ ସରକାରୀ ଚାକିରିରେ ଆଞ୍ଚ ଆସୁଛି। ଏହାବ୍ୟତୀତ ଆହୁରି କେତେକ ଅଭିଯୋଗ, ଯେମିତି ମୁଁ କେବଳ 'ଏଡ଼ଲ୍‌ଟସ୍ ଓନ୍‌ଲି' ସିନେମା ଦେଖୁଛି, ରାସ୍ତାରେ ବଜାରିଗିରୀ କରୁଛି ଏବଂ ଆମର ଅନ୍ୟ ଏକ ପଡ଼ୋଶୀ ପ୍ରାଣକୃଷ୍ଣ ବାବୁ (ଯେ ଅତ୍ୟଧିକ ମଦ୍ୟପାନ କରନ୍ତି ଏବଂ ପର ସ୍ତ୍ରୀକୁ ନିଜର ମନେ କରନ୍ତି)ଙ୍କୁ ଦେଖିଲେ ହୁଇସିଲ୍ ମାରୁଛି ଇତ୍ୟାଦି। ଏଭଳି କେତେକ ଅଭିଯୋଗ ସହିତ ବୋଉ ମାଧ୍ୟମରେ ସେ ମୋତେ ସତର୍କ କରିଛନ୍ତି, ମୋର ଚରିତ୍ର ଗଠନ ଏକାନ୍ତ ଆବଶ୍ୟକ। ମୋ ପଛରେ ଗୁଡ଼ାଏ ଟଙ୍କା ସେ ବେକାର ଇନ୍‌ଭେଷ୍ଟ କରୁନାହାନ୍ତି। ତାଙ୍କର ଅନ୍ୟ ପିଲା ଅଛନ୍ତି, ଅନେକ ଦାୟିତ୍ୱ ମଧ୍ୟ।

ବୋଉ ଏତକ କହିଦେଇ ଚାଲିଗଲା, କିନ୍ତୁ ତା'ର କଥାଗୁଡ଼ାକ ମୋତେ ନୂଆ ନୂଆ ଲାଗିଲା। କ'ଣ ଗୋଟେ ଘଟୁଛି ନିଶ୍ଚୟ।

ଆଜି ମୋର ଗୋଟେ କଥା ମନେ ପଡୁଛି- ଯେଉଁଦିନ ମୁଁ ଅନୁଭବ କଲି ମୋର ଅତୀତ ଏକ ଅବୈଧ ସନ୍ତାନ ପରି ସୁଅରେ ଭାସିଗଲା, ଆଉ ମୋ ହାତଗଢ଼ା ବାଲିଘର ଅନ୍ୟମାନଙ୍କ ଜୋତା ଟୋ'ରେ ସମାନ ହୋଇଗଲା, ସେଇ ଦିନ ରାତିରେ ବାପା ବୋଉ ହାତରେ ଗୋଟିଏ କବଚ ଦେଇଥିଲେ ମୋ ବାହୁରେ ବାନ୍ଧିଦେବାକୁ।

ଏଇ ମଣିଷ ସମାଜକୁ ଗଢ଼ିଥିବା ଜଣେ ସାଧୁ କୁଆଡ଼େ ସେଇ କବଚରୁ ଗୋଟେ ଲେଖା ପ୍ରତ୍ୟେକ ବାପାଙ୍କ ହାତରେ ଦେଇ, ଈଶ୍ୱରଙ୍କ ରାଣ ଦେଇଥିଲେ ସେମାନଙ୍କ ପୁଅମାନଙ୍କ ହାତରେ ବାନ୍ଧିଦେବାକୁ । ମୁଁ କିନ୍ତୁ ସେଟାକୁ ପିନ୍ଧିବା ପାଇଁ ଅମଙ୍ଗ ଅନ୍ୟମାନେ ଦେଖିପାରିବେ, ମୋର ହୃଦୟର କଥା ଅନ୍ୟମାନେ ଶୁଣିପାରିବେ । ତେଣୁ କବଚ ମୋର ଦରକାର ନାହିଁ ।

ମୁଁ ଲକ୍ଷ୍ୟ କଲି ବୋଉ କେମିତି ମୁହଁଟାକୁ ଭାରି ଭାରି କଲା, ଆଉ ବାପା ସେଇ ଦିନଠୁଁ ମୋତେ ସନ୍ଦେହ କରିବାକୁ ଲାଗିଲେ ।

□□□ □□□ □□□

ବେଳେବେଳେ ମୁଁ କିଛି ବୁଝିପାରେନା, ମୋତେ କେହି ବୁଝିବାକୁ ଚେଷ୍ଟା କରୁନି କାହିଁକି ? ଅଥଚ ଅନ୍ୟମାନଙ୍କ ପ୍ରତି ମୋର ତ କିଛି ବିଦ୍ୱେଷ ନାହିଁ, ବରଂ ଅନ୍ୟକୁ ଶ୍ରଦ୍ଧା କରିବାକୁ ଚେଷ୍ଟା କରେ । ବିଲେଇ ପରି ସେମାନଙ୍କ ଦେହରେ ଘସିହେବାକୁ ଇଚ୍ଛା କରେ । କିନ୍ତୁ ସେମାନେ ମୋଠାରୁ ଏକ ନିରାପଦ ଦୂରତ୍ୱରେ ରହି ମୋତେ ଘୃଣା କରୁଛନ୍ତି । ମୁଁ କୁଆଡ଼େ ଜଣେ ଅସାମାଜିକ ଲୋକ ଯେ, ସାମାଜିକତାର ଖୋଳକୁ ଲୋକ ଗଳ୍ପର କୌଣସି ରାଜକୁମାରୀ ପରି ନିଆଁ ଲଗେଇ ଜାଳିଦିଏ ।

ବେଳେବେଳେ ମୋର ଇଚ୍ଛା ହୁଏ ମୁଁ ବଡ଼ ପାଟି କରି କହିବି- ମୁଁ ଯାହା କହୁଛି ସତ କହୁଛି, ଯାହା କରୁଛି ଠିକ୍ କରୁଛି । ମୋତେ ବିଶ୍ୱାସ କର, ଛଳନାକୁ ମୁଁ ଘୃଣା କରେ ।

ସେମାନେ କିନ୍ତୁ ମୋର କୌଣସି କଥାକୁ ଗ୍ରହଣ କରନ୍ତି ନାହିଁ ।

ଆଜିକାଲି ଗୋଟେ ଅସ୍ୱାଭାବିକ ପରିବେଶରେ ବଢ଼ିଲା ପରି ମୋର ମନେ ହେଉଛି... ମୋର ସନ୍ଦେହ ହୁଏ, ମୁଁ ଯଦି ପାଗଳ ହୋଇଯାଏ, ଯଦି ମୁଁ ପାଗଳ ହୋଇଯାଏ, ପାଗଳ ହୋଇଯାଏ ଯଦି ମୁଁ...!!! ଚାରିଆଡ଼େ ସେଇ ଗୋଟିଏ କଥା, ପ୍ରତିଧ୍ୱନୀ... ।

ମୁଁ ରାତିରେ ଶୋଇ ପାରିଲି ନାହିଁ ।

ଡ଼ାକ୍ତର ଶର୍ମାଙ୍କ କପାଳର ରେଖାଗୁଡ଼ିକ କୁଞ୍ଚିତ ହେଇ ଯାଇଥିଲା । ଶ୍ରୀଲତା ଦାସ ଡ଼ାଏରୀର ପରବର୍ତ୍ତୀ ପୃଷ୍ଠାକୁ ଅପେକ୍ଷା କରୁଥିଲାବେଳେ ଜଣେ ନର୍ସ ରିପୋର୍ଟ

କଲା ସନାତନ ତା ବିଛଣାରେ ନାହିଁ ।

ସେଇ ମୁହୂର୍ତ୍ତରେ ସମ୍ବାଦଟା ଶର୍ମାଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା । କୌଣସି ଆଶୁ ବିପଦର ଆଶଙ୍କାରେ ସାଇରନ୍ ଚିତ୍କାର କଲାପରି ଡ଼ାକ୍ତର ଶର୍ମା ଚିକିତ୍ସାଳୟର ସମସ୍ତ କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଲେ ସନାତନର ସନ୍ଧାନ କରିବାକୁ । ତାପରେ ଦ୍ରୁତ ପଦକ୍ଷେପରେ ଚିକିତ୍ସାଳୟର ସାମ୍ନା ଲନ୍‌କୁ ଯାଇ ସେ ଅନ୍ଧକାରରେ ଯେମିତି ସନାତନର ଗତିବିଧି ଲକ୍ଷ୍ୟ କରୁଥିଲେ ।

ଜଣେ ପରେ ଜଣେ କର୍ମଚାରୀ ଆସି ଖବର ଦେଲେ ସନାତନର କିଛି ସନ୍ଧାନ ମିଳୁନି । ଶର୍ମା ଚିକିତ୍ସାଳୟର ଶେଷ କର୍ମଚାରୀ ଜଣକର ସମ୍ବାଦକୁ ଅପେକ୍ଷା କଲେ । କିଛି ଫଳ ହେଲାନି କିନ୍ତୁ । ସନାତନ ସେତେବେଳକୁ ହୁଏତ ଅନେକ ଦୂର ଚାଲିଯାଇଥିବ ।

ପରଦିନ ସକାଳେ ଅବଶ୍ୟ ଡ଼ାକ୍ତର ଶର୍ମାଙ୍କ ଚିକିତ୍ସାଳୟ ଚିରାଚରିତ ପ୍ରଥାରେ ମୁଖରୀତ ହେଲା, କିନ୍ତୁ ଜଣକର ଅନୁପସ୍ଥିତି ସମସ୍ତେ ଅନୁଭବ କଲେ । ସେ ହେଲେ ଡ଼ାକ୍ତର ଶର୍ମା ନିଜେ । ତାଙ୍କ ଅଫିସ୍ କକ୍ଷରେ ଖଣ୍ଡିଏ ଅର୍ଜେଣ୍ଟ ସ୍ଲିପ୍‌ରେ ଦି'ଧାଡ଼ି ଲେଖିଦେଇ ଯାଇଥିଲେ ଯାହା ଥିଲା ଶର୍ମାଙ୍କର ଶ୍ରୀଲତା ଦାସ ପ୍ରତି ଶେଷ ଅନୁରୋଧ ।

"ଗୋଟିଏ କଳଙ୍କିତ ଚରିତ୍ର ନେଇ ଏପରି ପବିତ୍ର ଅନୁଷ୍ଠାନକୁ ପରିଚାଳନା କରିବାର ଅଧିକାର ମୋର ନାହିଁ । ଆଜିଠାରୁ ତମେ ଯା'ର ପରିଚାଳିକା । ଇଲେକ୍ଟ୍ରିକ୍ ସକ୍‌ରେ ବିଚରାମାନଙ୍କୁ ଅଧିକ ଆତଙ୍କିତ ନକରି, ପାରିଲେ ହୃଦୟ ଦେଇ ସେମାନଙ୍କର ମନ ପରିବର୍ତ୍ତନ କର ।"



# ବିବର୍ଣ୍ଣ ବସନ୍ତ

... ଘରର ଅନ୍ୟାନ୍ୟ ଆଲୁଅ ସବୁ ନିଭି ଗଲାଣି, କେବଳ ଟେବୁଲ୍ ଲ୍ୟାମ୍ପଟା ମଣିଷର ହତାଶା ଭିତରେ କ୍ଷୀଣ ଆଶା ପରି ଜଳି ରହିଛି... । ଦୁଧ ଗ୍ଲାସ୍ ଉପରେ ତାଜମହଲ ଛାପଥିବା ଟିଣ ଢ଼ାଙ୍କୁଣୀ... ଗୋଟେ ଗ୍ଲାସ୍ ଦୁଧ... ଭବନ୍ସ ଜର୍ନାଲ୍‌ରୁ ଗୋଟେ ଯୋଡ଼ା ପୃଷ୍ଠା... ତାପରେ ସାମାନ୍ୟ ବିଶ୍ରାମ କର୍ମକ୍ଲାନ୍ତ ଜୀବନରେ ଟିକେ ଆରାମ୍ ପାଇଁ ।

ବାରିପଦାରୁ ସୁନୀତା ଆଜି ଖଣ୍ଡେ ଚିଠି ଲେଖିଛି । ଜଗମୋହନଟା ଅକାଳରେ ମରିଗଲା । ସମସ୍ତେ ତ ମରିବେ, କିଏ ଆଗରେ, କିଏ ବା ପଛରେ । ସମସ୍ତ ପ୍ରକାର ଭୁଲ୍ ଠିକ୍ ଭିତରେ ଏଟା ଗୋଟେ ମହାସତ୍ୟ । ତେବେ ଏକ ବିରାଟ ସଂସାରର ଜୀବନଗୁଡ଼ାକ ବିଶୃଙ୍ଖଳିତ ଥିବା ଅବସ୍ଥାରେ ଜଗମୋହନର ମୃତ୍ୟୁ ସେ ପରିବାର ପ୍ରତି ଏକ ଅଭିଶାପ ।

ସୁନୀତା ଏଥର ଇକୋନମିକ୍ସରେ ଏମ୍‌ଏ ପାସ୍ କଲା । ଏ ଯାଏ କିଛି ଚାକିରି ପାଇନି । ତା ତଳକୁ ଆହୁରି ଚାରି ପାଞ୍ଚ ଭଉଣୀ, ଭାଇଟା ନିହାତି ଛୋଟ । ପରିବାରର ପୁରା ଦାୟିତ୍ୱ ତା'ରି ଉପରେ କହିଲେ ଚଳେ ।

ସୁନୀତା ଅନୁରୋଧ ଜଣାଇଛି ବାରିପଦା ଯିବାକୁ । ଜଗମୋହନ ମୃତ୍ୟୁ ପରେ ସେମାନେ ସବୁ ଅସହାୟ, ଯିବାଟା ନିହାତି ଆବଶ୍ୟକ, ନ ହେଲେ କର୍ତ୍ତବ୍ୟରେ

ଅବହେଳା ।

ନଳୀନାକ୍ଷ ବାବୁ ଟେବୁଲ ଲ୍ୟାମ୍ପର ସ୍ୱିଚ୍ ପାଖକୁ ହାତ ବଢ଼ାଉ ବଢ଼ାଉ ଦୁଧ ଗ୍ଲାସ୍‌ଟା ଉପରେ ଆଖି ପଡ଼ିଛି... ସଂଜୟର ମା' ସେଦିନର କାମ ସାରି କେତେବେଳୁ ଶୋଇଗଲେଣି । ତାଙ୍କୁ ଦୁଧ ଗ୍ଲାସ୍‌ଟା ପିଇବାକୁ ପଡ଼ିବ, ଏଟା ଗୋଟେ ଫର୍ମୁଲା... ଅଫିସ୍ ଭିତରେ ଥାକ ଥାକ ଫାଇଲ୍‌ରେ 'ଏକ୍ ପ୍ରପୋଜଡ୍' ବା 'ଏପ୍ରଭଡ୍' ଲେଖି ସିଗ୍ନେଚର ଦେବା ମଧ୍ୟ ଗୋଟେ ଫର୍ମୁଲା । ସଂଜୟ ମା ବୁଢୀ ହୋଇଗଲେଣି । ୧୯୪୩ର ବିବାହ ଫଟୋଟା କାନ୍ଥରେ ଝୁଲୁଛି । ସେତେବେଳେ ସେ ସଂଜୟର ମା' ନୁହଁନ୍ତି, ସୁଲେଖା... ତେୟାଳିଶରୁ ଅଢ଼ଷଠି, ଦୀର୍ଘ ପଚିଶବର୍ଷର ଧାରାବାହିକ ଜୀବନଯାତ୍ରା... ତା ଭିତରେ ସଂଜୟ, ଗୀତା, ପ୍ରଶାନ୍ତଙ୍କ ପରି କେତେକ ନୂତନ ଆଗନ୍ତୁକ । ସେମାନେ ସବୁ ନଳୀନାକ୍ଷଙ୍କ ରୋମାନ୍ସର ଫଳ, ଅଥଚ ନୂତନର ପ୍ରତିବନ୍ଧକ । ତା ପାଖକୁ ଲାଗି ଏବେକାର ଆଉ ଗୋଟିଏ ଫଟୋ । ସଂଜୟ ମା'ଟା ନିହାତି ଗୋଟେ ଆଇ ମା' ପରି ବୁଢ଼ୀ ହୋଇଗଲାଣି । କିନ୍ତୁ ସେ ଯେମିତି ସଂଜୟ ମା'ର ଗୋଟେ ଯୁବକ ନାତି । ସ୍ତ୍ରୀ ଲୋକଗୁଡ଼ାକ ଗୋଟେ ଯୋଡ଼େ ପିଲାର ମା' ହେଲା ପରେ ସାଧାରଣତଃ ବୁଢ଼ୀ ହୋଇଯାଆନ୍ତି... ପିଲା ଛୁଆ ତ ଦୂରର କଥା, ଏଇମାତ୍ର ଗୋଟେ ମୁହୂର୍ତ୍ତର କଥା... ଠିକ୍ ବିହାହ ପରେ ନିହାତି ସରଳ ସୁନ୍ଦର ଝିଅଟେ ଯେମିତି ବୟସରେ କିଛି ଆଗେଇଯାଇଛି ପରି ମନେହୁଏ । ବୟସ ତା'ର ନିର୍ଦ୍ଦିଷ୍ଟ ମାପରେ, ଅଥଚ ବହୁତ କିଛି ପରିବର୍ତ୍ତନ ।

ନଳୀନାକ୍ଷ ଦୁଧ ଗ୍ଲାସ୍‌ଟା ଢ଼କ୍ ଢ଼କ୍ କରି ପିଇଗଲେ, ସେଟା ଗୋଟିଏ କର୍ତ୍ତବ୍ୟ । ସଂଜୟର ମା' ଶୋଇଗଲେଣି, ଆରପଟ ରୁମ୍‌ରୁ ଜୋର ଶବ୍ଦ ହେଉଛି । ହୋପ୍‌ଲେସ୍ ସ୍ତ୍ରୀ ଲୋକଟା... ପାଖରେ ରହି ଦୁଧଗ୍ଲାସ୍‌ଟା ପିଇବା ପାଇଁ ଅନୁରୋଧ ଜଣାଇବା ବୋଧେ ତା କାତକରେ ନାହିଁ । ନିଶ୍ଚିତ ଭାବେ ବୟସ ଖସି ଯାଇଛି... ତା ମାନେ ନୁହେଁ ସ୍ତ୍ରୀ ପୁରୁଷର ସମ୍ପର୍କଟା ମରିଯାଇଛି । ସେ ଗ୍ଲାସ୍‌ଟା ଜୋର କରି ଫିଙ୍ଗି ଦେଲେ । କାଚ ଗ୍ଲାସ୍‌ଟା ସ୍ୱାଭାବିକ ଶବ୍ଦ କରି ଭାଙ୍ଗିଗଲା । ନଳୀନାକ୍ଷ ଚମକିଗଲେ, ଗୋଟିଏ ଦୀର୍ଘ ନିଶ୍ୱାସ ।

ଆଜି ମାର୍କେଟ୍‌ରୁ ଫେରିଲାବେଳେ ଗୋଟେ ଦୃଶ୍ୟରେ ଖୁବ୍ ଖୁସି ହୋଇଥିଲେ ସେ । ପଞ୍ଜାବୀ ଭଦ୍ରମହିଳା ଜଣେ, ବୟସ ପ୍ରାୟ ପଇଁଚାଳିଶ । ସେ ବୋଧହୁଏ କୌଣସି ବନ୍ଧୁଙ୍କର ଝିଅ ବା ପୁଅ ବାହାଘରକୁ ଯାଉଥିଲେ । ହାତରେ ଦାମୀ ପ୍ରେଜେଣ୍ଟେସନ୍

ପ୍ୟାକେଟ୍ । ପୋଷାକପତ୍ର ତାଙ୍କର ବୟସର ଗୁରୁତ୍ୱ କମାଇ ଦେଇଥିଲା । ପାତଳା ସ୍ଲିଭ୍‌ଲେସ୍ ତଳୁ ବ୍ରେସିୟରଟା ଫୁଟି ଦିଶୁଥିଲା । ବକ୍ଷ ଷୋଳସତର ବର୍ଷ ପରି ସ୍ଫୀତ । କସ୍‌ମେଟିକ୍‌ର ଛାପ ସୁସ୍ପଷ୍ଟ... ଓଠଟା ଆଶ୍ଚର୍ଯ୍ୟ ଭାବେ ଗୋଲାପୀ । ଶାଢ଼ୀର ତିଭୁଜଗୁଡ଼ିକ ଗଣିଲା ପରି । ଚାଲିବା ଖୁବ୍ କ୍ଲାସିକାଲ୍, ଧଳା ରୁମାଲ୍‌ରେ ଧୀର ଛାପ ଦେଉଥିଲେ ମୁହଁ ଉପରେ । ନଳୀନାକ୍ଷ ଖୁବ୍ ଖୁସିହେଲେ, ଏ ବୟସରେ ଦେହ ପ୍ରତି ତାଙ୍କର ଯତ୍ନ ଦେଖି । ସେ ନିଶ୍ଚୟ ଜୀବନର ଗୁରୁତ୍ୱ ବୁଝିଛନ୍ତି । ନଳୀନାକ୍ଷ କେପଷ୍ଟେନ୍‌ରେ ନିଆଁ ଧରାଇଲେ । ସାର୍ଲକ୍‌ସ ହୋମ୍ସ ସିରିଜ୍‌ରୁ ଖଣ୍ଡେ ହାତରେ ଥିଲା... ତାକୁ ବି ଟିକେ ସଜାଇ ଧରିନେଲେ... ଏଇ ସେ ଭଦ୍ରମହିଳା ଜଣକ ମାଡ଼ି ଆସୁଛନ୍ତି । ଆରେ ଧକ୍କା ହୋଇଯିବ ନା କ'ଣ ! ସେ ଖୁବ୍ ଅନ୍ୟମନସ୍କ । ଆସନ୍ନ ଧକ୍କାରୁ ନିଜକୁ ସମ୍ଭାଳି ନେଇ ଭଦ୍ରମହିଳା ଜଣକ୍ ବିଦେଶୀ ଭାଷାରେ 'ଦୁଃଖିତ' ବୋଲି କହିଲେ, ମୁହଁରେ ହସ ଥିଲା । ସମତାଳରେ ନଳୀନାକ୍ଷ ବି 'କିଛି ନାହିଁ' ବୋଲି କହିଲେ । ଭଦ୍ରମହିଳା ଆଗକୁ ମାଡ଼ି ଚାଲୁଥିଲେ । ସଞ୍ଜୟର ମା'କୁ ବହୁତ ଅନୁରୋଧ କଲେ ବ୍ରେସିୟର ତ ଦୂରର କଥା ବ୍ଲାଉଜ୍ ଖଣ୍ଡକୁ ଖୁବ୍ କଷ୍ଟରେ ପିନ୍ଧିବେ । ସେଥିରେ ବି ତଳପଟର ବୋତାମଗୁଡ଼ାକ ପୁରା ଦିଆଯାଏ ନା । କ୍ରମାଗତ ଚାରୋଟି ପିଲାଙ୍କର ଆକ୍ରମଣ ଫଳରେ ସ୍ତନ ଦୁଇଟି ଦୋଳିତ... ଓଃ ଗୋଟେ ଅସହ୍ୟ ଦୃଶ୍ୟ... ହୋପ୍‌ଲେସ୍... ! ! !

ସେଇ ସଂଜୟର ମା ଏତେ ରାତିରେ ଶୋଇ ପଡ଼ନ୍ତେନି ଆଉ କ'ଣ ବାତ୍ସାୟନଙ୍କ କାମଶାସ୍ତ୍ରର ଚଉଷଠୀ ଚିତ୍ର ଦେଖୁ ଦେଖୁ ବିଛଣା ଉପରେ ପେଟେଇ ପଡ଼ି ନଳୀନାକ୍ଷଙ୍କ ଦୃଷ୍ଟି ଆକର୍ଷଣ କରନ୍ତେ ।

ଲେଡ଼ି ଷ୍ଟେନୋଗ୍ରାଫର ମିସ୍ ରୋଜି... ବୟସ ନିଶ୍ଚୟ ଅଠର, କୋଡ଼ିଏ ଭିତରେ ସୀମାବଦ୍ଧ । ଆଖି ଦୁଇଟି ତାର ଗୋଟେ ଦୁଷ୍ଟ ପିଲା ପରି ବଦମାସ୍ । ନଳୀନାକ୍ଷ ଅଫିସ୍ ଆୱାର ଭିତରେ ଏଣୁତେଣୁ କାମ ଭିତରେ ବୁଡ଼ି ରହନ୍ତି । ଠିକ୍ ସାଢ଼େ ଚାରିଟା ପରେ ଡ଼ିକ୍ଟେସନ ପାଇଁ ରୋଜିର ଆବଶ୍ୟକତା ଅନୁଭବ କରନ୍ତି । ସେ ବିଚାରୀ ବ୍ୟସ୍ତ ହୁଏ । ସାଢ଼େ ପାଞ୍ଚଟାରେ ପ୍ରୋଗ୍ରାମ୍ ହୁଏତ ମାଟି ହୋଇଯାଇପାରେ । କାରଣ ଏଜିର ଯୁବକ ସିନିଅର ଆସିଷ୍ଟାଣ୍ଟ, ଯେ କି ତାକୁ ବିବାହ ପାଇଁ ବାରମ୍ବାର ପ୍ରତିଶ୍ରୁତି ଦେଇଛି, ଭୁଲ ବୁଝିପାରେ । ରୋଜି କିନ୍ତୁ କିଛି କହିପାରେନା । ଡ଼ିକ୍ଟେସନ୍ ନେବାଟା ତା'ର ଧର୍ମ । ନଳୀନାକ୍ଷ ଏଣୁତେଣୁ ମେଞ୍ଚେ ଭାବିଯାନ୍ତି ।... ଅଫିସ୍ ଫାଙ୍କା, ଆକାଶରେ ଇନ୍ଦ୍ରଧନୁ ପଡ଼େ । ସେ ରୋଜିର ବ୍ୟକ୍ତିଗତ ଜୀବନକୁ ବିଶ୍ଳେଷଣ କରନ୍ତି । ରୋଜିର ଘର ଦକ୍ଷିଣରେ ।

ଘରେ ତା'ର ନଳୀନାକ୍ଷଙ୍କ ବୟସର ବାପା, କିନ୍ତୁ ଅକର୍ମଣ୍ୟ... ନଳୀନାକ୍ଷଙ୍କ ମନରେ ଧକ୍କା ଲାଗେ... ରୋଜିର ବାପା ତାଙ୍କ ବୟସର, ରୋଜି କିନ୍ତୁ ଖୁବ୍ ସୁନ୍ଦରୀ । ସେ ବସନ୍ତ ଋତୁକୁ ଭଲପାଏ, ବୈଶାଖରେ ନୁହେଁ, ଫାଲଗୁନରେ । ନଳୀନାକ୍ଷଙ୍କ ଡ଼ିକ୍ଟେସନ୍ ବନ୍ଦ ହୁଏ । ସେ ଇଚ୍ଛା କରନ୍ତି ରୋଜିକୁ ଅଗ୍ନାଅଗ୍ନି ବନସ୍ତ ବା ବୁଢ଼ୀ ଅସୁରୁଣୀ ଗପ ଶୁଣାନ୍ତେ ଏମିତି ରାତିରାତି ଧରି... ରାସ୍ତାକଡ଼ର କୃଷ୍ଣଚୂଡ଼ା ଗଛରେ ବହୁତ ନାଲି ଫୁଲ... ଆକାଶରେ ଜହ୍ନ ଆସିଛି, ସଂଜୟର ମା' କିନ୍ତୁ ଶୋଇପଡ଼େ ରାତିର ପ୍ରଥମ ପ୍ରହରରେ... ।

ଆଜି ସୁନୀତାର ଚିଠି ପାଇଲା ପରେ ନଳୀନାକ୍ଷ ରୋଜିକୁ ଖୁବ୍ ଖୋଜିଥିଲେ । ରୋଜି ଛୁଟିରେ... ଅଫିସ୍ ଭିତରେ ପ୍ରଧାନ ଆଲୋଚନାର ବସ୍ତୁ ହେଲା 'ସାହେବ ଷ୍ଟେନୋଙ୍କ ଛଡ଼ା ଦିନଟେ ଚଳିପାରୁନାହାନ୍ତି' । ଆଉ ଗୋଟେ କିଏ ଶୁଣାଇ ଶୁଣାଇ କହିଲାଣି- ଆହେ ଷ୍ଟେନୋଗ୍ରାଫର ନୁହେଁ ହୋ... ରୋଜି ରୋଜି, ଚନ୍ଦାମୁଣ୍ଡରେ ପୁଣି ବାଳ କଅଁେଇବ । ନଳୀନାକ୍ଷ ଦାନ୍ତ ରଗଡ଼ନ୍ତି, କୁକୁରଗୁଡ଼ା ପଛରେ ଭୁକିବା ଗୋଟେ ପ୍ରକାର ସଉକ୍ । ସେ ନିଜେ ଏନ୍‌ଗେଜ୍‌ମେଣ୍ଟ ଦେଖିଲେ, ଆସନ୍ତାକାଲି କିଛି ପ୍ରୋଗ୍ରାମ ନାହିଁ । ନିଶ୍ଚୟ ବାରିପଦା ଟୁର୍ । ସୁନୀତା ତାଙ୍କୁ ଅନୁରୋଧ ଜଣାଇଛି ବାରିପଦା ଯିବାକୁ ।

ଶୋଇବା ପୂର୍ବରୁ ନଳୀନାକ୍ଷ ପୁଣିଥରେ ସୁନୀତାର ଚିଠି ଖୋଲିଲେ । ସୁନୀତା ଲେଖିଛି- ବାପା ମରିଗଲା ପରେ ଆପଣଙ୍କ ପ୍ରତି ମୋର ଅନେକ ଭରସା ଥିଲା... କିନ୍ତୁ ଏଯାଏ ଆପଣ ତ ଥରେ ଆସି ଆମ କଥା ବୁଝିଗଲେନି... । ସୁନୀତା ବିଚାରୀ ! କେତେ କ୍ଷତ ବିକ୍ଷତ କରିଛି ଆପଣାକୁ । ଏ ସୁନୀତା ସେତେବେଳେ ହାଇସ୍କୁଲ ଛାତ୍ରୀ ।

ବାପାଙ୍କର ଇଚ୍ଛା ମାଟ୍ରିକ୍ ପାସ୍ ପରେ ଝିଅମାନଙ୍କର ବିବାହ କରିଦେବା ଉଚିତ୍ । ମେଟ୍ରିକ୍‌ରେ ଶିକ୍ଷା ସମାପ୍ତି ଘଟିବ । ନଳୀନାକ୍ଷ ଖୁବ୍ ପ୍ରତିବାଦ କରିଥିଲେ... ତାଙ୍କ କଥାରେ । ଏଇବେଳୁ ତା ମୁଣ୍ଡରେ ବିବାହ କଥା ପୁରାଇବା ଠିକ୍ ନୁହେଁ । ଆଜିକାଲି ପୁଅ, ଝିଅ ସମାନ, ପାଠ ପଢ଼ାନ୍ତୁ... ସୁନୀତା ପୁଅଟେ ହୋଇଥିଲେ ବି ବହୁତ ପାଠ ପଢ଼ନ୍ତା ସୁତରାଂ ସେ ପଢ଼ିବ । ଜଗମୋହନ ନଳୀନାକ୍ଷର କଥା କାଟିପାରି ନଥିଲେ । ସୁନୀତା ଉଚ୍ଚ ଶିକ୍ଷା ପାଇବ, ତା ତଳକୁ ଆଉ ଯେତେବି । ଜଗମୋହନ ଟିକେ ବାହାରକୁ ଗଲେ, ଡ୍ରଇଁ ରୁମ୍‌ରେ ବସି ରହିଥିଲେ ନଳୀନାକ୍ଷ । ହଠାତ୍ ସୁନୀତା କୁଆଡ଼େ ଥିଲା ଦଉଡ଼ି ଆସି ତାଙ୍କ ବେକରେ ଲୋଟିଗଲା... ମଉସା ତମେ ଖୁବ୍ ଭଲ, ବାପାଙ୍କର ସବୁବେଳେ ଖାଲି ବାହାଘର ଚିନ୍ତା । ସେତେବେଳେ ନଳୀନାକ୍ଷ ଆତ୍ମସନ୍ତୋଷରେ ହସିଥିଲେ । ସୁନୀତାର ଆମ୍ବଫାଳ ପରି ପୂରିଲା ଗାଲରେ ଛୋଟ ଚାପୁଡ଼ା ମାରି

କହିଥିଲେ- ତୁ ନିଶ୍ଚୟ ପଢ଼ିବୁ । ସୁନୀତା ଏଣୁତେଣୁ ଗୁଡ଼ାଏ ପ୍ରଗଲ୍‌ଭଙ୍କ ପରି ଗପୁଥିଲା, ନଳୀନାକ୍ଷ ଖୁସି ହେଉଥିଲେ... ।

ରୋଜି ଗୋଟେ ଚରିତ୍ରହୀନା । କୌଣସି ଝିଅର ଚରିତ୍ର ଉପରେ ଆଲୋଚନା ହେଲେ ନଳୀନାକ୍ଷ ଖୁବ୍ ରାଗନ୍ତି । ତାଙ୍କ ମତରେ ଚରିତ୍ରଟା ଷ୍ଟେନ୍‌ଲେସ୍ । କାମନାରେ ଚରିତ୍ରର ରୂପ । ରୋଜି କେବେ ଶାଢ଼ୀ ପିନ୍ଧେନା । ଚିପା ଡ୍ରେସ୍‌ଟା ତାକୁ ଖୁବ୍ ମାନେ ଗୋଟେ ମଡ଼େଲ ପରି... ମନ ଭିତରେ ତା'ର ମସୃଣ ଜାନୁ, ଉନ୍ନତ ବକ୍ଷ ଭାବିବାକୁ ତାଙ୍କୁ ସୁଖ ଲାଗେ । ଗାଁ ନଈ ପଠାରେ ଏବେ କାଶତଣ୍ଡି ଫୁଟିବଣି । ସନ୍ଧ୍ୟା ଶୀତରେ ନୂଆ ପବନ ଖୁବ୍ ଭଲ ଲାଗୁଥିବ ।

ନଳୀନାକ୍ଷଙ୍କ ବଡ଼ପୁଅ ସଂଜୟ ସୁନୀତାର ଦୁଇବର୍ଷ ଜୁନିୟର । ସେ କେତେବେଳେ କେମିତି କହେ ସୁନୀତା ଗୋଟେ ଚରିତ୍ରହୀନା । ତା'ର ବହୁତ ବୟ ଫ୍ରେଣ୍ଡ, ସେ ପାର୍ଟି ପିକ୍‌ନିକ୍ ଏଟେଣ୍ଡ କରେ । ଘରେ ତା'ର ବିବିଧ ସ୍ୱାଧୀନତା । ଭଲ ପଢ଼େନି ମଧ୍ୟ । ଜଗମୋହନଙ୍କ ମୃତ୍ୟୁପରେ ସେ ଆଉ ଟିକିଏ ଫ୍ରି ହୋଇଥିବ । ସେ ନିଶ୍ଚୟ ବର୍ତ୍ତମାନ ଚାହୁଁଥିବ ଗୋଟେ ଚାକିରି । ଘରର ଭରଣପୋଷଣ ପାଇଁ ସେ ନିଶ୍ଚୟ ଆବଶ୍ୟକ କରୁଥିବ କିଛି ଟଙ୍କା । ଜଗମୋହନ ଯଦିଓ ଗୋଟେ ଭଲ ଓକିଲ ଥିଲା ତେବେ ତା'ର କୌଣସି ବ୍ୟାଙ୍କ ବାଲାନ୍ସ ନାହିଁ ବୋଲି ନଳୀନାକ୍ଷ ନିଶ୍ଚିତ । ସୁନୀତା ଏଥର ଏମ୍‌ଏ ପାସ୍ କଲା । ଆଜିକାଲି ଅଧ୍ୟାପିକା ଚାକିରୀ ଅଭାବ । ନଳୀନାକ୍ଷ ସୁନୀତାର ଚିଠି ଖଣ୍ଡକ ଆମୂଳଚୂଳ ପଢ଼ିବାକୁ ଚେଷ୍ଟା କରୁଥିଲେ ।

ବହୁତ ରାତି ହୋଇଯାଇଥିଲା... ସମସ୍ତ ଘର ଶୁପ୍ତ । ବାହାରେ ଅଖଣ୍ଡ ନୀରବତା, ରାତିର ମାୟା... ବିଭିନ୍ନ କୀଟ ପତଙ୍ଗଙ୍କର ଶବ୍ଦ । ପବନ ଅଛି, ଆକାଶରେ ଜହ୍ନ । ସଂଜୟ ମା' ଶୋଇ ଗଲାଣି... ରୋଜି କାହା ସହିତ ସେକେଣ୍ଡ ସୋ ସିନେମା ଯାଇଥିବ, ଆଉ ସୁନୀତା ଅପେକ୍ଷା କରିଥିବ ନଳୀନାକ୍ଷଙ୍କ ଉତ୍ତରକୁ... ।

ନଳୀନାକ୍ଷ ଟେବୁଲ୍ ଲ୍ୟାମ୍ପର ସୁଇଚ୍ ଟିପିଲେ ଦେହରେ ଉତ୍ତାପ... ଶୀତ ବି ହେଉଛି । ଅନ୍ଧକାରର ଆତ୍ମା ଅଛି, ଦେଖି ହୁଏନା, ଉପଲବ୍ଧ କରିହୁଏ । ସଂଜୟ ମା'ର ଘୁଙ୍ଗୁଡ଼ି ଆହୁରି ସ୍ପଷ୍ଟ ହେଲାଣି । ବିଚାରଟା ବହୁତ ଥର ତୁଳସୀ ମାଳଟେ ପାଇଁ ଜିଗର କଲାଣି... ଆଖିରେ ମୋଟା କାଚର ଚଷମା ଦେଇ ଲକ୍ଷ୍ମୀ ସହସ୍ର ନାମ ପଢ଼େ । ପେଟଟା ତା'ର କ୍ରମାଗତ ଶଙ୍କୁଚନ ପ୍ରସାରଣ ଫଳରେ ଏବେ ଲୋଳିତ । ଜଙ୍ଘ ଦୁଇଟାର ବ୍ୟବଧାନ ଖୁବ୍ ବେଶି ହୋଇ ଗଲାଣି ବେଙ୍ଗର ପଛ ଫଡ଼ିଆ ଦୁଇଟି ପରି... ଆଗ

ଦାନ୍ତ ଅଭାବରେ ପାନପିକ ବୋହିଆସେ ଓଠ ତଳକୁ... ଇସ୍.. ସଂଜୟ ମା'ର ଦେହଟା କେଡ଼େ ବିଭତ୍ସ...!!!

□□□ □□□ □□□

ନଳୀନାକ୍ଷ ନିଜେ ଡ୍ରାଇଭିଂ କରୁଛନ୍ତି । ଆଉ ପାଞ୍ଚ ସାତ ମିନିଟ୍‌ର ବାଟ । ସୁନୀତା ତାଙ୍କୁ ଦେଖିଲେ ନିଶ୍ଚୟ ଖୁସି ହୋଇଯିବ । ଆଉ ତା'ର ମା'... ବିଚାରୀ ଧଳା ଶାଢ଼ିଟେ ପିନ୍ଧି ନିଶ୍ଚୟ ବହୁତ କାନ୍ଦିବେ । କାନ୍ଦି ବା ଆଉ ଲାଭ କ'ଣ । ଗଲା ପୁଅ ଆଉ ବାହୁଡ଼ି ଆସିବନି । ସଂସାରଟା ତ ଗୋଟେ ମହାନାଟକ... ସେଥିରେ କାହା ଭୂମିକା କ୍ଷୁଦ୍ର ଆଉ ବା କାହାର ଟିକେ ବେଶି... ତେବେ ବହୁତ ଧକ୍କା ପାଇଥିବେ ସେ । ନଳୀନାକ୍ଷ ଶାନ୍ତ୍ୱନା ଦେବେ, ସୁନୀତା ଏ ଘରର ଝିଅ । ସୁନୀତାର ସମସ୍ତ ସୁବିଧା ସେ ନିଶ୍ଚୟ କରିଦେବେ ଜଗମୋହନର ଅନ୍ତରଙ୍ଗ ବନ୍ଧୁ ହିସାବରେ ।

ନଳୀନାକ୍ଷ ହଠାତ୍ ଗାଡ଼ିରେ ବ୍ରେକ୍ ଦେଲେ, ସେ କ'ଣ ରାସ୍ତା ଭୁଲିଗଲେ । ନାଁ ଏଇଟା ନିଶ୍ଚୟ । ଏଇ ତ ସେ ଆଗ ଦି' ମହଲା ବିଲ୍ଡିଂଟା ସେ ପଞ୍ଜାବୀ କଣ୍ଟ୍ରାକ୍ଟରର । ଆଉ ଟିକେ ଡ଼ାହାଣକୁ ଭାଙ୍ଗିଗଲେ ଜଗମୋହନର ଚାଳ ଘରଟା । ଜଗମୋହନଟ ନିହାତି ଅପଦାର୍ଥ । ଏମିତି ଏକ ନାମ୍‌ଜାଦା ଓକିଲ ହୋଇ ମଧ ଖଣ୍ଡେ ଭଲ ଘର କରିପାରିଲା ନାହିଁ । ସେ ରାସ୍ତାଟା ଭୁଲି ଯାଉଥିଲେ କାରଣ ଅତ୍ୟଧିକ ଅନ୍ୟମନସ୍କ ।

ଏଇ ତ ବୋଧହୁଏ ଜଗମୋହନର ସ୍ତ୍ରୀ ଠିଆ ହୋଇଛନ୍ତି । ତାଙ୍କୁ ତ ଚିହ୍ନି ହେଉନି, ଠିକ୍ ଗୋଟେ ପାଗଳୀ ପରି । ଗାଡ଼ି ବ୍ରେକ୍ ଦେଇ ଭିତରୁ ବଡ଼ ପାଟିରେ ନମସ୍କାର ଜଣାଇଲେ । ଆରେ, ସେ କ'ଣ କିଛି ନକହି ଭିତରକୁ ଚାଲିଗଲେ, ଚିହ୍ନି ପାରିଲେ ନି ବୋଧେ । ନଳୀନାକ୍ଷ ଷ୍ଟାର୍ଟ ବନ୍ଦ କରି ଗାଡ଼ିରୁ ଓହ୍ଲାଉଛନ୍ତି; ସୁନୀତା ଘରୁ ବାହାରି ଆସିଲା । ନଳୀନାକ୍ଷଙ୍କୁ ଦେଖି ସେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲା ବୋଧେ, ପରେ କିନ୍ତୁ ପ୍ରକୃତିସ୍ଥ ହୋଇ ନଳୀନାକ୍ଷକୁ ନମସ୍କାର କଲା । ସୁନୀତା ସମୁଦ୍ର ପରି ଗମ୍ଭୀର । ନିହାତି ସ୍ୱାଭାବିକ । ଜଗମୋହନର ମୃତ୍ୟୁପରେ ଘରର ସମସ୍ତ ଦାୟିତ୍ୱ ତାରି ଉପରେ... ।

ସୁନୀତା କିଛି କହୁନି । ଆଖିରେ ଆଷାଢ଼ର ବାରି । ନିଜେ ନିଜେ କୈଫିୟତ୍ ଦେବାରେ ବ୍ୟସ୍ତ । ବହୁତ ଦିନରୁ ଆସିବାଟା ଗୋଟେ କର୍ତ୍ତବ୍ୟ ମନେ କରିଥିଲେ ମଧ ବିଭିନ୍ନ ଧନ୍ଦା ଭିତରେ ଆସିବାଟା ସମ୍ଭବ ହୋଇନି । ତାଙ୍କର ବହୁତ ସହାନୁଭୂତି ତଥା

ଆନ୍ତରିକତା ଅଛି ବୋଲି ସେ ସୁନୀତାର ପିଠିରେ ହାତ ବୁଲାଇ ବୁଲାଇ କହିବାରେ ଲାଗିଛନ୍ତି । ଚା ପାନ ପରେ ସୁନୀତା ତା'ର ସ୍ୱାଭାବିକ ଅବସ୍ଥାକୁ ଫେରିଛି । ଅଳ୍ପ କଥାବାର୍ତ୍ତା ଭିତରେ ସେ ବୁଝିଲା, ନିକଟରେ ମଉସାଙ୍କର ଗୋଟେ ଟୁର୍ ଅଛି । ସେ ଆଜି ତାଙ୍କ ଘରେ ଅବସ୍ଥାନ କରିବେ । ନଳୀନାକ୍ଷଙ୍କ ଅନୁରୋଧରେ ସୁନୀତା ବାହାରିଛି... । ଘରେ କାହାରି ଆପତ୍ତି ନଥିଲା, ଦୁଇଘଣ୍ଟା ପରେ ଫେରିବ ସେ । ତା ଛଡ଼ା ନିଜର ନହେଲେ ବି ସୁନୀତାକୁ ନିଜର ଝିଅ ପରି ମନେ କରନ୍ତି ନଳୀନାକ୍ଷ ।

ନଳୀନାକ୍ଷ ଡ୍ରାଇଭିଂ କରୁଥିଲେ । ଆକାଶରେ ସାମାନ୍ୟ କଳାମେଘ । ବାମ କଡ଼ରେ ସୁନୀତା, ଖୁବ୍ ଗମ୍ଭୀର । କାର୍‌ର ସ୍ପିଡ୍ ସ୍ୱାଭାବିକ । ନଳୀନାକ୍ଷ ମଝିରେ ଏଣୁତେଣୁ ପଦେଅଧେ ପଚାରୁଥିଲେ । ସୁନୀତାର ଉତ୍ତର ଖୁବ୍ ସଂକ୍ଷିପ୍ତ । ନଳୀନାକ୍ଷ ପ୍ରତିଶ୍ରୁତି ଦେଉଛନ୍ତି ସେ ନିଶ୍ଚୟ ଜଗମୋହନର ବନ୍ଧୁ ହିସାବରେ ତାଙ୍କର କର୍ତ୍ତବ୍ୟ କରିବେ ।

ସୁନୀତା ଜାଣି ନଥିଲା ନଳୀନାକ୍ଷଙ୍କ ଟୁର୍‌ର ସ୍ଥାନ । ନଳୀନାକ୍ଷ ଧୀରେ ଧୀରେ ନିଜର ବାଁ ହାତଟା ସୁନୀତାର କାନ୍ଧ ଉପରେ ରଖି ନିଜ ଆଡ଼କୁ ସାମାନ୍ୟ ଟାଣୁଛନ୍ତି । ସୁନୀତା ଦେହରେ କମ୍ପନ ନଥିଲା । ତା'ର ମନେ ହେଉଥିଲା ଜଗମୋହନ ମରି ନାହାନ୍ତି... ନଳୀନାକ୍ଷ ଜଗମୋହନ । ଅନେକ ସନ୍ଧ୍ୟାରେ ସହର ଉପକଣ୍ଠରେ ଝିଅ କାନ୍ଧରେ ହାତ ରଖି ବୁଲିଲା ପରି ନଳୀନାକ୍ଷର ହାତଟା ସୁନୀତାର କାନ୍ଧ ଉପରେ ପଡ଼ିଛି । କ୍ରମେ ତାଙ୍କ କଣ୍ଠରୁ କଥା ସରି ଆସୁଛି ।

କଳାମେଘ ଆକାଶରେ ବହୁତ ଅଂଶ ମାଡ଼ିଗଲାଣି । ଝଡ଼ର ସୂଚନା, ନଳୀନାକ୍ଷ ଡାହାଣ ହାତଟା ଷ୍ଟିଅରିଂ ଉପରେ ଥୋଇ ଆଗକୁ ଚାହିଁଛନ୍ତି । ଆଖିରେ ଡ଼ୋଳା ଦୁଇଟି ସ୍ଥିର... ଝଡ଼ ଆସୁଛି ! ! ! ବାଁ ହାତର ଆଙ୍ଗୁଳି ଗୁଡ଼ାକ ସୁନୀତାର ଚୂର୍ଣ୍ଣକୁନ୍ତଳ ଗୁଡ଼ାଇବାରେ ବ୍ୟସ୍ତ... । ଝଡ଼ ଆସିଛି, ଖୁବ୍ ଶବ୍ଦ । ନଳୀନାକ୍ଷର ହାତ ସୁନୀତାର ସ୍ଫୀତ ବକ୍ଷ ଉପରେ ଖସିଛି । ସେ ବ୍ଲାଉଜ୍‌ର ଫାଙ୍କ ଦେଇ ସୁନୀତାର ବର୍ତ୍ତୁଳ ସ୍ତନ ଉପରେ ଆଙ୍ଗୁଳି ଟିପା ମାରୁଥିଲେ । ନିଜର ମୁହଁକୁ ସୁନୀତାର ମସୃଣ ଗାଲ ଉପରେ ଘସୁଥିଲେ । ଆଗରେ ନେସ୍‌ନାଲ୍ ହାଇୱେ । ପାଖକୁ ଲାଗି ଏଲ୍‌ଆଇସି କଲୋନୀ । ଗାଡ଼ିରେ ବ୍ରେକ୍ ଦେଲେ, ସ୍ଥାନଟା ନିର୍ଜନ । ଝାଉଁ ବଣରେ ତୋଫାନ ଆସୁଛି । ସେ ସୁନୀତାକୁ ଅନୁରୋଧ ଜଣାଇଲେ ଏଇଠି ରହି ତୋଫାନ ସହିନେବା ପାଇଁ । ଏ ଯାଏ ସୁନୀତା ସ୍ଥାଣୁ ହୋଇ ବସିଥିଲା । ସେ କିଛି ଭାବି ପାରିଲା ନାହିଁ ମଉସା କ'ଣ ଚାହୁଁଛନ୍ତି । ସୁନୀତା ଚାହିଁଛି... ଦେହଟା ତା'ର ଖୁବ୍ ଥରୁଛି । ନଳୀନାକ୍ଷ ଜୋର୍‌ରେ କହିପାରୁ ନଥିଲେ । ଓଠ ଦୁଇଟି

ତାଙ୍କର ଥରି ଉଠୁଛି । ସୁନୀତା ଉପଲବ୍ଧ କରିପାରୁଥିଲା ତାଙ୍କର ଉତ୍ତପ୍ତ ନିଶ୍ୱାସ ପ୍ରଶ୍ୱାସ । କ୍ରମେ ନଳୀନାକ୍ଷଙ୍କର ଦୁଇଟି ହାତ ସୁନୀତା ଆଡ଼କୁ ପ୍ରସାରିତ ହୋଇଯାଇଛି । ସେ ଚିତ୍କାର କଲା... ନଳୀନାକ୍ଷ ଚାପା ଗଳାରେ କହୁଥିଲେ- ଭୟ କରନି ସୁନୀତା, ଝଡ଼ ଏମିତି ଆସେ, ଆସିବ । ଏ ବି ଚାଲିଯିବ... ତୋର ଚାକିରି ଦରକାର । ଟଙ୍କା ଦରକାର... ତୁ ସୁନ୍ଦର, ତୋର କିଛି ଅଭାବ ରହିବନି ସୁନୀତା । ବାହାରେ ମଟର ଦେହରେ ତୋଫାନ ଧକ୍କା ଖାଉଥିଲା । ସେ ସୁନୀତାକୁ ଉଲଗ୍ନ କରିବାକୁ ଚେଷ୍ଟା କରୁଥିଲେ... ସୁନୀତାର ଜାନୁଦୁଇଟା ଗୋଲ, ମାଂସଳ ଏବଂ ଲାଲ୍... । ସୁନୀତା ଯଥାସମ୍ଭବ ନିଜକୁ ସଂଜତ କରିବାକୁ ଚେଷ୍ଟା କରୁଥିଲା । ନଳୀନାକ୍ଷ ହଠାତ୍ ଦେଖିଲେ ସୁନୀତାର ରୂପ ପ୍ରଳୟଙ୍କରୀ.. ଭୟଙ୍କର । ସେ ଚିତ୍କାର କରି ଉଠିଥିଲା !!!

ନିଦ ଭାଙ୍ଗିଗଲା ପରେ ନଳୀନାକ୍ଷ ଦେଖିଲେ ସେ ଅସହାୟ ଭାବେ ବିଛଣାରେ ଗଡୁଛନ୍ତି । ଦେହଟା ଥରୁଛି, ଖୁବ୍ ଝାଳ । ଟେବୁଲ୍ ଲ୍ୟାମ୍ପର ସୁଇଚ୍ ଟିପିଲେ । କାନ୍ଥରେ ତାଙ୍କର ଯୁବକ ଅବସ୍ଥାର ଫଟୋ, ସଂଜୟ ମା' ସହିତ ଚାରୋଟି ପିଲାର ବାପା ହେବା ପରର ଫଟୋ । ସବୁ ଫଟୋର ତାଙ୍କ ପ୍ରତି ଦୃଷ୍ଟି । ସେ ଫଟୋଗୁଡ଼ିକ ଆଗରେ ତାଙ୍କର ପାଣିଭିଜା ମୂଷା ପରି ଅସହାୟ ବ୍ୟକ୍ତିତ୍ୱ ଯାକିଜୁକି ହୋଇ ବସିଛି । ଆଉ ଘରେ ସଂଜୟର ମା' ନିଘୋଡ଼ ନିଦରେ । ସେ ପୁଣି ଲାଇଟ୍ ଅଫ୍ କରି ମୁହଁ ଘୋଡ଼ାଇ ଶୋଇଗଲେ... ଦେହରେ ଖୁବ୍ ତାତି !!!



# ବୁଦ୍ଧଂ ଶରଣମ୍

ଧଶଟା ରାତିର ପ୍ଲାଟ୍‌ଫର୍ମ । ସେ ଦିନ ସନ୍ଧ୍ୟାରେ ବେଶ୍ କିଛି ଅସରାଏ ମେଘ ବରଷି ଥିଲା । ନୂଆ ମେଘ, ସ୍ୱତନ୍ତ୍ର ବାସ୍ନା । ଆକାଶରେ ଆଉ କିଛି ମେଘ ଥିଲା... ସେଗୁଡ଼ା ଝୁଲି ରହିଥିଲା ଗୋଟେ ସଦ୍ୟସ୍ନାତା ରତୁସ୍ରବା ନାରୀର ଖୋଲା କେଶରାଶି ପରି ।

ଏ ମେଘ ଯେଉଁ କେତେ ଜଣଙ୍କ ମନରେ ରଙ୍ଗ ଲେସିଥିଲା ସେମାନେ ହେଲେ ମୋର ବନ୍ଧୁ ସମାଜ । ଆକସ୍ମିକ ମଡ଼ାର ଗନ୍ଧ ପାଇଁ ଗୃଧ୍ର ପଲ ପରି ସେମାନେ ସେଇ ସନ୍ଧ୍ୟା ଅବସରରେ ମୋ କ୍ୱାଟର ସାମ୍ନାରେ ପଟୁଆର କରିଥିଲେ । ଫୁଲବିହୀନ ସହରରେ ଦେହର ଉତ୍ତାପ ପାଇଁ ଓ୍ୱାଇନ୍ କର୍ଣ୍ଣରର ଆବଶ୍ୟକତା ଉପରେ ସେମାନଙ୍କର ଆଲୋଚନା ଚାଲିଥିଲା । ମୋ ମନରେ ବି ଟିକେ ସେଇ ପ୍ରକାର ନିଶା ଥିଲା, ତେବେ ଏକା ସମୟରେ ସାମାଜିକ ଜୀବ ହିସାବରେ ଭଲମନ୍ଦ ବିଚାରର ଭୟ ବି ଥିଲା । ତେଣୁ ସେମାନଙ୍କର ଉପସ୍ଥିତି ମୋତେ ବିଶେଷ ଉତ୍ସାହ ଦେଲା । ମିଳିତ ଭାବେ ଦୋଷ ବାଣ୍ଟିନେବାକୁ ମୁଁ ଭଲ ମନେ କଲି... ।

ଦୀର୍ଘ ଦୁଇଘଣ୍ଟାର ବ୍ୟବଧାନ ଭିତରେ ଦୁଇଚାରି ଆଉନ୍ସ ଫରେନ୍ ଲିକର ସହିତ କେତେଟା କେପ୍‌ଷ୍ଟେନ୍ ଶେଷ କରି ସାରିଲା ପରେ ମୁଁ କେମିତି ନିଜକୁ ସାହେବୀ ବୋଧ କରୁଥିଲି । ମୋର ବନ୍ଧୁଗୁଡ଼ିକ ମଧ୍ୟ ଅନୁରୂପ କାଏଦାରେ କଥାବାର୍ତ୍ତା ଆରମ୍ଭ କରି ଦେଇଥିଲେ । ଆମେ ଆସ୍ତେ ଆସ୍ତେ ମନଦେଇ ଓ୍ୱାଇନ୍ କର୍ଣ୍ଣରରୁ ବାହାରି

ଆସିଲୁ । ସେତେବେଳେ ରାସ୍ତାକଡ଼ର ନିଅନ୍ ଲାଇଟ୍‌ଗୁଡ଼ିକ ଆମ ଆଖିଆଗରେ ଅନ୍ୟ ରଙ୍ଗର । ମେଘ ଆକାଶରେ ଅସ୍ପଷ୍ଟ ଜହ୍ନ ବାରି ହେଉଥିଲା । ଆମେ ଆଗକୁ ଝୁଙ୍କି ଝୁଙ୍କି ଚାଲୁଥିଲୁ । ମୋର ମନେ ହେଉଥିଲା ମୁଁ ଗୋଟେ ଭିନ୍ନ ପୃଥିବୀର ନୂତନ ଶାସକ । ଆଉ ଯେଉଁମାନେ ସବୁ ମୋର ଅନୁଚରବର୍ଗ । ହାୟ, ମୋର ଅନୁଚରମାନଙ୍କର ଦୁର୍ବଳ ବ୍ୟକ୍ତିତ୍ୱ ! ସେମାନଙ୍କ କାନ୍ଧ ଉପରେ ଗୋଡ଼ ରଖି ମୁଁ ସେମାନଙ୍କର ନୂତନ ଶାସକ ।

ମୁଁ ହଠାତ୍ ପ୍ରସ୍ତାବ ଦେଲି, ଏମିତି ଏକ ମୁଡ୍‌ରେ ଘରକୁ ନ ଫେରି ରେଲ୍‌ୱେ ପ୍ଲାର୍ଟଫର୍ମର ସେ ଅନ୍ଧାରିଆ କୋଣରେ କିଛି ସମୟ କାଟିବା । ମୋର ବନ୍ଧୁମାନେ 'ବିଉଟିଫୁଲ୍ ଆଇଡ଼ିଆ' ବୋଲି କୋରସ୍ ସୃଷ୍ଟି କଲେ । ମୁଁ ଆଉ ଟିକେ ଆଗକୁ ଝୁଙ୍କିପଡ଼ି ଚାଲିବାକୁ ଚେଷ୍ଟା କଲି । ତାପରେ ହାତ ତାଳିରେ ଇଶାରା ଦେଲି ମୋର ଆଉ ଗୋଟେ ସିଗ୍ରେଟ୍ ଦରକାର... ।

ସେତେବେଳେ ରାତି ଦଶ । ନିକଟରେ ଟ୍ରେନ୍ ନଥିଲା । ଯାତ୍ରୀମାନେ ଶୋଇ ଯାଇଥିଲେ, ନାଇଟ୍ ପେଟ୍ରୋଲିଂର ଘୁମନ୍ତ କନେଷ୍ଟବଳ ପରି ଆମେ କେତେଜଣ ପ୍ଲାଟଫର୍ମରେ ଚାଲୁଥିଲୁ । ଆଗରେ ଆମର ଏକାନ୍ତ ନିଜସ୍ୱ କାମନା ପରି ସିଗ୍‌ନାଲ୍ ପୋଷ୍ଟରେ ଥିବା ଆଲୋକଗୁଡ଼ା ଦପ୍ ଦପ୍ କରୁଥିଲେ । ପ୍ଲାଟ୍‌ଫର୍ମର ଲୁହା ଖଣ୍ଡରେ କେତେସବୁ ପୋଷ୍ଟର, କିନ୍ତୁ ନିର୍ଜୀବ । ଜୀବନ୍ତ କେବଳ ସେଠି ଆମେ, କେତେ ଅଣା ପଇସା ପାଇଁ ଅପେକ୍ଷା କରିଥିବା ଚା ବାଲା ଆଉ ଆମର ବିକ୍ଷିପ୍ତ ଚିନ୍ତାମାନେ । ବେଳେବେଳେ ପରସ୍ପରର ଆଲୋଚନା କାନରେ ପଡୁଥିଲା... ଦେଶ, ବିଦେ. ବହୁତ ବିଷୟରେ । କେତେବେଳେ ସିଦ୍ଧାନ୍ତରେ ପହଞ୍ଚୁ ଥିଲୁ- ଆମେ ସବୁ ସ୍ଥାଣୁ, ଅଥଚ.... ଦୁନିଆରେ ଯାହା ସବୁ ଘଟି ଯାଉଛି, ସେଗୁଡ଼ା କେବଳ ଗୋଟେ ସ୍ୱାଭାବିକ ସ୍ରୋତ, କୁଟା ଖିଅଟେ ପରି ସେଥିରେ ଭାସିବା ଆମର ଧର୍ମ । ସମସ୍ତ ସ୍ରୋତରେ ଆମେ କେବଳ ନିମିତ୍ତ ମାତ୍ର... ! ! !

ଏଇ ଆଲୋଚନା ବେଳେ ବନ୍ଧୁ ଜଣେ ମୋର ହଠାତ୍ ଉତ୍ତ୍ୟକ୍ତ ହୋଇ ଗଲେ । ତାଙ୍କ ମତରେ ଏହି ଚିନ୍ତାଧାରା ହିଁ ଆମକୁ ସ୍ଥାଣୁ କରି ଦେଉଛି, ଆମର ପୌରୁଷକୁ ବରଫ ଦିଆ ମାଛ ପରି ଶେତା କରି ଦେଉଛି । ତାଙ୍କ ମତାମତ ଉପରେ କିଛିଟା ମନ୍ତବ୍ୟ ଦେବା ପୂର୍ବରୁ ଅନ୍ୟ ଜଣେ ବନ୍ଧୁ ମନରେ ଖରାଦିନିଆ କୋଲ୍ଡ଼ ବିଅରର ଶିହରଣ ଆଣିଦେଲେ । ସେ ଚାହୁଁଥିଲେ ବହୁତ ଗୁଡ଼ିଏ କଣ୍ଟାହୀନ ଗୋଲାପର ବଣ... ଗୋଡ଼ ତଳେ କଲି କଲି ଘାସର ଗାଲିଚା ଆଉ ମେଞ୍ଚାଏ ଜହ୍ନ ଆଲୁଅ ।

ରୁଷିଆର ବୈଜ୍ଞାନିକ ପୃଥିବୀର ମଣିଷ ପାଖରେ ଚନ୍ଦ୍ରର ଫଟୋ ବାଣ୍ଟିଲାଣି । ଇସ୍ ବଡ଼ ବୀଭତ୍ସ, ଅନେକଗୁଡ଼ିଏ ବସନ୍ତ ଦାଗରେ ଗୋଟେ କାଳି ଝିଅର ମୁହଁପରି । ମୋ କ୍ଲାସ୍‌ମେଟ୍ ସୁମିତ୍ରା ସାନ୍ୟାଲ୍ ଖୁବ୍ ମେକ୍‌ଅପ୍ ନିଏ, ମୁଁ ବି ସାଧାରଣ ଭାବେ ବହୁତଥର ତା ମୁହଁ ଦେଖିଛି । ବିରାଟ ବିରାଟ ବ୍ରଣ ତା ମୁହଁରେ, ନାକତଳେ ନିଶପରି ମେଞ୍ଚାଏ ଲୋମ । ତଥାପି ତାକୁ ଚିହ୍ନିଲା ଠାରୁ ମତେ ସେ ଭଲ ଲାଗେ ।

ଆମେ ଏମିତି ଚାଲୁ ଚାଲୁ ଷ୍ଟେସନ୍‌ର ଗୋଟେ କୋଣରେ ପହଞ୍ଚିଥିଲୁ । ସ୍ଥାନଟା ଅନ୍ଧାର । ପାଖରେ ଗୋଟେ ସିମେଣ୍ଟ ବେଞ୍ଚ, ତା ପାଖକୁ ଲାଗି ଗୋଟେ କୃଷ୍ଣଚୂଡ଼ା ଗଛ, ଯେଉଁଥିରେ ବର୍ଷା ଋତୁର ଆରମ୍ଭରେ ବି କୃଷ୍ଣଚୂଡ଼ାର କେତୋଟି କ୍ଷୟିଷ୍ଣୁ ପେନ୍ଥା ଝୁଲୁଥିଲା । ରାତିରେ ସେଠି କିନ୍ତୁ କଳାମେଘର ଫାଙ୍କରେ ଝାପ୍‌ସା ଜହ୍ନ, ଆମେ ବସିଲୁ... ସେତେବେଳେ ଲିକରର ପ୍ରଭାବରେ ମୁଁ ସମ୍ପୂର୍ଣ୍ଣ ଥରୁଥିଲି । ମନ ଭିତରେ ମୋର କାହିଁକି ସେଦିନ ବହୁତ କଥା ମୁଣ୍ଡ ଟେକୁଥିଲା... ଗତ ଦିନ କଥା । ସେଗୁଡ଼ା ସବୁ ଚାହୁଁଥିଲେ ଆତ୍ମପ୍ରକାଶ କରିବାକୁ ଠିକ୍ ପ୍ରସବର ଅବ୍ୟବହିତ ପୂର୍ବରୁ ସ୍ତ୍ରୀର ଜରାୟୁକୁ ଚିରି ଶିଶୁ ପିଲାଟା ଦୁନିଆର ଆଲୋକ ଦେଖିବାକୁ ବାଟ ଖୋଜୁଥିଲା ପରି, ମୋର ମନର ଓଜନ ବହୁତ ବଢ଼ି ଯାଇଥିଲା ସେତେବେଳେ... ମୁଁ ବଞ୍ଚିଗଲି- ହଠାତ୍ ବନ୍ଧୁମାନେ ଅନୁରୋଧ କଲେ ନିଜର କିଛି ଅନୁଭୂତି ଶୁଣାଇବାକୁ । କାରଣ ପରିବେଶଟା ଖୁବ୍ ରୋମାଣ୍ଟିକ୍ ସେତେବେଳେ ।

ମୁଁ ସ୍ପଷ୍ଟ ଶୁଣାଇଦେଲି, ମୋର ଅନୁଭୂତି ହୁଏତ ସେ ପରିବେଶରେ ସେମାନଙ୍କୁ ମଜଗୁଲ୍ କରିନପାରେ... ତଥାପି ସେମାନେ ଜିଦ୍ ଧରିଥିଲେ- ।

... ମୁଁ କହୁଥିଲି, ମୋର ଗୋଟେ ପୋଷା ରାବିଟ ବିଷୟରେ ଯାହାର ଚୂନା ବରଫ ପରି ମୁଲାଏମ୍ ଧଳା ଲୋମଶ ଦେହ ମୋତେ ଖୁବ୍ ଭଲ ଲାଗେ ।

ସେ ମାତ୍ର ତିନି ଚାରିବର୍ଷ ତଳର କଥା । ତେବେ ସେତେବେଳେ ପାହାଡ଼ ଚଢ଼ିବାର ନିଶା ମୋର ପ୍ରବଳ ଥିଲା, କଣ୍ଟାର ରାସ୍ତାରେ ଚାଲିବାରେ ଆନନ୍ଦ ଯଥେଷ୍ଟ ମିଳୁଥିଲା । ତା ସହିତ ପଶୁପକ୍ଷୀ ପୋଷିବାର ଏମିତି ଗୁଡ଼ାଏ ଅଜବ ଖିଆଲ ବି ଥିଲା ।

ଏମିତି ଏକ ବ୍ୟତିକ୍ରମ ଜୀବନରେ ମୁଁ ତା'ର ସନ୍ଧାନ ପାଇଥିଲି । ଛୋଟ ଘାସବୁଦାରେ ଖେଳୁ ଖେଳୁ ମୋ ହାତରେ ସେ ଧରାଦେଲା ।... ମୁଁ ତା ଉପରେ ମୋର ସାର୍ବଭୌମତ୍ୱ ଦାବୀ କଲି । ପଶୁ ହେଲେ ବି ସେ ମୋ ମନକଥା ବୁଝିଲା ।

ମୁଁ ତାକୁ ଯେବେ ପ୍ରଥମେ ମୋ ଘରକୁ ଆଣେ ମୋ ସ୍ତ୍ରୀ କେମିତି ମୋତେ ସନ୍ଦେହ ଦୃଷ୍ଟିରେ ଦେଖିଲେ । ସେ କହୁଥିଲେ- ଛି, ଛି, ମଣିଷ ହୋଇ ଏ କି ପଶୁପ୍ରେମ ! ଯେମିତି ବାପାମାଆଙ୍କ କୋଳରେ ଆଉ ଗୋଟେ ନୂଆ ପିଲା ଦେଖି ଅବୋଧ ଶିଶୁଟା କିଛି କହିପାରୁନଥିଲେ ବି ନିଜର ସ୍ଥିତି ସମ୍ପର୍କରେ ସନ୍ଦେହୀ ହୋଇପଡ଼େ, ସେମିତି ମୋ ସ୍ତ୍ରୀ ଖାଲି ଗର ଗର ହେବାକୁ ଲାଗିଲେ । କିନ୍ତୁ ମୋର କୁନିଝିଅ ଲିପା ତାକୁ ଦେଖି ବେଶ୍ କିଛି ଖୁସି ହେଲା । କାରଣ ରାବିଟ୍‌ଟା ମୋ ହାତରୁ ହଠାତ୍ ଡେ଼ଇଁ ପଡ଼ି ତା ନାଲି ଟୁକୁ ଟୁକୁ କଅଁଳ ଜିଭରେ ଲିପା ଦେହକୁ ଚାଟିବାକୁ ଲାଗିଲା । ସେ ତାଳିମାରି ନାଚିଲା ।

ମୋ ମନରେ କ୍ରମେ ସନ୍ଦେହ ଆସିଲା । କାରଣ ସବୁ ସତ୍ତ୍ୱେ ସେ ପଶୁ, ମୋ ମନର ସୂକ୍ଷ୍ମତମ ପ୍ରଦେଶକୁ ବିଶ୍ଳେଷଣ କରିବା ବୋଧହୁଏ ତା ପାଖରେ ଏକ ଦୁରୂହ ବ୍ୟାପାର, ତେଣୁ ମୁଁ ନିଷ୍ଠୁର ହେଲି, ଗୋଟେ ଲୁହା ପଞ୍ଜୁରୀରେ ତାକୁ ଆବଦ୍ଧ କଲି ।

ତା ସାନ୍ନିଧ୍ୟରେ ମୋ ଦିନଗୁଡ଼ାକ ଚୈତ୍ରର ସନ୍ଧ୍ୟାପରି କଟିଲା... ଛୋଟ ଛୋଟ କଲିଘାସ ଖୋଜିବାରେ ମୁଁ ପାଗଳ ହେଲି । ତାର ସେବା ହିଁ ମୋର ଆନନ୍ଦ । କିନ୍ତୁ ମୋ ହାତରୁ ବେଳେବେଳେ ଏଣୁତେଣୁ କିଛି ଖାଉ ଖାଉ ଖୁବ୍ ଜୋର୍‌ରେ ଆଙ୍ଗୁଠିଟାକୁ କାମୁଡ଼ି ଦିଏ । ଆଙ୍ଗୁଳିର ରକ୍ତ ଦେଖି ସେ କେମିତି ନିଜକୁ ଦୋଷୀ ମନେ କରି ଜାକିଜୁକି ହୋଇ ପଞ୍ଜୁରୀର ଗୋଟେ କୋଣରେ ବସିରହେ, ମୁଁ ଡ଼ାକିଲେ ପୁଣି ହାତକୁ ଆସେ ।

କ୍ରମେ ମୁଁ ଦେଖିଲି ତା'ର ବେଶି ସମୟ ଲିପା ସହିତ କଟୁଛି- ଆଉ ସେତେବେଳେ ସେ ଯେମିତି ଖୁବ୍ ପ୍ରଫୁଲ୍ଲ । ମୋ ପାଖରେ ତା'ର ସ୍ୱାଧୀନତା ନାହିଁ, ଭବିଷ୍ୟତ ନାହିଁ, ଖାଲି ମୋ ଖିଆଲର ଶିକାର- ମୁଁ ଚିନ୍ତାକରେ ଏମିତି ଗୋଟେ ପଶୁ ପୋଷିବାର ମାନେ ବା କ'ଣ ! ମୋର ଯତ୍ନପ୍ରତି ତା'ର ତ କୃତଜ୍ଞତା ନାହିଁ । ବରଂ ଗୋଟେ ଅବୋଧ ଏବଂ ସରଳ ଶିଶୁ ପାଖରେ ସେ ଖୁବ୍ ଖୁସି । ତାଛଡ଼ା ତାରି ପାଇଁ ଅଧିକାଂଶ ସମୟରେ ଆମେ ସ୍ୱାମୀ-ସ୍ତ୍ରୀ ପରସ୍ପରକୁ ଦେଖିଲେ ବି ମୁହଁ ମୋଡୁ । ଆଉ କେବେକେନେତ ଶୁଖିଲା ରୋଟି ଏବଂ ଥଣ୍ଡା ସନ୍ତୁଳା ପାଖରେ ଟୁକୁରା କାଗଜରେ ଲେଖାଥାଏ- ମୋ ଦେହ ଭଲ ନାହିଁ, ନିଜେ ଖାଇ ଦେବ....!! ମନେହୁଏ ମୋର ଏ ସୀମିତ ସଂସାର ଭିତରେ ଆଉ ଏ ଅନାବଶ୍ୟକ ଖେଳର କିଛି ଅର୍ଥ ନାହିଁ, ଯା'ର ସମାପ୍ତି ଦରକାର । ସେଇ ଦିନରାତିରେ ମୋ ନିଦ ଭାଙ୍ଗିଗଲା ପରେ ମୁଁ ଶୁଣିଲି ଜେଲ୍ ଘଣ୍ଟାରେ ଦୁଇଟା ବାଜିବାର । କିନ୍ତୁ ନିଦକୁ ସେତେବେଳେ ମୁଁ ଅସ୍ୱାଭାବିକ ମନେ କରୁଥିଲି । ମୁଁ ଆବିଷ୍କାର କଲି ଭାଲୁ ପରି ମୋ ଦେହଟା ଉତପ୍ତ, ଶିରାପ୍ରଶିରାରେ ତୀବ୍ର ରକ୍ତ-ପ୍ରବାହ... ହଠାତ୍ ଆଖି ଆଗରେ ଝଲସିଗଲା

ଆପଲ୍ କଟା ଛୁରିଟା... ! ମୁଁ ଶୋଇବା ଖଟରୁ ଉଠିଗଲି । ମୁଁ ଆଜି ସବୁ ଶେଷ କରିଦେବି, ମୋ ଖିଆଲ୍‌ର ବାସ୍ତବ ରୂପ ଖୁବ୍ ନଗ୍ନଭାବେ ପ୍ରକାଶ କରିବି । ରାବିଟ୍‌ଟାକୁ ଦୀର୍ଘଦିନ ଧରି ଏମିତି ଅର୍ଥହୀନ ଭାବେ ପୋଷିବା ଅପେକ୍ଷା ବରଂ ଶେଷଥର ପାଇଁ ତା'ର କଅଁଳ ମାଂସରେ କାମନାପୂର୍ଣ୍ଣ କରିବି !!!

ମୁଁ ଆସ୍ତେ ଆସ୍ତେ ଗୋଡ଼ ଚିପି ଟେବୁଲ୍ ପାଖରେ ପହଞ୍ଚିଲି, ଆପଲ୍‌କଟା ଛୁରିଟା ଚିକ୍ ଚିକ୍ କହୁଛି... ଆଉ ଦୁଇଟା ଷ୍ଟେପ୍ ମାତ୍ର । ତାପରେ... ? ମେଞ୍ଚାଏ ସଦ୍ୟ ରକ୍ତ ନିଶ୍ଚୟ ଦେଖିବି ।

ଅନ୍ଧାର ଭିତରେ ମୁଁ ଦେଖିପାରୁଥିଲି ରାବିଟ୍‌ର ନିରୀହ ଦେହଟା, ଖୁବ୍ କୋମଳ, ମୁଲାଏମ୍, ପିଞ୍ଜରା ପାଖକୁ ଲାଗିଗଲି, ରାବିଟ୍ ଶୋଇଛି... ଆଃ, କେଡ଼େ ଶାନ୍ତ ଜୀବଟା ! ଯଦି ତା'ର ନିଦ ହଠାତ୍ ଭାଙ୍ଗିଯାଏ ? ମୋର ଏ କଦର୍ଯ୍ୟ ରୂପ ଆଉ ହାତରେ ଛୁରିଟା ଦେଖିଲେ ? ଇସ୍, ମୋର କି କୁତ୍ସିତ ପ୍ରବୃତ୍ତି !!! ଅଜାଣତରେ ମୋ ହାତରୁ ଛୁରିଟା ଖସିପଡ଼ିଲା, ମୁଁ ପିଞ୍ଜରାର ଦ୍ୱାର ଖୋଲିଦେଲି... ।

ମୁଁ ଚମକି ପଡ଼ିଲି, ଷ୍ଟେସନ୍ ପାଖ ଜେଲ୍ ଘଣ୍ଟାରେ ଦୁଇଟା ବାଜିଲା । ଜେଲ୍ ଗାର୍ଡ୍ ହୁଇସିଲ୍ ଦେଉଛି, କୌଣସି ଏକ ଦାଗୀ ଜେଲ୍ ପାଚେରି ଡେ଼ଇଁ ଚାଲିଯାଇଛି । ମୁଁ ଚିତ୍କାର କଲି... ମୋ ରାବିଟ୍... !!!

ସେତେବେଳେ ବନ୍ଧୁମାନଙ୍କର ନିଶା ଛାଡ଼ି ଯାଇଥିଲା । ସେମାନେ ଖୁବ୍ ଜୋରରେ ହସୁଥିଲେ । ମୁଁ ନିଜକୁ ଅସହାୟ ମନେକଲି, ଲଜ୍ଜିତ ବି ହେଲି । ପାଖ କୃଷ୍ଣଚୂଡ଼ା ଗଛରେ ଯେଉଁ କେତୋଟି ପାଖୁଡ଼ା ଝୁଲୁଥିଲେ, ସେମାନେ ସବୁ ଅନ୍ଧାରରେ ଲୁଚିଗଲେଣି । ଆକାଶରେ ଜହ୍ନ ନଥିଲା ।

ବନ୍ଧୁମାନେ ତାପରେ ଛ' ଖଣ୍ଡ କାଠରେ ଗୋଟେ ଫ୍ରେମ୍ ବାନ୍ଧିଥିଲେ । ମୋତେ ଜୋର୍ କଲେ ସେଥିରେ ଶୋଇଯିବାକୁ । ମୁଁ ଆପତ୍ତି କଲିନି । ମୁଁ କେବଳ କେତେଜଣଙ୍କ କାନ୍ଧ ଉପରେ ଶୋଇ ଶୁଣୁଥିଲି- ହରିନାମ, ରାମନାମ, ସତ୍ୟ... । ସେମାନେ ମୋତେ ମୋର କ୍ୱାର୍ଟର ସାମ୍ନାକୁ ବୋହି ନେଲେ ଯେଉଁଠି ମୋ ସ୍ତ୍ରୀ ଫୁଲତୋଡ଼ା ଧରି ଅପେକ୍ଷା କରିଥିଲେ । ମୁଁ କିନ୍ତୁ ଆଶ୍ଚର୍ଯ୍ୟ ହେଲି- ମୋ ମୃତ୍ୟୁରେ ତାଙ୍କର ଦୁଃଖ ନାହିଁ, ଶୋଚନା ନାହିଁ, ବରଂ ସ୍ତ୍ରୀ ଫୁଲତୋଡ଼ା ଧରି ଅପେକ୍ଷା କରିଥିଲେ ।



# ତରୁଣ ଦାସ ସମ୍ପର୍କରେ

## ଶୀତ ରାତି ।। ଏକା ।।

ଶୀତ ରାତି ।

ଚଉମୁହାଣୀ ଟ୍ରାଫିକ୍ ପୋଷ୍ଟରେ ଠିଆ ହେଇ ତରୁଣ ଦାସ ଚାହେଁ ଦୂରନ୍ତ ଆକାଶ ଆଡ଼େ । ଆକାଶ ଏକ କଳ୍ପନା ତା ପାଇଁ । କାରଣ ଅତି ବେଶି ନିଅନ୍ ଆଲୋକର ଅଶ୍ଳୀଳ ପ୍ରକାଶରେ ଅନ୍ଧ ସେ । ତେଣୁ ଅନୁମାନ କରୁଛି ଆକାଶର ବ୍ୟାପ୍ତି ଏବଂ ଦେଖୁଛି ମୁଣ୍ଡ ଉପରେ ଧଳା ବିଲେଇର ଲୋମ ପରି କୁହୁଡ଼ିର ସ୍ତରୀଭୂତ ଏକ ମୁଲାଏମ୍ ସାମିଆନା ।

ତା ତଳକୁ ତରୁଣ ଦାସର ଦୃଷ୍ଟି ଆକର୍ଷଣ କରୁଥିଲା ଏକ କୃଷ୍ଣଚୂଡ଼ା ଗଛର ଥାକ ଥାକ ସବୁଜ ପତ୍ର ଏବଂ ସେ ପତ୍ର ଫାଙ୍କ ଭିତରୁ ହଠାତ୍ ବାହାରି ଆସିଥିବା ସମାନ୍ତର କେତୋଟି ଟେଲିଫୋନ୍ ତାର । ତରୁଣ ଦାସର ଉପସ୍ଥିତିକୁ ବେଖାତିର କରି ସେ ତା'ର ଉପରେ ଘୁମେଇ ପଡ଼ିଥିଲେ ଦୁଇଟି ରାତି ପକ୍ଷୀ । ମୁକ୍ତ ପକ୍ଷୀ ଦୁଇଟି, ଶୀତ ରାତିରେ ସେମାନଙ୍କର ଦୁଇଟି ଉଷୁମ୍ ଆତ୍ମା । ତରୁଣ ଦାସର ମନେହେଲା ଏ ଦୃଶ୍ୟଟି ତା' ପ୍ରତି ଗୋଟାଏ ଆହ୍ୱାନ ।

ଶୀତ ରାତିର ସ୍ଥିର ପରିବେଶରେ ଯାହା ଆଲୋଡ଼ନ ସୃଷ୍ଟି କଲା ସେ ତରୁଣ ଦାସର ହାତରୁ ଖସିଯାଇଥିବା ଖଣ୍ଡେ ଇଟା । ଲକ୍ଷ୍ୟ ନିର୍ଭୁଲ୍ ଥିଲା, କିନ୍ତୁ ପକ୍ଷୀ ଦୁଇଟି

ଦେହରେ ବାଜିବା ପୂର୍ବରୁ ଟେଲିଫୋନ୍ ତାରରେ ବାଧାପାଇ ଇଟା ଖଣ୍ଡକ ଖସିପଡ଼ିଲା । ତରୁଣ ଦାସକୁ ଉପହାସ କରି ସେମାନେ ଉଡ଼ିଗଲେ ।

ଟେଲିଫୋନ୍ ତାରର ଅସଂଗତ ଅର୍କେଷ୍ଟ୍ରା ହଠାତ୍ ତରୁଣ ଦାସକୁ ବିବ୍ରତ କଲା । ଶୀତ ରାତିରେ ଜଳି ଯାଉଥିବା ମନ ସହିତ ଏ ସ୍ୱର ନିତାନ୍ତ ଅପରିଚିତ, ତଥାପି ବର୍ତ୍ତମାନର ଅନୁଭବରେ ଯେମିତି ଖୁବ୍ ତୀବ୍ର ଏବଂ ଉତ୍କଟ । ସେଇ ତା'ର ଭିତରେ ଛନ୍ଦିହେଇ ଚାଲିଛି ତା'ର ମନ କିଛି ଆଗକୁ ।

ତରୁଣ ଦାସ ନିର୍ବୋଧ ବ୍ୟକ୍ତିଟିଏ ପରି ଉପରକୁ ଚାହିଁଛି ।

ଅରଣ୍ୟ ବଂଲୋଟିଏ ପରି ପୁରୁଣା ସହରର ଉପକଣ୍ଠରେ ଯେଉଁ ସିମେଣ୍ଟ ରଙ୍ଗର ଏକୁଟିଆ ଏକମହଲା କୋଠା ଘର, ସେଇଟି ବାରିଷ୍ଟର ସୁବୋଧ ଦାସଙ୍କର । ସେଇ ଘରର ଏକ ଅଭିଜାତ ଡ୍ରଇଂ ରୁମ୍‌ରେ ତରୁଣ ଦାସ ଦେଖୁଥିଲା ଗୋଟାଏ ବିରାଟ୍ ଗୋଲ୍ ଟେବୁଲ୍‌କୁ ବେଢ଼ିକରି ବସିଥିବା ଗୁଡ଼ାଏ ମଣିଷ ଏବଂ ଟେବୁଲ୍ ଉପରକୁ ଝୁଙ୍କି ପଡ଼ିଥିବା ଗୋଟିଏ ମୁହଁ ।

ଟେବୁଲ୍ ଉପରେ ସ୍ଥିର ହେଇଥିବା ମୁହଁଟି ସୁବୋଧ ଦାସଙ୍କର ଏବଂ ତାଙ୍କୁ ବେଢ଼ି କରି ବସିଥିବା ଲୋକମାନେ ତାଙ୍କର ମହକିଲ୍ ।

ସୁବୋଧ ଦାସ ଗୋଟେ ଫୋନ୍ କଲ ଏଟେଣ୍ଡ କରୁଥିଲେ । ତାଙ୍କ କଣ୍ଠ ସ୍ୱର ସହିତ ମୁହଁର ଭାବଭଙ୍ଗୀ, ପୁଣି ହାତଟିରେ ମୃଦୁ ଶିହରଣ ସବୁଥିରେ ଯେମିତି କିଛିବର୍ଷ ତଳକୁ ଖସିଯିବାର ଛାପ । କିଛିବର୍ଷ ତଳକୁ ଅର୍ଥ, ଯେମିତି ପ୍ରୌଢ଼ ସୁବୋଧ ଦାସ କଲେଜରୁ ଫେରି ହଠାତ୍ ବାପାଙ୍କୁ ଅନୁପସ୍ଥିତ ଦେଖି କୌଣସି ବାଳିକା ବନ୍ଧୁଙ୍କ ଫୋନ୍ ନମ୍ବର ଉଦ୍ଦେଶ୍ୟରେ ଡ଼ାଏଲ୍ ଘୂରାଉ ଥିଲେ ।

ହେଃ..., ସୁବୋଧ ଦାସ କେମିତି ଯୁବକ ହେଇପାରିବେ ! ବିରକ୍ତିକର ମନେହେଲା ତରୁଣ ଦାସକୁ, ଆହୁରି ବିରକ୍ତିକର ସୁବୋଧ ଦାସଙ୍କର କେତେଗୋଟି ଅସମ୍ପୂର୍ଣ୍ଣ ସଂଳାପ- 'ଉର୍ବଶୀର ବୋଧହୁଏ ଧନପାଇଁ ଅହଙ୍କାର ନଥିଲା...' କିମ୍ବା 'ସେଦିନ ପରି ପ୍ଲେନ୍‌ଟା ଯଦି ଦୁଇଘଣ୍ଟା ବିଳମ୍ବିତ ହୋଇଯାନ୍ତା ସୁଷମା...' ।

ଅସହାୟ ସୁବୋଧ ଦାସ ଅତି ଦୟନୀୟ ଭାବେ ଅପେକ୍ଷା କରିଥିଲେ କାଳ୍ପନିକ ଉର୍ବଶୀ ବା ସୁଷମାର ଉତ୍ତରକୁ । କିଛି ସମୟ ପରେ ସେ ଦ୍ୱିଧାଗ୍ରସ୍ତ ମୁହଁରେ ହସର ଏକ ଛୋଟ ରେଖା ଦେଖା ଦେଇ ମିଳେଇ ଗଲା କ୍ରମେ ।

ତରୁଣ ଦାସର ଆଖି ସ୍ଥିର ହେଲା ସମାନ୍ତର ସେଇ ଟେଲିଫୋନ୍ ତା'ର ଉପରେ, କେତେ ଜନ୍ମ-ମୃତ୍ୟୁ, ପ୍ରେମ-ବିରହ, ଅଭିନନ୍ଦନ-ଏକ୍ସିଡ଼େଣ୍ଟ..., ସବୁ ଚାଲିଯାଉଛି ଆମ ମୁଣ୍ଡ ଉପରେ। ଆଖିରେ ଦେଖିବି କିଛି ବୁଝି ହେଉନି। ଅଥଚ ସବୁବେଳେ ଘଟୁଛି କିଛି।

ହଠାତ୍ ଏଇ ଘଟିବାଟାକୁ ଯଦି ସ୍ଥିର କରିଦିଆଯାଇ ପାରନ୍ତା, ତରୁଣ ଦାସ ଭାବୁଥିଲା ମନେ ମନେ।

ଗୋଟାଏ ଆକସ୍ମିକ ଝଡ଼ରେ ଟେଲିଫୋନ୍ ଖୁଣ୍ଟି ସବୁ ଉପୁଡ଼ି ପଡ଼ନ୍ତେ ଏବଂ ପରଦିନ ଏକ ଶାନ୍ତ ସକାଳରେ ସୁବୋଧ ଦାସ ବେଡ୍‌ଟି' ପରେ ସେ ଦିନର ଏନ୍‌ଗେଜ୍‌ମେଣ୍ଟ ସ୍ଥିର କରିବାକୁ ଉର୍ବଶୀ କିମ୍ବା ସୁଷମା ଉଦ୍ଦେଶ୍ୟରେ ଫୋନ ଉଠାନ୍ତେ... ଲାଇନ୍ ଡିଜ୍ ଅର୍ଡ଼ର... ଏକ୍ସଚେଞ୍ଜରୁ ଆଉ କିଛି ଶୁଣାଯାନ୍ତା ନାହିଁ। ବିଚାରା ସୁବୋଧ ଦାସ ପରବର୍ତ୍ତୀ ମୁହୂର୍ତ୍ତରେ ହାଲୋ... ହାଲୋ... କହି ବଡ଼ ବିବ୍ରତ ହେଇ ପଡ଼ନ୍ତେ। ମୁହଁର ଭଙ୍ଗୀ ଅସହାୟ ଦେଖାଯାନ୍ତା, ଠିକ୍ ଗୋଟିଏ ମଦ୍ୟପିତ ମଣିଷର ଖଣ୍ଡିଏ ଚିକେନ୍‌ରୁ ଝୁଣି ଝୁଣି ଖାଉଥିବା ପରି ବିକୃତି। ଡ୍ରଇଂ ରୁମ୍‌ଟାରେ ସକାଳୁ ସକାଳୁ ଏକ ଅପ୍ରତ୍ୟାଶିତ ଗଣ୍ଡଗୋଳର କାରଣ ବୁଝି ନପାରି ଉପର ମହଲରୁ ସ୍ତ୍ରୀ ଏବଂ ପିଲାମାନେ ଦଉଡ଼ି ଆସନ୍ତେ ଏବଂ ଦେଖନ୍ତେ ସାମାନ୍ୟ ଆମିଷ ଗନ୍ଧ ପାଇଁ କେମିତି ମୂଷାଟି ଜନ୍ତାଭିତରେ ପଡ଼ିଯାଇ ଛଟପଟ ହେଉଛି।

ନାଁ... ନାଁ, ବିଶେଷ କିଛି ହେଇନି- ଏଇ ଗୋଟେ କଲ୍ କରୁଥିଲି ଯେ ଲାଇନ୍ ଡ଼ିଜ୍ ଅର୍ଡ଼ର- ତଥାପି ଆତ୍ମରକ୍ଷାର ଗୋଟେ କୌଶଳ ହେଇପଡ଼ନ୍ତା ସୁବୋଧ ଦାସଙ୍କ ପାଇଁ। ସ୍ତ୍ରୀ ପିଲାମାନେ ଫେରିଯାନ୍ତେ। ସୁବୋଧ ଦାସ ଜଣେ ସନ୍ଦେହଜନକ ବ୍ୟକ୍ତି ନୁହଁନ୍ତି, ସେ ତାଙ୍କ ହାତଗଢ଼ା ସମାଜରେ ରୁଚିଶୀଳ ଭଦ୍ରଲୋକ, ଏ ଶତାବ୍ଦୀର ଲଙ୍ଗଳା ପିଲାଙ୍କ ପରି ସେ ଅଶ୍ଳୀଳ ନୁହଁନ୍ତି।

ତରୁଣ ଦାସ ନିଜ ମୁହଁ ଉପରେ ଥରେ ହାତ ବୁଲେଇ ନେଲା। ଗାଲ ଦୁଇଟି ମିଶିଯିବା ପାଇଁ ବ୍ୟବଧାନ ଖୁବ୍ ଅଳ୍ପ। ମୁହଁର ବିଭିନ୍ନ ଅଂଶରେ ବଡ଼ ବଡ଼ ବ୍ରଣ କେତୋଟି। ସୁବୋଧ ଦାସଙ୍କ ସମ୍ପ୍ରଦାୟ ମତବ୍ୟକ୍ତ କରନ୍ତି, ବାରମ୍ବାର ବ୍ରହ୍ମଚର୍ଯ୍ୟ ନଷ୍ଟ ଫଳରେ ତରୁଣ ଦାସମାନଙ୍କର ମୁହଁ ଅବସ୍ଥା ଶୋଚନୀୟ। ସେଥିପାଇଁ ସମୟ ସମୟରେ କେଡ଼ା ମୁରବୀତ୍ୱ ପ୍ରକାଶ ପାଏ, ଯେମିତି ଆଜିକାଲି ଯୁବକମାନେ ସେମାନଙ୍କର ଅଧିକ ସମୟ ଯୌନ ଚର୍ଚ୍ଚାରେ କଟାନ୍ତି। ଅବଶ୍ୟ ଏ ପ୍ରକାର ମତ ନିହାତି ଅଯୌକ୍ତିକ ନୁହେଁ

ଯେହେତୁ ସୁବୋଧ ଦାସର ପ୍ରତିନିଧିମାନେ ଏତେଟା ଅଶ୍ଳୀଳ ନୁହଁନ୍ତି, ବେଶି ହେଲେ ସେମାନେ କେତେବେଳେ ଦୁଇଟି ଲଙ୍ଗଳା ପାଦରେ ଦୁଇଧାର ଅଳତା ଗାର ଦେଖି ଖୁସି ହେଉଥିବେ କିମ୍ବା ମିନି ସ୍କର୍ଟ ପିନ୍ଧା ଝିଅମାନଙ୍କର ହାତକୁ ପ୍ରାଇଜ୍ ପ୍ୟାକେଟ୍ ବଢ଼ାଉ ବଢ଼ାଉ ସେ ନରମ ଲାଲ୍ ପାପୁଲିଗୁଡ଼ିକୁ ନିଜ ହାତରେ ଚାପି ଦେଉଥିବେ ଏବଂ ସେମାନଙ୍କର ନିର୍ଦ୍ଦୋଷ ଗାଲରେ କାମନାରହିତ ଛୋଟ ଚାପୁଡ଼ା ମାରୁଥିବେ ।

ତରୁଣ ଦାସ ନିଜକୁ ବୁଝାଉଥିଲା । ସେମାନଙ୍କୁ କ୍ଷମା ଦିଆଯାଇପାରେ । ମଣିଷକୁ ବୁଢ଼ା କରିବାରେ ବୟସ ବୋଲି ଯେଉଁ ମାପକାଠିଟି ହୁଏତ ଆଗେଇ ଯାଇଛି କିଛିବାଟ, କିନ୍ତୁ ସେମାନଙ୍କର ପ୍ରାଣ ଏଇ କୃଷ୍ଣଚୂଡ଼ାର ପତ୍ରପରି ସବୁଜ । ତେଣୁ ସୁବୋଧ ଦାସଙ୍କ ପାଇଁ ଟେଲିଫୋନ୍ ତାରମାନେ ଅଧିକ ଅଧିକ ସକ୍ରିୟ ହେଇପାରନ୍ତି ।

ରାତି କାକର ବିନ୍ଦୁରେ ତରୁଣ ଦାସର ବ୍ଲେଜର ଖଣ୍ଡକ ହେମାଳ ଲାଗିଲାଣି । ସେ ଲକ୍ଷ୍ୟକଲା ତା ସାମ୍ନାରେ ଧାଡ଼ି ବାନ୍ଧି କ୍ୱାର୍ଟରମାନଙ୍କରୁ ଆଲୋକ ସବୁ ଲିଭିଗଲାଣି । କେବଳ ସ୍କାଇଲାଇଟ୍‌ରେ କେଉଁଠି କେମିତି ଜିରୋ ପାୱାର ବଲ୍‌ବର ଦୁଃସ୍ଥ ପ୍ରକାଶ ଏବଂ ହାଲି ତିଆରି ହୋଇଥିବା ପୋର୍ଟିକୋ ମାନଙ୍କରେ ନୀଳ ଆଲୋକ । ସେଗୁଡ଼ିକ ବି କୁହୁଡ଼ିର ଆଢୁଆଳରେ ସେତେ ସ୍ପଷ୍ଟ ନୁହେଁ । ସେମାନେ ଯେମିତି ଶୀତ ରାତିରେ ଅସହାୟକଭାବେ ଜଳୁଛନ୍ତି ତରୁଣ ଦାସପରି ।

ପୋର୍ଟିକୋକୁ ଲାଗି ଛୋଟ ଲନ୍- ସେଥିରେ ଅନେକ ଫୁଲ ଆଉ ଅନ୍ୟାନ୍ୟ ଗଛ, ଗୋଟିଏ ସ୍ୱର ପାଇଁ ଯେମିତି ଅର୍କେଷ୍ଟ୍ରାର ଭିନ୍ନ ଭିନ୍ନ ବାଦ୍ୟଯନ୍ତ୍ର । ଏଇ ଫୁଲମାନେ ହୁଏତ ସେ କ୍ୱାର୍ଟରରେ ଶୋଇଥିବା ଲୋକମାନଙ୍କର ଇଛା । ଦୂରରୁ ରହି ତରୁଣ ଦାସ ଦେଖେ କେବଳ, କିନ୍ତୁ ଠିକ୍ କରିପାରେନା ଫୁଲମାନଙ୍କର ରଙ୍ଗ ।

ଭଲ, ଏଇ ଦୂରରୁ ରହି ଫୁଲର ଝାପ୍‌ସା ରୂପ ଦେଖିବା । କିଛି ଲାଭ କ୍ଷତିର ପ୍ରଶ୍ନ ନାହିଁ, ବରଂ ହାଲ୍‌କା ମନରେ ଘୂରିବାରେ କିଛିଟା ଆତ୍ମତୃପ୍ତି ।

କିନ୍ତୁ ଏଇ ତୃପ୍ତିଟାଇ ଦ୍ୱନ୍ଦ୍ୱ, ମନେ ମନେ ଯୁକ୍ତିକରେ ତରୁଣ ଦାସ । ହାତରେ ପାଇ ପୁଣି ହରେଇବାରେ ଅତୃପ୍ତି କାହିଁକି ! ତା'ହେଲେ ତୃପ୍ତି ବୋଲି ଗୋଟେ କିଛି ନାହିଁ । ଯଦି ଥାଏ ତାହା ଏକ ମାନସିକ ବୁଝାମଣା ।

ସତରେ ଅଛି କି !

ନାଁ, ନାହିଁ ବୋଧହୁଏ... ! ! !

ତରୁଣ ଦାସର ମନେ ପଡ଼ିଯାଏ ଶୀତରାତି ଆଠଟାରେ ବଡ଼ ବଜାରର ସାମ୍ନାରେ ସେ ଚଉଡ଼ା ରାସ୍ତା ଏବଂ ରାସ୍ତାକଡ଼ର ଫୁଟ୍‌ପାଥ୍। ସନ୍ଧ୍ୟା ସାତଟାରୁ ସେ ଫୁଟ୍‌ପାଥ୍ ଉପରେ ଗୋଟାଏ ଆରମ୍ଭରୁ ଆର ଶେଷ ପର୍ଯ୍ୟନ୍ତ ମାର୍ଚ୍ଚ କରିବା ଏକ ମାନସିକ ତୃପ୍ତି, ନାଁ ଅତୃପ୍ତି ! ପୁଣି କେତେ ପେକେଟ୍ ଚାରମିନାର୍ ଟାଣି ଟାଣି ଲାଲ୍ ସ୍ୱେଟର ଉପରେ ଫୁଟି ଦିଶୁଥିବା ଝିଅମାନଙ୍କର ବକ୍ଷକୁ ଚାହିଁବା କିମ୍ବା ସେମାନଙ୍କ ମୁହଁର ରଙ୍ଗକୁ ପରୀକ୍ଷା କରିବାର ଆବଶ୍ୟକତା କ'ଣ !

ତରୁଣ ଦାସ ତା' ମାନସିକ ଅବସ୍ଥାକୁ ନେଇ ଏଇ ସିଦ୍ଧାନ୍ତରେ ପହଞ୍ଚେ ଯେ ତୃପ୍ତି ଏକ ଅନୁଭବ। ଅବଶ୍ୟ ଏଇ ଜିନିଷଟା ସେ ପରୀକ୍ଷା କରିଛି ନିଜ ଭିତରେ। କାରଣ ଅନ୍ୟ ସ୍ଥାନରେ ଉଚିତ୍ ମୂଲ୍ୟରେ ଗୋଟେ ପଦାର୍ଥ ମିଳୁଥିଲାବେଳେ ତରୁଣ ଦାସ କାହିଁକି ତାହା ସେ ସରକାରୀ ଷ୍ଟୋର୍‌ରେ କିଣିବାକୁ ପସନ୍ଦ କରେ। ତରୁଣ ଦାସର କୌଣସି ଜିନିଷ ଅପେକ୍ଷା ବେଶି ଆକର୍ଷଣୀୟ ସେ ସେଲ୍‌ସ ଗାର୍ଲର ଦୁଇଟି ଉଦାସ ଆଖି ଏବଂ ତା ଅପ୍ରଶସ୍ତ କପାଳରେ ଧାରେ ଚନ୍ଦନ ସହିତ ଫିକା ଲାଲ୍ କୁଙ୍କୁମ ଠୋପାଟି।

ଯାଃ, ଯେତେସବୁ ବାଜେ କଥା ମୁଣ୍ଡକୁ ଆସୁଛି। ତରୁଣ ଦାସ ସଚେତନ ହେଲା ଏବଂ ହଠାତ୍ ଅନୁଭବ କଲା ଯେ ସେ ଶୀତରେ ପୂରା ଥରୁଛି। ଖଣ୍ଡେ ସିଗ୍ରେଟ୍‌ରେ ନିଆଁ ଧରାଇ ସେ ଧୀରେ ଧୀରେ ଟ୍ରାଫିକ୍ ଷ୍ଟାଣ୍ଡ ଉପରକୁ ଉଠିଲା। ସେଠାରୁ ଅଳ୍ପ ଦୂରରେ ଧୁନୀ ଜାଳି ଖଞ୍ଜଣୀମାଡ଼ କରୁଥିବା ସାଧୁମାନଙ୍କର ଉପସ୍ଥିତିକୁ ଅସ୍ୱୀକାର କରି ତରୁଣ ଦାସ ମୂତ୍ର ତ୍ୟାଗ କରିବାକୁ ଲାଗିଲା।

ଶୀତ ରାତିରେ ଅନ୍ୟମାନଙ୍କର ଉପସ୍ଥିତିକୁ ବେଖାତିର କରିବା ତରୁଣ ଦାସର ଏକ ସଉକ୍।

ବିଚରା ତରୁଣ ଦାସ, ବେକେ ପାଣିରେ ଠିଆ ହୋଇ ଚାହିଁଛି ସେ କ୍ୱାର୍ଟରମାନଙ୍କ ଆଡ଼େ...।

ସେ ଶେଷଥର ପାଇଁ ସେ ଧାଡ଼ିବନ୍ଧା ଅସ୍ପଷ୍ଟ କ୍ୱାର୍ଟରମାନଙ୍କ ଆଡ଼େ ଚାହିଁଲା। ଦେହଟା ତଥାପି ଥରୁଛି। ପକେଟ୍‌ରେ ସିଗ୍ରେଟ୍ ନାହିଁ। ପୁଣି ଗୋଟେ ପେକେଟ୍ କିଣାଯାଇ ପାରେ ଏବଂ ସେଇ ଛକ ପାନ ଦୋକାନରୁ ନୂଆ କରି ଯାତ୍ରାଟି ଆରମ୍ଭ କରାଯାଇପାରେ।

ତରୁଣ ଦାସ ପକେଟ୍‌ରୁ ଅଧୂଲିଟିଏ ବାହାର କରି ତା'ର ପରିଚିତ ପାନ ଦୋକାନୀ ଆଗେ ହାତ ବଢ଼ାଇଛି... ଆବଶ୍ୟକ ଗୋଟିଏ ପକେଟ୍ ଚାର୍‌ମିନାର୍, ପାନ ଦୋକାନୀ ଚାପି ଚାପି ହସିବାକୁ ଆରମ୍ଭ କରିଦେଇଛି ।

ବାହାରିଲା ଶଳାର ବଜାରୀ ଢ଼ଙ୍ଗ... ମନେ ମନେ ବିରକ୍ତ ହେଇ ଆସୁଥିଲା ତରୁଣ ଦାସ ।

ଯେତେ ସବୁ ବଜାରୀ ଢ଼ହରା ଏଇ ରାସ୍ତା ଛକର ପାନ ଦୋକାନୀମାନେ । ବର୍ତ୍ତମାନ ଏକୁଟିଆ ଦେଖି ହସିବାକୁ ଆରମ୍ଭ କରିଛି ସେ । କଣଟା ଏବେ ଜାଣିଛି ! ବେଶି ହେଲେ କହିପାରେ ଏକଦା ଚନ୍ଦ୍ରାବତୀ ତରୁଣ ଦାସର ପ୍ରେମିକା ଥିଲା ଏବଂ ଦିନାକେତେ ବେଶ୍ ଦି'ଜଣ ଉଡ଼ିଛନ୍ତି... ଏୟା ତ ଆଉ କ'ଣ !

ସମୟରେ ତରୁଣ ଦାସ୍ ଅନୁତାପ କରେ । ଚନ୍ଦ୍ରାବତୀକୁ ସାଙ୍ଗରେ ଧରି ଏମିତି ପାନ ଦୋକାନୀଙ୍କ ଠାରୁ ପାନ ଖାଇବା ବିରାଟ ଭୁଲ୍ । ଇସ୍, କେଡ଼େ ବଜାରୀଟେ- ପାନରେ ଚୂନ ଲଗାଉ ଲଗାଉ ଚାହିଁଥିବ ସେମିତି ଚନ୍ଦ୍ରାବତୀ ଆଡ଼େ । ସେତେବେଳେ ଏ ଦୟନୀୟ ପରିସ୍ଥିତିରୁ ନିଜକୁ ମୁକ୍ତ କରିବା ପାଇଁ ତରୁଣ ଦାସ ଚନ୍ଦ୍ରାବତୀ ସହିତ ଅନ୍ୟ କଥା ଆରମ୍ଭ କରିଦିଏ । ଚନ୍ଦ୍ରାବତୀ କିନ୍ତୁ ସେହି ସମୟତକ ପାନ ଦୋକାନୀ ସହିତ ନଷ୍ଟ କରେ- କଉ ମସଲାରୁ କେତେ, ଟିକେ ଚମନବାହାର ପଡ଼ିବ କି ନାହିଁ ଇତ୍ୟାଦି । ପାନ ଦି'ଖଣ୍ଡ ମୋଡ଼ି ଦେଇ ଚନ୍ଦ୍ରାବତୀ ହାତକୁ ବଢ଼ାଇ ଦିଏ ଏବଂ ତରୁଣ ଦାସ ଦଶ ପଇସିଟିଏ ବଢ଼ାଇ ଦେଲାବେଳେ ସେ ହସିଦିଏ । ଓଃ, କେଡ଼େ ଅସହ୍ୟ ସେ ହସ ।

ତରୁଣ ଦାସ ମନେ ମନେ ଠିକ୍ କରେ ଏ ଶଳାଟାଠାରୁ ପାନ ନଖାଇବା ଭଲ । କିନ୍ତୁ ଚନ୍ଦ୍ରାବତୀର ଏକାନ୍ତ ଜିଦ୍ । ଚନ୍ଦ୍ରାବତୀ ବିଭା ହୋଇଯାଇଛି, ତରୁଣ ଦାସ ରାତି ଦୁଇଟାରେ ରାସ୍ତାରେ ଘୁରୁଛି- ଏଇ ହେଲା ଦୋକାନୀର ହସିବା କାରଣ ।

ତରୁଣ ଦାସ ଦେହରେ ନିଆଁ ଲାଗିଛି । ସେ ନିଜକୁ ଆୟତ୍ତ କରିପାରୁନି । ତା ପାଟି କ୍ରମେ ଖୋଲିଯାଉଛି ।

– କାହିଁକି ବେ ଏମିତି ଅଭଦ୍ରଙ୍କ ପରି ହଉଛୁ ? ମୋ ବିଷୟରେ କ'ଣ ଜାଣୁ... ଆଁଏ.... ଆଁଏ, କ'ଣ ଜାଣିଛୁ ? ଯାଣୁ ଚନ୍ଦ୍ରାବତୀ ସମ୍ପର୍କରେ ମୋର ଭଉଣୀ... ସେଥିପାଇଁ ମୋ ସହିତ ତା'ର ଅବାଧ ମିଳାମିଶି... ଶଳା ମନେ ମନେ ଭାବି ନେଇଛି ମୋର

ପ୍ରେମିକା ବୋଲି । ଆ... ମୋ ଘରେ ଦେଖିବୁ ତା'ର ଟିକେ ଯଦି ଚିହ୍ନବର୍ଣ୍ଣ ଅଛି... ଖଣ୍ଡେ ଫଟୋ ଥିଲା, ଏଇ ତମରିମାନଙ୍କ ଦାଉରୁ ରକ୍ଷା ପାଇବା ପାଇଁ ସେ ଖଣ୍ଡକ ଟୁକୁରା ଟୁକୁରା କରି ଚିରି ସେଥିରେ ପରିସ୍ରା କରିଦେଇଛି । ମୁଁ ତୋ ପରି ଲଫଙ୍ଗା ନୁହେଁ, ମୁଁ ଚନ୍ଦ୍ରାବତୀକୁ କେୟାର କରେ ନା... କ'ଣ ଭାବିଛୁ ମୋତେ ?

ତଥାପି ପାନ ଦୋକାନୀ ହସୁଛି ।

ନାଁ, ଶଳାଟାର ପିଠି ଗଲୁକଲାଣି । ଚିହ୍ନିଛୁ ମୋତେ ? ଇଚ୍ଛା କଲେ ଜୋତାରେ ଗାଲ ସେକି ଦେବି କଉ ବୋପା ପିଠିରେ ପଡ଼ିବେନି । ଜାଣିଛୁ... ଜାଣିଛୁ..., ତରୁଣ ଦାସ ତା ଜୋତାର ଲେସ ଖୋଲୁଛି । ତା ପାଟିରେ ରାସ୍ତା କଡ଼ର କୁକୁରମାନେ ଭୁକି ଉଠିଲେ । ପାଖ ଗଛରୁ ପକ୍ଷୀ ଉଡ଼ିଗଲେ । ତରୁଣ ଦାସ ପ୍ରକୃତିସ୍ଥ ହେଲା ଏବଂ ଦେଖିଲା ବିରାଟ ଦର୍ପଣରେ ନିଜର ପ୍ରତିବିମ୍ବ ଦେଖିଥିବା କୁକୁରଟି ପରି ରାଗରେ ସେ ଥରୁଛି । ପାନ ଦୋକାନୀ ଅନେକ ଆଗରୁ ଦୋକାନ ବନ୍ଦ କରି ଚାଲିଯାଇଛି ।

ତରୁଣ ଦାସ ଆଗଉଥିଲା ପ୍ଲାଟଫର୍ମର ଅନ୍ଧକାର ତଳି ଅଞ୍ଚଳଆଡ଼େ । ଏ ନିର୍ଜନ ରାଜପଥରେ ସେ କେବଳ ବର୍ତ୍ତମାନ ଜୀବନ୍ତ । ବିରାଟ ସହରର ପ୍ରତ୍ୟେକ କୋଠରୀରେ ସୁବୋଧ ଦାସ ମାନେ ବନ୍ଦୀ ସୈନିକ ପରି ।

ଅଞ୍ଚଳଟି ସମ୍ପୂର୍ଣ୍ଣ ଅନ୍ଧକାର । ସବୁ ଚୁପ୍‌ଚାପ୍ । ସେ ଭିତରେ ନିରବ ସେଣ୍ଟ୍ରି ପରି କେତୋଟି ଛାଇ । ଚଳପ୍ରଚଳ ସେମାନେ ।

ତରୁଣ ଦାସ ଅନୁଭବ କଲା ସେଇ ଅନ୍ଧାର ଭିତରେ ତା ହାତକୁ କେହି ଜୋର କରି ଟାଣୁଛି । ସ୍ପର୍ଶଟା କିଛି ପରିମାଣରେ ଚିହ୍ନା, ନୂଆ ନହେଲେ ବି ଅଳ୍ପ ଦିନର ଗ୍ରାହକ ଯେହେତୁ । ତରୁଣ ଦାସ ପାଇଁ ସମସ୍ତ ପୃଥିବୀ ଅନ୍ଧକାର ହେଇଗଲା ସେଇ ସମୟଟାରେ ।

ପଚାଶ ପଇସାରେ ତଥାପି ଶୀତ ରାତିକୁ ଅସ୍ୱୀକାର କରି ଏକ ସାମୟିକ ସନ୍ତୋଷରେ ତରୁଣ ଦାସ ଦେଖୁଥିଲା ସୁବୋଧ ଦାସଙ୍କ ଏକୁଟିଆ ଘର ଏବଂ ବଡ଼ ବଜାର ସାମ୍ନାରେ ସେ ଧାଡ଼ିବନ୍ଧା କ୍ୱାର୍ଟରଗୁଡ଼ିକରେ ନିଆଁ ଲାଗିଛି ଏବଂ ସେ ଉତ୍ତାପରେ ସେମାନଙ୍କର ବିକଳ ଆତ୍ମାମାନେ ଛଟପଟ କେମିତି... ! ! !

# ଶୀତ ରାତି ।। ଦୁଇ ।।

ପୁନଶ୍ଚ ଶୀତ ରାତି ।

ତରୁଣ ଦାସ ଆମେରିକା ସରକାର ଦ୍ୱାରା ଆୟୋଜିତ ଚନ୍ଦ୍ରଶିଳା ପ୍ରଦର୍ଶନୀରୁ ଫେରିଥିଲା ଠିକ୍ । ଚନ୍ଦ୍ରଶିଳା ବାଦାମ ରଙ୍ଗର ପଥର ଖଣ୍ଡଟେ, ଗୋଟିଏ କାଚ ପାତ୍ରରେ ଏକ ଟୁକୁରା କଳିଜା ପରି । ତା'ପରଠାରୁ ଚନ୍ଦ୍ର ସମ୍ପର୍କରେ ତରୁଣ ଦାସ ମନରେ ସଞ୍ଚିତ ସମସ୍ତ କୋମଳ ଅନୁଭୂତି କ୍ଷତବିକ୍ଷତ ହୋଇଗଲା । ଚନ୍ଦ୍ରପୃଷ୍ଠରେ ଠେକୁଆ ଏକ କଳ୍ପନା ଏବଂ ତାକୁ ସୁନା ରୂପରେ ପାଇବା ପାଇଁ ତଅପୋଇର ଜିଦ୍ ଓ ତଦ୍‌ଜନିତ ଚେଷ୍ଟାରେ ସାଧବ ସାଧବାଣୀର ମୃତ୍ୟୁ ମଧ୍ୟ ଏକ କାହାଣୀ ।

ତରୁଣ ଦାସର ଲୋମମୂଳ କ୍ରମଶଃ ସ୍ଫୀତ ହେଲା । ଭୟଙ୍କର । ଚନ୍ଦ୍ରାବତୀର ଶରୀରରୁ ଯଦି ସମସ୍ତ ଆବରଣ ଖୋଲି ଦିଆଯାଏ । ଦୁଇଟି ଗୋଲ ମାଂସ ପିଣ୍ଡ, ସରୁ କଟି ଏବଂ ତାର ଯୌନାଙ୍ଗ । ଓଃ, କିଏ ଅଛରେ ! ବନ୍ଦ କର ଏସବୁ ଖିଆଲ- ତରୁଣ ଦାସର ଅନ୍ତର ଭିତରେ କେହି କୋରଡ଼ା ପାହାରଟେ କସିଦେଲା ହୁଏତ । ବିଭତ୍ସ । ବିଭତ୍ସ ।

ଆଲୋକିତ କୋଠରୀରେ ନଗ୍ନ ତରୁଣ ଦାସ । ଫ୍ଲାଟ୍ କ୍ୱାର୍ଟରରେ ଛୋଟ ବାଲକନି । ସାମ୍ନାରେ ମହିଳା କଲେଜ, ପାଖରେ ଅସମ୍ପୂର୍ଣ୍ଣ ୱାଟର ଟାୱାର, ଝାପ୍‌ସା ଅନ୍ଧାରରେ ଏକ ଶିଳ୍ପାଞ୍ଚଳର ଭ୍ରମ । ସିଲ୍‌ହଟ ପଟ୍ଟଭୂମିରେ ତମ୍ବା ରଙ୍ଗର ଜହ୍ନ ଏଇ ମାତ୍ର ଆକାଶରେ ଦେଖାଦେଇଛି । ଗୋଟିଏ ସଦ୍ୟ କୁସୁମିତ କନ୍ୟାର ପ୍ରେମ ପରି ଶୀତ ।

ନାଁ, ଚାରିକାନ୍ଥର ସୀମାରେଖାରେ ତରୁଣ ଦାସର ମୃତ୍ୟୁ ଅସମ୍ଭବ ।

ତରୁଣ ଦାସ ଅନ୍ୟମନସ୍କ । ତେବେ ନିଜର ଧାରଣା ଭିତରେ ଥିବା ରାସ୍ତାଟି ଉପରେ ଗୋଡ଼ ଠିକ୍ ଚାଲିଛି । ଖୋଲାପଡ଼ିଆ ।

ଦଳେ ରାତିପକ୍ଷୀଙ୍କର କାକଳୀ ପରି ସୂକ୍ଷ୍ମକଣ୍ଠର ହଟ୍ଟଗୋଳ ଶୁଣାଗଲା । ତରୁଣ ଦାସ ପ୍ରକୃତିସ୍ଥ ହେଲା । କିଛି ଅପ୍ରାପ୍ତ ବୟସ୍କା ତରୁଣୀ । ସେମାନେ ଧାଡ଼ିବାନ୍ଧି ମହିଳା କଲେଜ ଆଡ଼େ ଚାଲିଛନ୍ତି । ସେମାନେ ବୋଧହୁଏ ପ୍ରେମ ବୁଝନ୍ତି । କାରଣ ତରୁଣ ଦାସକୁ ଦେଖିଲା ପରେ ସେମାନେ ବିକ୍ଷିପ୍ତ ହେଲେ ପରସ୍ପରକୁ ଧକ୍କା ମାରି । ସେମାନଙ୍କ

ଅନାବୃତ ଗୋଡ଼ ସବୁ ଉତ୍ତାପ ବିକୀରଣ କରୁଥିଲା । ଶୀତ ରାତିରେ ତରୁଣ ଦାସର ଦେହ ଘର୍ମାକ୍ତ ହେଲା ।

ଚନ୍ଦ୍ରାବତୀ ଶୀତଦିନ ପାଇଁ ଏଣ୍ଡିପୋକର ଏକ ଖୋଳପା ତିଆରି କରିଛି । ତା' ଭିତରେ ସେ ଶୀତର ପ୍ରାଦୁର୍ଭାବରୁ ନିଜକୁ ଉଷ୍ମ ରଖିପାରୁଛି ହୁଏତ । କିନ୍ତୁ ଛତା ତଳେ ରହିବା ଅପେକ୍ଷା ବର୍ଷାରେ ଭିଜିବା କଣ ଅଧିକ ରୋମାଞ୍ଚକର ନୁହେଁ ! ବିଚାରୀ ଚନ୍ଦ୍ରାବତୀ ।

ଗଲା ଫଗୁଣରେ ଚନ୍ଦ୍ରାବତୀର ବାହାଘର ହେଲା । ତା ପୂର୍ବରୁ ଦିନେ ସେ ତରୁଣ ଦାସକୁ ଭେଟକଲା ରାଜପଥର କୌଣସି ଏକ କୃଷ୍ଣଚୂଡ଼ା ଗଛ ମୂଳରେ । ସେତେବେଳେ ଏକଦା ଯୌବନରେ ପ୍ରମତ୍ତ କାଳୀକୁତ୍ତୀ, ଜୀବନର ସମସ୍ତ ମୋହମମତା ତୁଟାଇ ଖୁବ୍ କାକୁସ୍ଥ ହୋଇ ଗଛ ମୂଳରେ ଶୋଇଥିଲା । ଚନ୍ଦ୍ରାବତୀ କହିଲା:

–ବୁଝିଲ ତରୁଣ ଦାସେ, ଏଥର ନୂଆ ଖାତା ଖୋଲିଲା । ତମ ହିସାବ ଉପରେ ଗୋଟିଏ ଛକ ମାରି ଦେଇଛି । କିଛି ଭାବିବନି । ଜାଣୁଛି ତମେ ମୋର ରସିକ ଗ୍ରାହକ । ତେବେ ଯେଉଁ ଲୋକଟି ନାଁରେ ନୂଆଖାତା ଖୋଲିଲି, ତା'ର କିଛି ଦରକାର ନିଶ୍ଚୟ । ନହେଲେ ମୋ ଦ୍ୱାରସ୍ଥ କାହିଁକି ହେଇଥାନ୍ତା !

ହେଲା, ପୋଛି ଦେଲି, ପୋଛିଦେଲି ତମର ସବୁ ସ୍ମୃତିକୁ । ତମେ କିନ୍ତୁ ମରିଗଲ । ଆଜିଠାରୁ ତ ଦୋକାନରେ ତମେ କେବଳ ମାଂସ ବିକ୍ରି କରିବ, ଫୁଲ ନୁହେଁ– ତରୁଣ ଦାସ କହିଲା ।

ତା'ପରେ ତରୁଣ ଦାସ ପ୍ୟାକେଟ୍‌ଟେ ସିଗ୍ରେଟ୍ କିଣି ଫ୍ଲାଟକୁ ଫେରିଥିଲା । ନିଜ ଭିତରେ କିଛିଟା ଯନ୍ତ୍ରଣା । ଚନ୍ଦ୍ରାବତୀ ବୋଧହୁଏ ଜାଣି ପାରିଲା ନାହିଁ ତରୁଣ ଦାସ ତାକୁ ନେଇ ଗୋଟେ ଅନିଶ୍ଚିତ ବସାର କଳ୍ପନା କରିଥିଲା ବୋଲି ।

ଶୀତ ରାତିଟା ତରୁଣ ଦାସ ପାଇଁ ଏକ ଜଞ୍ଜାଳ । ସେତେବେଳେ ଚନ୍ଦ୍ରାବତୀଠାରୁ ଆରମ୍ଭ କରି ଏଇ ଅପ୍ରାପ୍ତ ବୟସ୍କା ତରୁଣୀମାନେ ତା ସାମ୍ନାରେ ଉଲଗ୍ନ ହୋଇ ନୃତ୍ୟ କରନ୍ତି । ରକ୍ତ ତା'ର ରମ୍ ସାଙ୍ଗରେ ମିଶି ଏକ ନୂଆ ପାନୀୟରେ ପରିଣତ ହୁଏ । ତରୁଣ ଦାସ ଜଳେ ।

ତରୁଣ ଦାସ ମହିଳା କଲେଜର ସାମ୍ନା ରାସ୍ତାକୁ ଛୁଇଁଲା । ସେ ରାସ୍ତାରେ ବି ଅନେକ ବାଳିକା ଧାଡ଼ି ବାନ୍ଧି ଚାଲିଛନ୍ତି । କିଛି ଗୋଟିଏ ଉତ୍ସବ ଅଛି ବୋଧହୁଏ ।

ଅନେକଗୁଡ଼ିଏ କାର ପାର୍କ କରିଛି । ସେ ଭିତରେ ଆସିଛନ୍ତି ଭଦ୍ର ସୁବୋଧ ଦାସ ମାନେ, ଯେଉଁମାନେ ତରୁଣ ଦାସକୁ ଘୃଣା କରନ୍ତି । ଯେହେତୁ ତରୁଣ ଦାସ କୌଣସି ପ୍ରକାର ହିପୋକ୍ରାସିକୁ ରୋକ୍‌ଠୋକ୍ ପଦାରେ ପକେଇ ଦିଏ ।

ତରୁଣ ଦାସ କହେ- ତମେ ଶଳେ ଏଇସବୁ ଫଙ୍କସନ୍‌ରେ ନିଜ ସାଙ୍ଗ ସାଥୀମାନଙ୍କ ଝିଅଙ୍କୁ କଡ଼କୁ ଜାକି ନେଇ ଦେହରେ ଉତ୍ତାପକୁ କିଛିଟା ଉପଶମ କର ! କିମ୍ବା ମିସେସ୍ ଅମୁକଙ୍କ ସହିତ କରମର୍ଦ୍ଦନ କଲାବେଳେ ଶୁଷ୍କ ଓଠରେ ଜିଭ ବୁଲାଇ ନେଇ ନିଜର ଅସହାୟତା ପ୍ରକାଶ କର । ମୋର କିନ୍ତୁ ସେ ଧନ୍ଦା ନାହିଁ । ହେଲାତ ଖୋଲାଖୋଲି, ନହେଲେ ହାଡ଼କଟା ଗଳି । ଦେହର କ୍ଷୁଧା ବଡ଼ କଥା, ଲାଜ କ'ଣ !

ତରୁଣ ଦାସ କଡ଼ରେ ଗୋଟିଏ କାର ପାସ୍ କଲା । ତରୁଣ ଦାସର ମନେ ହେଲା ସେଥିରେ ବସିଥିବା ଝିଅମାନେ କୌଣସି ସମ୍ଭ୍ରାନ୍ତ ହୋଟେଲକୁ ବାଉଁଶ ବାସ୍କେଟ୍‌ରେ ବୁହାହୋଇ ଯାଉଥିବା କେତେ ଗୁଡ଼ିଏ ନାଲି କୁକୁଡ଼ା ।

ଶୀତ ରାତିରେ କୁକୁଡ଼ା ମାଂସ । ତରୁଣ ଦାସର ଓଠଦେଇ ବୁନ୍ଦାଏ ଲାଳ ବହି ଆସିଲା ।

ଆଗରେ କାର୍‌ଟା ପାର୍କ କଲା । ତରୁଣ ଦାସ ଅପେକ୍ଷାକୃତ ଲମ୍ବା ଷ୍ଟେପ୍ ପକେଇବାକୁ ଭଲ ମନେ କଲା । ଅଳସ ଭିଡ଼ି ପାଞ୍ଚ, ଛ'ଟି ଯୁବତୀ (କିମ୍ବା ମାଇକିନା) ପଦାରେ ଠିଆ ହେଲେ ଏବଂ ଜଣେ ପ୍ରୌଢ଼ ପାଖ ପାନ ଦୋକାନରୁ କେତେଟା ପାନ ବରାଦ କଲେ । ସେଇ ଝିଅମାନଙ୍କ ଭିତରେ ଜଣେ ଚନ୍ଦ୍ରାବତୀ ବୋଲି ତରୁଣ ଦାସ ଆଶ୍ଚର୍ଯ୍ୟ ହେଲା । ଚନ୍ଦ୍ରାବତୀ ଅପ୍ରତ୍ୟାଶିତ ।

ଚନ୍ଦ୍ରାବତୀ ହସିଲା, ତରୁଣ ଦାସ ବି । ସେ ହସର ବିଶେଷତ୍ୱ ବା କ'ଣ ?

ଦାନ୍ତୁରୀ ଝିଅର ହସ- କାନ୍ଦ ସମାନ ପରି ଉଭୟଙ୍କର ହସ । ଯେମିତି ତାକୁ ଅର୍ଥ କରାଯାଇପାରେ ।

ଗୋଟିଏ ଅସ୍ଥିର ପରିବେଶରୁ ମୁକ୍ତି ପାଇବା ପାଇଁ ତରୁଣ ଦାସ ପାଖ ପାନ ଦୋକାନରେ ପାନ ବରାଦ କଲା । ସେତେବେଳେ ପ୍ରୌଢ଼ ଜଣକ ତା ପୋଷାକପତ୍ର ଏବଂ ଚେହେରା ପ୍ରତି ଆଗ୍ରହୀ ହୋଇଥିଲେ ।

ଦୋକାନୀ ପାନ ଦେଲା ପରେ ତରୁଣ ଦାସ ବୁଝିଲା ସେ ଅଧିକ ଖଣ୍ଡେ ବିଡ଼ିଆ ପାନ ପାଇଁ ବରାଦ କରିଛି । ଚନ୍ଦ୍ରାବତୀ ସବୁବେଳେ ବିଡ଼ିଆ ପାନଟେ ପାଇଁ

ଜିଦ୍ କରେ । ତରୁଣ ଦାସ ହାତରୁ ପାନଟେ ନେବା ପାଇଁ ଚନ୍ଦ୍ରାବତୀର କିଛି ସଙ୍କୋଚ ନଥିଲା ଯଦିଓ ପ୍ରୌଢ଼ ଜଣକ ସେଥିପ୍ରତି କିଛିଟା ଆଗ୍ରହ ପ୍ରକାଶ କରୁଥିଲେ ।

ତରୁଣ ଦାସ ସ୍ଥିର । ଚନ୍ଦ୍ରାବତୀ ଅନ୍ୟମାନଙ୍କ ସହିତ ଅଡ଼ିଟୋରିୟମ୍‌ରେ ପଶିଲା ।

ସୁଅର ପ୍ରତିକୂଳରେ ତରୁଣ ଦାସ । ଶୀତରାତି ସବୁବେଳେ ନୂଆ । କିନ୍ତୁ ପୁରୁଣା ହେଇଗଲା ଚନ୍ଦ୍ରାବତୀ । ଚନ୍ଦ୍ରାବତୀ ଜଣେ ହିପ୍ନୋଟାଇଜଡ଼୍ ବ୍ୟକ୍ତିପରି ଚାଲିଗଲା । ତା'ର ସ୍ପର୍ଶ ଶକ୍ତି ଠାରୁ ଦୂରେଇଯାଇଛି ଯେମିତି । ତରୁଣ ଦାସର ଇଚ୍ଛା ହେଲା ଦୌଡ଼ିଯାଇ କହିବ: ଚନ୍ଦ୍ରାବତୀ, ମୁଁ କିନ୍ତୁ ଏଯାଏଁ ନୂଆ ଖାତା ଖୋଲିନି, ଖୋଲିନି କ'ଣ ମ ! ବରଂ ଚେଷ୍ଟା କରି ପାରିଲି ନାହିଁ ।

ତରୁଣ ଦାସ ଫେରୁଥିଲା ଏକ ରିକ୍ତହସ୍ତ ଜମିଦାର ପରି, ଯେ ନିଲାମ୍‌ରେ ଚାଲିଯାଇଥିବା ତା'ର ପ୍ରିୟ ଆମ୍ବତୋଟାକୁ ଆଉ ଜଣେ ଭୋଗ କରୁଥିବାର ଦେଖୁଛି ।

କଲିନ୍‌ସ, ଆଲଡ୍ରିନ୍, ଧନ୍ୟବାଦ ତମର ରୋମାଞ୍ଚକର ସଫଳତା ପାଇଁ । ତରୁଣ ଦାସ ଖଣ୍ଡେ ସିଗ୍ରେଟ୍‌ରେ ନିଆଁ ଧରିଲା । ଆଖି ଆଗରେ କାଚ ପାତ୍ରରେ ଥିବା ଚନ୍ଦ୍ରଶିଳା, ଏକ ଟୁକୁରା କଲିଜା ପରି ।

ତରୁଣ ଦାସ ପାଇଁ ଚନ୍ଦ୍ର, ଚନ୍ଦ୍ରାବତୀ ଏକ କଥା । ଚନ୍ଦ୍ରଶିଳା ବି ଚନ୍ଦ୍ରାବତୀ ହୃଦୟର ଏକ ଅଂଶ ହୋଇଯାଉ଼ରେ ।



# ବୃହନ୍ନଳା

କୋଠରୀକୁ ଖୋଲି ଦେଲେ ଅପର୍ଯ୍ୟାପ୍ତ ମଲ୍ଲୀଗଛ ଓ ତା'ର ପ୍ରତିଟି ଶାଖାରେ ପେନ୍ଥା ପେନ୍ଥା ଫୁଲ । ଯେମିତି କେହି କିଛି ବାସ୍ନା ଠୁଳ କରି ରଖିଥାଏ, କବାଟ ଖୋଲିଗଲା ପରେ ହଠାତ୍ ଧୀର ପବନରେ ଛାଡ଼ିଦିଏ । ସୁରଭିତ କୋଠରୀ, ବସନ୍ତ ଋତୁ ।

କୋଠରୀ ସାମ୍ନାକୁ ବଖୁରୀଟିଏ ଚାଳଘର । ତାକୁ କିଚେନ୍ କମ୍ ଷ୍ଟୋର କୁହାଯାଇପାରେ । ସକାଳ ସାତଟାରୁ ଦିନ ଦଶଟା ଓ ସନ୍ଧ୍ୟା ଛ'ରୁ ରାତି ଦଶ ପର୍ଯ୍ୟନ୍ତ ତା ଭିତରେ କର୍ମରତ ବାଳକଟିର ନାମ ଗଙ୍ଗା । ସମ୍ବିତ୍ ତାକୁ ଶ୍ରଦ୍ଧାରେ ଡ଼ାକେ ଗଙ୍ଗୋତ୍ରୀ । ଗଙ୍ଗୋତ୍ରୀ ଡ଼ାକିବା ତା'ର ଇଚ୍ଛାକୃତ ନୁହେଁ, ବରଂ ଗଙ୍ଗାର ଚାଲିଚଳଣ ଓ ଆଚାର ବିଚାରକୁ ନେଇ ତାକୁ ସେ ନାମରେ ଡ଼ାକିବା ତା'ର ଏକ କୌତୁହଳ ।

ଗଙ୍ଗା ଆଧୁନିକ ପରିଭାଷାରେ କୁକ୍, ବୟ ଓ ସର୍ବୋପରି ସମ୍ବିତ୍‌ର ନିଃସଙ୍ଗ ଜୀବନରେ ଏକମାତ୍ର ସହଯାତ୍ରୀ ମଧ୍ୟ ।

ବସନ୍ତ ଋତୁ ।

ବାହାରେ ମଲ୍ଲୀଫୁଲ ଓ ତା'ର ବାସ୍ନା ।

ଏକୁଟିଆ ଚାଳଘର, ଗଙ୍ଗା କର୍ମରତ ।

ପାଖ ଡ଼ାକବଙ୍ଗଳାରେ ଅଜସ୍ର ଭିଡ଼, ଘର ଭଙ୍ଗାଠାରୁ ବଳଦ କିଣିବା ପର୍ଯ୍ୟନ୍ତ

ଯାବତୀୟ ଋଣ । ରେଷ୍ଟୋରାଁରେ କପ୍‌ଟିଏ ଚା ମଧ୍ୟ ପିଇ ହୁଏନା ସ୍ୱଚ୍ଛନ୍ଦରେ । ଅଯତ୍ନ ବର୍ଦ୍ଧିତ ପିଲାଟିର ବୃହତ ପେଟ, ସରୁ ସରୁ ହାତ ଦୁଇଟି, ତା'ର ସମସ୍ତ ନିଷିଦ୍ଧ ଅଞ୍ଚଳ ଦିଶୁଥିବା ସତ୍ତ୍ୱେ ବି ପୋଷାକ ହିସାବରେ ଚିରା ପେଣ୍ଟ ଓ ସର୍ବୋପରି ତା'ର କରୁଣ ଆଖି ଦୁଇଟିରେ ଯେମିତି ବଞ୍ଚିଯିବା ପାଇଁ ଅନୁନୟ ।

ସଂବିତ୍‌ର ହାତରେ କେତେବେଳେ ଚା କପଟା ଥଣ୍ଡା ହୋଇଯାଏ, କିମ୍ବା ଅନ୍ୟ କେତେବେଳେ ତା'ର ଇଚ୍ଛା ହୁଏ ସେ ଛୋଟା ଅଧିକାରୀ (ରେଷ୍ଟୋରାଁର ମାଲିକ) ମୁହଁକୁ କପ୍‌ଟା ଫିଙ୍ଗି ଦେଇ କହିବାକୁ: ଦେଖ, ଦେଖ୍ ସେ ଛୁଆଟାକୁ କେମିତି ପବନରେ ତା ପେଟଟା ଫୁଲିଯାଇଛି, ଡ଼ାକବଙ୍ଗଳା ସାମ୍ନାକୁ ଚାହାଁ କେଇ ଟଙ୍କା ଋଣ ବା ସାହାଯ୍ୟ ପାଇଁ କେମିତି ଲୋକଭିଡ଼, ଆଉ ଅଧିକ ଯଦି କିଛି ଚାହୁଁଛୁ, ମୋ ରହିବା ସ୍ଥାନକୁ ଯାଇ ଦେଖ କେମିତି ମଲ୍ଲୀଫୁଲ ଫୁଟିଛି । ଏଥିରେ ତୋ ଚା' କେମିତି ପିଇବି !

ସଂବିତ୍ ଉଠି ଆସେ । କିନ୍ତୁ ଚା' କପ୍‌ର ଦାମ ଦେବାକୁ ଭୁଲି ଯାଏନା ଯେହେତୁ ତା'ର ପିଇବା ନ ପିଇବା ସହିତ ଅଧିକାରୀର କୌଣସି ସମ୍ପର୍କ ନାହିଁ ।

ଆଜି କେମିତି ସଂବିତ୍ ଅଶ୍ୱସ୍ତିକର ବୋଧ କରୁଛି । ଅନେକ ଦିନ ପରେ ଆଜି କ୍ଲାସ୍‌ଟା ଫେଲିଓର । ସେଥିପାଇଁ ପିଲାମାନେ ଦାୟୀ କିମ୍ବା ନିଜର ଅପ୍ରସ୍ତୁତ ଅବସ୍ଥା ସେ ସିଦ୍ଧାନ୍ତ ମଧ୍ୟ ଏକ ଜଟିଳ କଥା । ତେବେ କେତେକାଂଶରେ ସେ ଦାୟୀ ଯେହେତୁ ଇଚ୍ଛା ବିରୁଦ୍ଧରେ କ୍ଲାସ୍‌ର ପ୍ରଥମ ବେଞ୍ଚକୁ ସେ ଆଜି ଚାହିଁଦେଲା । ପ୍ରଥମ ଧାଡ଼ିର ଡ଼ାହାଣ ପଟକୁ ଝିଅପିଲାମାନେ ଏବଂ ବାମ ପଟକୁ କେତେକ ଆଗୁଆ ପୁଅ ପିଲା । ସମ୍ବିତ୍ ସବୁବେଳେ କ୍ଲାସ୍‌ର ଶେଷ ଧାଡ଼ିକୁ ଚାହେଁ । ତା'ର ବି କିଛି ନିର୍ଦ୍ଦିଷ୍ଟ କାରଣ ନାହିଁ; ହୁଏତ ତାଦ୍ୱାରା ସମସ୍ତ ପିଲା ତା ମୁହଁକୁ ଦେଖିପାରିବେ କିମ୍ବା ନାରୀମାନଙ୍କ ପ୍ରତି ସ୍ୱାଭାବିକ ଦୁର୍ବଳତା ବଶତଃ ସେଥିରୁ ମୁକ୍ତି ପାଇଁ ସେ ପଛ ବେଞ୍ଚକୁ ଚାହେଁ ।

ଆଜି କିନ୍ତୁ ଯେତେବେଳେ ଅନେକ ସରଳ ଭାଷାରେ ବୁଝାଇବା ସତ୍ତ୍ୱେ ପଛବେଞ୍ଚର ପିଲାମାନଙ୍କ ମୁହଁ ତାକୁ ନିର୍ବୋଧ ବୋଲି ମନେ ହେଲା ସେ କୌତୁହଳରେ ସମସ୍ତଙ୍କ ମୁହଁକୁ ଲକ୍ଷ୍ୟ କରିବା ଉଦ୍ଦେଶ୍ୟରେ କ୍ରମେ ଆଗକୁ ଆସୁ ଆସୁ ଭୁଲରେ ସାମ୍ନା ବେଞ୍ଚକୁ ଚାହିଁଦେଲା । ସେଇ ଯେ ସେ ଚାହିଁଛି ତା'ର ଆଉ କିଛି କଥା ମନେ ନାହିଁ । ତା'ର ଏ ସମାଧି ଅବସ୍ଥା ପିଲାମାନଙ୍କ ପାଇଁ ଏକ ନୂତନ ଦୃଶ୍ୟ । ତେଣୁ କୌଣସି ପ୍ରକାର ବିଶୃଙ୍ଖଳା ନଥିଲା ପ୍ରାୟ ଦଶମିନିଟ୍ ପର୍ଯ୍ୟନ୍ତ । ପିରିଅଡ୍ ଓଭର ହେଲା । ସଂବିତ୍ ପ୍ରକୃତିସ୍ଥ ହେଲା ଓ ହଠାତ୍ 'ସରି' କହି କ୍ଲାସ୍‌ରୁ ଏକମୁହାଁ ହେଇ ବାହାରି ଆସିଲା ।

ବିଶ୍ରାମ କକ୍ଷରେ ଦୁଇଗ୍ଲାସ୍ ପାଣି ପିଇ ଉପରକୁ ଚାହିଁ ବସିଗଲା କିଛି ସମୟ ।

ହାତ୍, ଶଳା ଗୋଟେ ଦୁର୍ବଳତା । ପୁଣି ସମ୍ବିତ୍ ଯେତେବେଳେ ସେ ପରିସ୍ଥିତିକୁ ଗଭୀର ଭାବେ ଅନୁଶୀଳନ କଲା ଏଇ ସିଦ୍ଧାନ୍ତରେ ପହଞ୍ଚିଲା, ଯେ ତାହା ନାରୀମାନଙ୍କ ପ୍ରତି ସ୍ୱାଭାବିକ ଦୁର୍ବଳତା ବଶତଃ ନୁହେଁ।

କଥା ହେଲା ପ୍ରଥମ ବେଞ୍ଚରେ ବସିଥିବା ଝିଅ ପିଲା ଓ ବାମ ପାଖର ପୁଅ ପିଲାଙ୍କ ମଧ୍ୟରେ ସାଦୃଶ୍ୟ ଏତେ ବେଶି ଥିଲା ଯେ ଏସବୁ ସାମ୍ୟ ତଥା ତା ପଛରେ ଥିବା ଚିନ୍ତା ବିଷୟରେ ସେ କିଛି ସମୟ ଭାବିବାକୁ ଲାଗିଲା । ଏମିତି ଏକ ଆତ୍ମନିମଗ୍ନ ସମୟରେ ଘଣ୍ଟା ବାଜିଲା ଓ ତା'ର ଦୁର୍ବଳତା ଧରା ପଡ଼ିଗଲା ପିଲାମାନଙ୍କ ଆଗରେ ।

ଝିଅ ଏବଂ ସେ ପିଲାମାନଙ୍କ ମଧ୍ୟରେ ଅନେକ ମିଶିଗଲା ପରି ଲକ୍ଷଣ ରହିଛି । ପ୍ରଥମତଃ ସେମାନେ ଲତାଟିଏ ପରି ନରମ । ସେମାନଙ୍କର ବାବୁରୀ ବାଳ, ଲମ୍ବ ଗାଲମୁଛା, ବିଭିନ୍ନ ପ୍ରିଣ୍ଟର ପୋଷାକ ଓ ପାଲିସ୍ ମୁଖମଣ୍ଡଳ ତାଙ୍କୁ ଅନେକାଂଶରେ ନାରୀସୁଲଭ ଗୁଣର ଅଧିକାରୀ କରି ଦେଇଛି । ଯଦିଓ ତାଙ୍କର ପଟୁଆର ବିରାଟ, ତଥାପି ସେଥିରେ ଦାମ୍ଭିକତା ଅପେକ୍ଷା ଆତ୍ମନିବେଦନର ଭାବ ଯଥେଷ୍ଟ । ସେମାନେ ତେଣୁ ଏଇ ଯୁବତୀମାନଙ୍କର ନିକଟବର୍ତ୍ତୀ ଓ ସେମାନଙ୍କ ସହିତ ଏଇ ଘନିଷ୍ଠତାକୁ ଦୃଢ଼ କରିବା ପାଇଁ ହୁଏତ ନିକଟରେ ବସନ୍ତି ।

ସମ୍ବିତ୍ କେବେ କେମିତି କଲେଜ କରିଡ଼ରକୁ ନୀରବରେ ଲକ୍ଷ୍ୟ କରେ । ଦେଖେ ଏଇ ଯୁବକମାନଙ୍କୁ । ସେମାନେ ଦଳ ଦଳ ହେଇ ଯୁବତୀମାନଙ୍କ ସହିତ ହସ ଖୁସି କରନ୍ତି, ସେମାନଙ୍କୁ ବିଭିନ୍ନ ଉପାୟରେ ଆମୋଦିତ କରନ୍ତି । କିନ୍ତୁ ସେମାନଙ୍କ ଠିଁ କ'ଣ କିଛି ଅଭାବ ରହିଥାଏ ବୋଧହୁଏ, ଫଳରେ ତାଙ୍କ ପ୍ରତି ଆକୃଷ୍ଟ ହେବା ତ ଦୂରର କଥା ବରଂ, ସମ୍ବିତ୍ ପ୍ରସଂଗ କ୍ରମେ କେବେ ଶୁଣିଛି, ତାଙ୍କୁ ସେ ଯୁବତୀମାନେ ସହଚରୀ ହିସାବରେ ଗ୍ରହଣ କରନ୍ତି ।

ସହଚରୀ ମନୋରଞ୍ଜନ କରେ, କିନ୍ତୁ ଅନ୍ୟକଥା, ଯେମିତିକି ନାରୀର ସେକ୍ସ ବା ନିରାପତ୍ତାରେ ସହଚରୀର ଭୂମିକା ବିଷୟରେ ସମ୍ବିତ୍ ସନ୍ଦେହରେ ପଡ଼େ ।

ଯୁବକମାନଙ୍କର ଶରୀର ଉପରେ ପରିବର୍ତ୍ତନର ପରୀକ୍ଷା ଚାଲିଛି । ଏଇ ପରୀକ୍ଷାର ଆତ୍ମିକ ପ୍ରକାଶ କ'ଣ । ନାଁ ସମୟ ସହିତ ଖାଲି ଗୋଟେ ବୁଝାମଣା ।

ଶରୀର ଉପରେ ପରୀକ୍ଷା ହେଉ କିଛି କ୍ଷତି ନାହିଁ । କିନ୍ତୁ ସମ୍ବିତ୍ ବିବ୍ରତ ହୁଏ

ଯେତେବେଳେ ଦେଖେ ଏଇ ପରିବର୍ତ୍ତନ ସହିତ ପୁରୁଷର ମୌଳିକ ଗୁଣରେ ବି ପରିବର୍ତ୍ତନ ଘଟୁଛି । ପୁରୁଷକୁ ନାରୀ ପାଖରେ ଯାହା ପ୍ରତିଷ୍ଠିତ କରେ ସେଇ ଗୁଣଟି ଯେମିତି ସେମାନଙ୍କଠାରୁ ଅପହୃତ ।

କଣଟା ହବ ଆଉ ! କୋଣାର୍କ ମନ୍ଦିର ଗାତ୍ରରେ ମିଳିତ ଯୌନ ମୁଦ୍ରା, ଝାଉଁ ବଣରେ ବିକ୍ଷିପ୍ତ ଲୁଣି ହାୱା, ପାତି ବାଲି ଶେଜରେ ଆତ୍ମରତି । ସମାନ୍ତରାଳ ଗୋଟାଏ ଦୁନିଆଁ ସେତେବେଳେ ଡ଼ାକ ବଙ୍ଗଳାରେ ଭିଡ଼ କରୁଛି ଓ ସେଇ ପିଲାର କରୁଣ ଆଖି ଯୋଡ଼ିକ ସ୍ୱଚ୍ଛନ୍ଦରେ ତା'ଟିକେ ବି ପିଆଇ ଦେଉନି ।

ଅବସନ୍ନ ସମ୍ବିତ୍ କଲେଜରୁ ଫେରୁଥିବା ସମୟରେ: ଆଗରେ ଯୁବକ ଦଳକ ଚାଲୁଥିଲେ ଯେଉଁମାନଙ୍କ ପାଇଁ କ୍ଲାସ୍ ଆଜି ଫେଲିଓର । ସେମାନେ ରାସ୍ତାକୁ ସମ୍ପୂର୍ଣ୍ଣ ଅକ୍ତିଆର କରି ଚାଲିଥିଲେ । ଯେମିତି ଦଳେ ରଙ୍ଗ ବେରଙ୍ଗ ପ୍ରଜାପତି । ଚାଲିରେ ତରଙ୍ଗ, ବହୁ ଭାବରେ ରାସ୍ତାକୁ ମୁଖରୀତ କରୁଥିଲେ ।

ସମ୍ବିତ୍ ସେମାନଙ୍କଠାରୁ ଅଳ୍ପ ବ୍ୟବଧାନ ରକ୍ଷା କରୁଥିଲା । ସେମାନଙ୍କ ବେପରୁଆ ଢ଼ଙ୍ଗ ଯଦିଓ ସମ୍ବିତ୍ ପାଇଁ ବିରକ୍ତିକର ତଥାପି ସେମାନଙ୍କୁ ଦେଖିବାରେ ତା'ର କୌତୁହଳ । ସେମାନେ ଆଲୋଚନା କରୁଥିଲେ ଝିଅଙ୍କ ବିଷୟରେ । ସମ୍ବିତ୍ ହୁଏତ ସେମାନଙ୍କୁ ରୋକ୍‌ଠୋକ୍ କିଛି ଶୁଣେଇ ଦେଇପାରନ୍ତା, କିନ୍ତୁ ପାରିଲା ନାହିଁ । ପର ମୁହୂର୍ତ୍ତରେ ସେମାନଙ୍କୁ ତା'ର ଦୟା କରିବାକୁ ଇଚ୍ଛା ହେଲା । ବିଚରାମାନେ, ଫଳକୁ ଚାହିଁବାରେ ତାଙ୍କର ଆନନ୍ଦ, ସେଥିରେ କିଛି ଆତ୍ମସନ୍ତୋଷ ।

ସମ୍ବିତ୍‌ର ଏ ଭାବଟା କେବଳ ତଳକୁ ମୁହଁପୋତି ଚାହିଁବାରେ ପ୍ରକାଶିତ ହେଉଛି ।

ସମ୍ବିତ୍ ଅଗଣାକୁ ଚାହିଁଲା ।

ଅପରାହ୍ନ ।

ଗଙ୍ଗା ସେ କୋଠରୀ ମଧ୍ୟରେ କର୍ମରତ ।

ସମ୍ବିତ୍ ତା' କାନ୍ଥରେ ଲଟକୁଥିବା ପଟ୍ଟଚିତ୍ରକୁ ଚାହିଁଲା: ଯୁଦ୍ଧ ଅଭିଯାନରେ ଓଡ଼ିଆ ପାଇକ ପୁଅ । ବେକ ଉପରେ ଝୁଲି ପଡ଼ିଛି ଗୋଛାଏ ଲେଖା ବାଳ, କାନରେ କୁଣ୍ଡଳ, ଲମ୍ବା ଗାଲମୁଛା, ଆକର୍ଣ୍ଣ ନିଶ... ସମସ୍ତ ଚେହେରାରେ ବୀରତ୍ୱର ମୁଦ୍ରାଙ୍କ । ନୀରବରେ ଲକ୍ଷ୍ୟ କଲେ କାନରେ ଯେମିତି ସେମାନଙ୍କ ଉଦ୍ଦାମ ଗତି ପ୍ରତିଧ୍ୱନୀତ ।

ସମ୍ବିତ୍ ମନକୁ ମନ ପ୍ରଶ୍ନ କଲା: ଯଦି ଏଇ ଯୁବକମାନଙ୍କୁ ଠିକ୍ ସେମିତି

ସଜାଇ ଦିଆଯାଇ ଯୁଦ୍ଧ ଯାତ୍ରାର ଦାୟିତ୍ୱ ଦିଆଯାଏ! ହସିଲା ତା'ପରେ। ହସରେ ପୁଣି ଯନ୍ତ୍ରଣା ଥାଏ- ଏକଥା ସେ କାହାକୁ କହିବ।

ସମ୍ବିତ୍ ବାହାରକୁ ଆସିଲା। ହଳଦୀ ରଙ୍ଗର କ୍ଷୟିଷ୍ଣୁ ଖରା। ପରେ ପରେ ଗୋଟେ ନୀରବ ଶୀତଳତା। ଏଇଟାଇ କ'ଣ ଜୀବନ! ମଧ୍ୟାହ୍ନ ଶୀତଳ ହେଇଯାଇଛି କ୍ରମେ। କଣଟା ହବ ଆଉ! ଏମିତି, ଏମିତି... ପରେ ଅନ୍ଧକାର, ସୂର୍ଯ୍ୟର ଅପମୃତ୍ୟୁ, ପରେ ହୁଏତ ପୁନର୍ଜନ୍ମ!

କିନ୍ତୁ ବର୍ତ୍ତମାନ?

ବର୍ତ୍ତମାନ ଏଷ୍ଟାବ୍ଲିସ୍‌ମେଣ୍ଟ, ତା'ର ଶୋଷଣ ଡ଼ାକବଙ୍ଗଳାରେ ଋଣ ବା ସାହାଯ୍ୟ ମାଗିବାଠାରୁ ବିକଳାଙ୍ଗ ଶିଶୁର ଟା' ପିଆଇ ନଦେବା ପର୍ଯ୍ୟନ୍ତ। ପୁଣି ପ୍ରତିବାଦ ଲମ୍ବାବାଳ, ଅସ୍ୱୀକୃତ ଆଦବକାଇଦାରେ ବିଶୃଙ୍ଖଳିତ ଯୁବକ।

କିଛି କଥା ନାହିଁ, ଅନାବଶ୍ୟକ ଅଯଥା ପୌରୁଷ। ତାକୁ କିକ୍ କରି ଗୋଟାଏ ଫୁଟବଲ୍ ପରି ଗଡ଼ାଇ ଦିଆଯାଇ ପାରେ। ନିଜକୁ ନିଜଠାରୁ ମୁକ୍ତକରି ଚାର୍‌ମିନାର ସିଗ୍ରେଟ୍‌ରେ ମାଲ୍ ଭର୍ତ୍ତି କରି ଉତ୍ତପ୍ତ ବାଲିରେ ଶୋଇ ଖାଲି ଆଖିରେ ସୂର୍ଯ୍ୟଙ୍କୁ ଅନାଯାଇ ପାରେ।

କ'ଣଟା ହବ ଆଉ ଏ ପ୍ରତିବାଦରେ!

ସମ୍ବିତ୍‌ର ଶରୀରରେ ନାଗଫାଶ। ସେ ଏ ଯୁବକମାନଙ୍କୁ ଘୃଣା କରେ ଯେମିତି, ସେମାନଙ୍କ ପ୍ରତିକ୍ରିୟାକୁ ନିଜ ଭିତରେ ଅନୁଭବ କଲେ ଗୋଟାଏ ଘୂର୍ଣ୍ଣାୟମାନ ଦୁନିଆ ଦେଖେ ଆଗରେ। ତେଣୁ ଏ ଯୁବକମାନଙ୍କର କ'ଣ ଆବଶ୍ୟକ ସେ ଡ଼ାକବଙ୍ଗଳାର ଲୋକ ଭିଡ଼ର ଗୁରୁତ୍ୱ ବିଚାର କରିବାକୁ ବା ସେ ପିଲାର ଭଗ୍ନ ସ୍ୱାସ୍ଥ୍ୟ ପ୍ରତି ସମ୍ବେଦନଶୀଳ ହେବାକୁ।

ତେବେ ବାଟ କ'ଣ!

ବାଟ ଖୋଜିବାକୁ ଗଲେ ସେ ଅଧିକ ଗୋଳମାଳରେ ପଡ଼େ। ତା'ର ନିଯୁକ୍ତି ଭବିଷ୍ୟତ ବଂଶଧରଙ୍କୁ ଆଲୋକର ପଥ ଦେଖାଇବାକୁ। କିନ୍ତୁ ଏଷ୍ଟାବ୍ଲିସ୍‌ମେଣ୍ଟ ଗୋଟାଏ ପୁରୁଣା ବୁନିଆଦିକୁ ଜାବୁଡ଼ି ଧରି ଅନ୍ଧକାରରେ ଆତ୍ମଗୋପନ କରିବାକୁ ପସନ୍ଦ କରେ। ନିଜର ନିରାପତ୍ତା ପାଇଁ ଅନ୍ଧକାରରେ ନକଲି ଆସ୍ଥା ସ୍ଥାପନ କରୁଥିବା ସମ୍ବିତ୍ ସେମାନଙ୍କୁ କି ପ୍ରକାର ଆଲୋକର ସନ୍ଧାନ ଦେବ ଅବା!

ଅନାସ୍ଥା ଭାବ । ପ୍ରତିବାଦ । ଏଷ୍ଟାବ୍ଲିସ୍‌ମେଣ୍ଟ ବିରୋଧରେ ପ୍ରତିବାଦ ପାଇଁ ଶକ୍ତିର ଅଭାବ, ତେଣୁ ପ୍ରତିକ୍ରିୟା ।

ସମ୍ବିତ୍‌ର ଚାରିକଡ଼ରେ ଲୁହାର ପ୍ରାଚୀର । ତା' ଧମନୀରେ ନୀଳରକ୍ତ ଆସ୍ତେ ଜମାଟ ବାନ୍ଧିଛି । ସବୁଆଡ଼େ ଗୋଟାଏ ତୀବ୍ର ସତର୍କତା, ପୂର୍ବ ପ୍ରଚଳିତ ଧାରାର ନିୟନ୍ତ୍ରଣରୁ ମୁକ୍ତ ହେବାର ଚେଷ୍ଟା କ୍ଷତିକାରକ ।

ସମ୍ବିତ୍ ମୁହଁରେ ଦୀର୍ଘଶ୍ୱାସ । ହାତ ନିକଟରେ ମଲ୍ଲୀଫୁଲ, ନାକରେ ବାସ୍ନା । ବସନ୍ତ ଋତୁ । ସେକ୍ସ, ଅର୍ଥନୀତି, ଈଶ୍ୱର, ଆତ୍ମ-ବିଶ୍ୱାସ ସବୁ କିଛି ତା'ମନକୁ ଦୁର୍ବଳ କରୁଛି କ୍ରମେ । ସେ ନାଗଫାଶରେ । ପ୍ରତିବାଦ ବା ବିଦ୍ରୋହ କେବଳ କାରୁଣ୍ୟ ।

ଆସନ୍ତା ବୈଶାଖରେ ତୋର ବିବାହ ଯେମିତି ହେଲେ ହେବାକୁ ବାଧ୍ୟ । କନ୍ୟା ଘର ବ୍ୟସ୍ତ କଲେଣି । ତୋର ଅମତ ହେବାର କିଛି ନାହିଁ । ଶ୍ୱଶୁର ରିଟାୟାର୍ଡ଼ ଆଇଏଏସ୍ ଅଫିସର୍ । କନ୍ୟା ରୂପବତୀ, ଶିକ୍ଷିତା । ବାଟଖର୍ଚ୍ଚ ପାଞ୍ଚହଜାର ନଗଦ କେସ୍, ସ୍କୁଟର, ରେଫ୍ରିଜେରେଟର ଇତ୍ୟାଦି ଇତ୍ୟାଦି ।

ଏଷ୍ଟାବ୍ଲିସ୍‌ମେଣ୍ଟ ପୋଜେସିଭ୍ । ତା' ଅକ୍ତିଆରରେ ସମସ୍ତ ଜିନିଷକୁ ଠୁଳ କରି, ତା' ଉପରେ ବସି ସେ ଅନ୍ୟମାନଙ୍କୁ ଚାହିଁବ ।

ସମ୍ବିତ୍ ଶିକ୍ଷିତ । ବାପା ତାକୁ ବଜାର ଛକରେ ଠିଆ କରାଇ ଅକ୍ସନ୍ କରୁଛନ୍ତି । ଦରଦାମ୍ ପକ୍କା, ସୁନ୍ଦରୀ ସ୍ତ୍ରୀ, ବର୍ଷେ ଲେଖା ବ୍ୟବଧାନରେ ଜନସଂଖ୍ୟାରେ ଗୋଟିଏ କରି ସରଳ ଶିଶୁଙ୍କ ଯୋଗଦାନ, ସମ୍ବିତ୍ ଏଷ୍ଟାବ୍ଲିସ୍‌ମେଣ୍ଟର ଅଙ୍ଗ ।

– ସମ୍ବିତ୍, ନିଜକୁ ଉପଲବ୍ଧି କରିବାର ଯେଉଁ ଟିକକ ସ୍ୱାଧୀନତା ଅନ୍ତତଃ ତୁମର ଅଛି ସେତକ ନଷ୍ଟ କରନା । ତୁମେ ସ୍ପଷ୍ଟ ମନା କରିଦିଅ । ସମ୍ବିତ୍ ଅନ୍ତରର ଏଇ ଭାବ କାଗଜ କଲମରେ ରୂପ ପାଇଲା । ଆପାତତଃ ବିବାହ ବନ୍ଦ ।

ସନ୍ଧ୍ୟା ଆସୁଛି ।

ଗଙ୍ଗା କର୍ମରତ ।

ସମ୍ବିତ୍ ଛୋଟ ବଗିଚାଟିରେ ପାଦ ଦେଲା । ସନ୍ଧ୍ୟା ଆସୁଛି । ପଛପଟ ରାସ୍ତାରେ ଲୋକ ଗହଳି, ସାନ୍ଧ୍ୟ ଭ୍ରମଣ । ରାସ୍ତାକଡ଼ର ଧାଡ଼ି ଧାଡ଼ି ଝାଉଁଗଛ ପାଣ୍ଡୁର ଦିଶିଲେଣି । କିଛି ପୂର୍ବରୁ ପରିଷ୍କାର ଦିଶୁଥିବା ଗ୍ରାମ ଆଉ ସେଠିକି ଲମ୍ବି ଯାଇଥିବା ରାସ୍ତାର ଗୈରିକ

ରୂପ ଅନ୍ଧକାରରେ ଅସ୍ପଷ୍ଟ ହେଲେଣି । ରାସ୍ତାରେ ଦଳ ଦଳ ଯୁବକ ଓ ସେମାନଙ୍କର ଆତ୍ମନିବେଦନର ଆଖିଗୁଡ଼ିକ ।

ସମ୍ପିତ୍ ପଶ୍ଚିମକୁ ମୁହଁକଲା । ଅନେକ ବେଳୁଁ ସୂର୍ଯ୍ୟ ବୁଡ଼ି ଗଲେଣି । ତା'ର ଶେଷ ସ୍ମାରକ ଇଶତ୍ ନାଲିର ଏକ ଆଭା । ସେ ଆଡ଼େ ନିବିଷ୍ଟ ଚିତ୍ତରେ ଚାହିଁଛି ସମ୍ପିତ୍ । ସେଇ ଇଶତ୍ ନାଲି ଆଭା ମଧ୍ୟରୁ ଏକ ନୂତନ ଦୃଶ୍ୟର ସୃଷ୍ଟି ହେଉଛି । ଚିତ୍ରବିଚିତ୍ର ପୋଷାକରେ ଏଇ ଯୁବକମାନଙ୍କର ଏକ ଶୋଭାଯାତ୍ରା । କାନ୍ଧରେ ଖୋଳ, ହାତରେ ଗିନି, ବେକରେ ତୁଳସୀ କଣ୍ଠର ମାଳା । ମୁଣ୍ଡର ବାଳ ଅବିନ୍ୟସ୍ତ, ଶ୍ମଶ୍ରୁହୀନ ମୁହଁରେ କରୁଣ ଦୃଷ୍ଟି । ସେମାନେ ହୁଏତ ଉଚ୍ଚାରଣ କରୁଥିଲେ 'ଆଲୋକ' 'ଆଲୋକ' । ଚିତ୍ରଟି ସମସ୍ତ ଦିଗକୁ ବ୍ୟାପୁଛି । ସେମାନଙ୍କ ମଧ୍ୟରୁ କେତେକ ସମ୍ପିତ୍‌କୁ ହାତଠାରି ଡ଼ାକୁଛନ୍ତି; ଚାଲି ଆସ, ମଧ ସ୍ୱର୍ଗ କାହିଁକି ? ଆଲୋକର ସନ୍ଧାନ ନିଅ, ନହେଲେ ବାପାଙ୍କ ସର୍ତ୍ତରେ ରାଜି ହୋଇଯାଅ ।

ସମ୍ପିତ୍ କାନରେ ହାତ ଦେଲା ଏବଂ ହଠାତ୍ ଆଖି ବନ୍ଦ କରି ଦେଲା ।

ଗଙ୍ଗା ଡ଼ାକରେ ସମ୍ପିତ୍ ପ୍ରକୃତିସ୍ଥ ହେଲା ।

ଗଙ୍ଗା ଠିଆ ହେଇଛି । ତା'ର ବାବୁରୀ ବାଳ, ଗୋଲ୍ ଗାଲ ଶ୍ୟାମଳ ଦେହ । ସେ ସନ୍ଧ୍ୟାର ମେନୁ ସମ୍ପର୍କରେ ଆଦେଶ ଅପେକ୍ଷା କରୁଛି ।

ସମ୍ପିତ୍‌କୁ ନୀରବ ଦେଖି ଗଙ୍ଗା ପୁଣି ଫେରି ଯାଉଛି । ବୋହୂଟିଏ ପରି ତା'ର ଚାଲି, କଥାବାର୍ତ୍ତା ମଧ । ସମ୍ପିତ୍‌କୁ ଅତିଷ୍ଠ ମନେ ହେଲା ଗଙ୍ଗା ବର୍ତ୍ତମାନ ପାଇଁ । ସମ୍ପିତ୍‌ର ପିଠିରେ ହାତ ମାରିଦେବା ପାଇଁ ନିକଟରେ କେହି ଯେମିତି ନାହାନ୍ତି ।

ସମ୍ପିତ୍ ଗଙ୍ଗୋତ୍ରୀକୁ ଡ଼ାକିଲା । ସେ ଆସି ଠିଆ ହେଲା ତା' ସାମ୍ନାରେ । ମଲ୍ଲୀଫୁଲର ବାସ୍ନା ତୀବ୍ର ହେଲାଣି । ସନ୍ଧ୍ୟା ପାଇଁ ଡ଼ାକ ବଙ୍ଗଳାରୁ ଭିଡ଼ କମିଗଲାଣି ଏବଂ କେଉଁ ଦୂରଦୂରାନ୍ତରୁ ମାଗିବା ପାଇଁ ଆସିଥିବା ସେ ବିକଳାଙ୍ଗ ଶିଶୁମାନେ ଚାଲିଗଲେଣି ।

ଗଙ୍ଗୋତ୍ରୀ ତା'ର ସ୍ୱଭାବସୁଲଭ ଠାଣୀରେ ଚାହିଁଛି ସମ୍ପିତ୍‌କୁ, ସମ୍ପିତ୍ ତାକୁ ମଧ । ଗଙ୍ଗାର ଆଖି ଯୋଡ଼ିକରେ ବୈଷ୍ଣବ ଗୀତି କବିତାର ଭାବ ।

ଆରେ ଗଙ୍ଗୋତ୍ରୀ ଚାଲ ଯିବା, ସମ୍ପିତ୍‌ର କଣ୍ଠରେ ବିକଳ ନିଃସଙ୍ଗତା ।

- କୁଆଡ଼େ ବାବୁ ?

କୁଆଡ଼େ ? କୁଆଡ଼େ କ'ଣରେ ? ଆ, ମୋ ପାଖକୁ ଟିକେ ଲାଗି ଆସିଲୁ... ଆ, ଆ..., ସମ୍ବିତ୍ ଗଙ୍ଗୋତ୍ରୀକୁ ନିଜ ନିକଟକୁ ଟାଣି ଆଣିଲା ଓ ପରେ ତା'ର ଅଣ୍ଟାରେ ହାତ ଛନ୍ଦି ରାସ୍ତା ଉପରେ ପାଦ ଦେଲା ।

ସମ୍ବିତ୍ ମୁହଁରେ କଥା ନାହିଁ । ହାତରେ ଟର୍ଚ୍ଚର ଅସ୍ଥିର ଆଲୋକ । ଘନ ଅନ୍ଧକାର ପାଇଁ ଏ ଟର୍ଚ୍ଚଟି ଯେମିତି ପ୍ରଚୁର ନୁହେଁ । ସେ ରାଗରେ ରାସ୍ତା ଉପରେ କଚିଦେଲା ଟର୍ଚ୍ଚଟିକୁ ଓ ତାପରେ ସେମିତି ଗଙ୍ଗାର ଅଣ୍ଟାରେ ହାତ ଛନ୍ଦି ଆଗକୁ ପାଦ ବଢ଼େଇଲା ।



# ଆତ୍ମଭାବ

ଗତ କେତେଦିନ ହେଲା ମୋ ଭିତରେ ଏକ ପରିବର୍ତ୍ତନ ଦେଖା ଦେଇଛି । କେବଳ ମାତ୍ର ଏକ ପରିବର୍ତ୍ତନ, ପୁଣି ମୋ ସହିତ ସାମାଜିକ ଲୋକମାନଙ୍କ ସମ୍ପର୍କକୁ ଯୋଗ କରି ବିଚାର କଲେ ।

ମୋ ପରିଚୟ: ମୁଁ ଶ୍ରୀ... ଯେ କୌଣସି ଜଣେ ଯୁବକ, ଉଚ୍ଚ ଶିକ୍ଷିତ, ଏକଦା ସବୁଜ ଘାସର ଅରଣ୍ୟରେ ବୁଲୁଥିଲି । ଅଧୁନା ସାମାଜିକ ଲୋକମାନଙ୍କ ଦ୍ୱାରା ସ୍ୱୀକୃତ । ସରଳ ଭାଷାରେ କହିଲେ ମୋ ନାମ ପୂର୍ବରୁ ଏକ ବିଶେଷଣ ଯୋଗ କରାଯାଇ ମୋ ଉପରେ ଅଯଥା କିଛି ସମ୍ମାନ ଲଦି ଦିଆଯାଇଛି । ଫଳରେ ମୋ ସ୍ୱାଭାବିକ ନିଜ ପଣିଆ ମୁମୂର୍ଷୁ ଏବଂ ନୂତନ ଜୀବନ୍ତ ପ୍ରତିନିଧି ମୋ ନିକଟରେ ଅତିଥି । ତେଣୁ ଏଇ ସ୍ୱାଭାବିକ ନିଜପଣିଆ ଆଉ ନୂତନ ପ୍ରତିନିଧି ଦୁଇ ଭାବର ମୋ ଶରୀର ଉପରେ ପ୍ରଭାବ ସଂପ୍ରତି ମୋ ପାଇଁ ଅସ୍ୱସ୍ତିକର ।

ମୁଁ ମୋର ସ୍ୱାଭାବିକ ପରିବେଶରୁ ବିତାଡ଼ିତ । ମୋର ଅବସ୍ଥାନ ଏକ ନିର୍ଜନ ଦ୍ୱୀପରେ କିମ୍ବା ଏକ ପରିତ୍ୟକ୍ତ ସହରରେ ! ପରିତ୍ୟକ୍ତ ସହର, କାରଣ ଏଠାରେ ସ୍ୱାଭାବିକ 'ମୁଁ'ର ସ୍ୱଚ୍ଛନ୍ଦ ବିହାର ଏକାବେଳେକେ ଅସମ୍ଭବ ନହେଲେ ବି କଷ୍ଟକର ଯେହେତୁ ମୋର ନିଜ ପଣିଆ ଏଠାରେ ସ୍ୱାଗତଯୋଗ୍ୟ ନୁହେଁ ।

ତଥାପି ବଞ୍ଚିବାକୁ ପଡ଼ିବ ।

ଏଇଟା ହେଲା ମୋ ଦୁଇ ବ୍ୟକ୍ତିତ୍ୱର ବୁଝାମଣା ।

କିନ୍ତୁ ଏଇ ବୁଝାମଣା କେଡ଼େ କଷ୍ଟପ୍ରଦ ଏବଂ ବିରକ୍ତିକର ଏକଥା କିଏ କାହାକୁ ଖୋଲି କହିବ ! କହିଲେ ବି କିଏ ଏଡ଼େ ସହୃଦୟ ପରି ଯନ୍ତ୍ରଣାରେ 'ଆହା' ବୋଲି କହିବ ! ! !

'ଆହା' ଶବ୍ଦଟିକୁ ଖୋଜିବାକୁ ଯାଇ ଅନେକ ସମୟରେ ମୋତେ ନିରାଶ ହେବାକୁ ପଡ଼େ ଏବଂ ଏ ବିଷୟରେ ସାମାଜିକ ଲୋକମାନଙ୍କୁ ବୁଝାଇବାକୁ ଗଲେ ସେମାନେ ହସି ଦେଇ କହନ୍ତି 'ବୋକାଟିଏ' ।

ମୋ ବାସସ୍ଥାନ ପନ୍ଦର ଫୁଟରେ କୋଡ଼ିଏ ଫୁଟ ଟାଇଲ୍ ଛାତର କୋଠରୀଟିଏ । ତିନି ପାଖ ଧାନ କ୍ଷେତ, ସାମ୍ନାରେ କଚା ରାସ୍ତା, ଯତ୍ନ ଅଭାବରୁ ତା'ର ଦୁଇକଡ଼ ଦନ୍ତୁରିତ । ରାସ୍ତାକଡ଼ରେ ଝାଉଁଗଛ କେତୋଟି ଏବଂ ରାସ୍ତାଟି ଅସମାନ ହୋଇଥିବାରୁ ରାତି କେଇ ଘଣ୍ଟା ଛାଡ଼ିଦେଲେ ଅବଶିଷ୍ଟ ସମୟରେ ବଳଦ ଗାଡ଼ିର ଶବ୍ଦ ସେ ଅଞ୍ଚଳକୁ ମୁଖରିତ କରେ । କେତେବେଳେ କେମିତି ସେ ରାସ୍ତାରେ ଖଣ୍ଡେ ଅଧେ ସାଇକେଲ ଚାଲିଯାଏ, ଯଦିଓ ଆରୋହୀର ଘଣ୍ଟି ଶବ୍ଦ ପାଖଚଲା ଲୋକକୁ ଯଥେଷ୍ଟ ପୂର୍ବରୁ ସତର୍କ କରୁଥାଏ ।

ମୁଁ ସକାଳୁ ଉଠି ଦେଖେ ପ୍ରକାଣ୍ଡ ଏକ ସୂର୍ଯ୍ୟ, ଯେ ରକ୍ତରେ ଜୁଡୁବୁଡୁ ଯେମିତି । ଆଶ୍ୱସ୍ତ ହୁଏ: ମୋର ଅଧିକାର ହୁଏତ ରକ୍ତ ହେଇ ସୂର୍ଯ୍ୟ ଦେହରେ ଲେସିହୋଇ ଯାଇଛି । କିନ୍ତୁ ଶୀତ ପ୍ରକୋପରେ ଗାଡ଼ି ଆଳରେ କାକୁସ୍ତ ଦେହ ପ୍ରତ୍ୟୟକୁ ଉଣା କରେ ।

ତାପରେ ଗୋଟାଏ ଦିନ ଶୃଙ୍ଖଳାର । ନିର୍ଦ୍ଦିଷ୍ଟ ସମୟ, ସମସ୍ତ ପ୍ରକାର ନିତ୍ୟକର୍ମ, ଭୋଜନ ଏବଂ କେତେ ମିନିଟ୍ ବିଶ୍ରାମ । ଦର୍ପଣରେ ବାରମ୍ବାର ନିଜର ପ୍ରତିବିମ୍ବ, ଅଜାଣତରେ କିଛି ଆତ୍ମସନ୍ତୋଷ, ସୁନ୍ଦର ପୁରୁଷଟିର ଅନ୍ୟ ଆଗରେ କିଛି କହିବା ପାଇଁ ପୂର୍ବ ପ୍ରସ୍ତୁତି ।

ଦିନରେ ମୋ ପରିଚୟ ରୂପାନ୍ତରିତ ।

ସନ୍ଧ୍ୟା ଆସେ ।

ପୁଣି ନିସ୍ତେଜ ହୁଏ ମୋର ନୂତନ ବ୍ୟକ୍ତିତ୍ୱ ଏବଂ ଜୀବନ୍ତ ନିଜପଣିଆ ।

କୋଠରୀର କବାଟ ବନ୍ଦ କଲା ପରେ ମୁଁ ଅନୁଭବ କରେ ଯେମିତି ମୁଁ ଏକ

ମୁକ୍ତ ରାଜକୁମାର ଦୀର୍ଘଦିନ ଧରି ଶତ୍ରୁ ଶିବିରରେ ବନ୍ଦୀ ଥିଲି । ସେତେବେଳେ କୋଠରୀ ମଧ୍ୟରେ ମୁକ୍ତ ରାଜକୁମାର ଏକାକୀ ବିଚରଣ କରେ ।

ମୁଁ ଝରକା ବନ୍ଦ କରେ, କୋଠରୀର ପ୍ରତିଟି ଚିତ୍ର । ଫ୍ଲୋରୋସେଣ୍ଟ ଆଲୋକରେ ଅନ୍ଧକାର ଦୂର ହୁଏ । କ୍ରମେ ମୁଁ ଉଲଗ୍ନ ହୁଏ, ମୋର ନଗ୍ନ ଶରୀର । ଦର୍ପଣ ଆଗରେ ଗୋଟିଏ କାପୁରୁଷର ଆକର୍ଷଣୀୟ ଶରୀର ଜଡ଼ ବସ୍ତୁଟିଏ ପରି ଠିଆ ହୋଇଥାଏ ଖାଲି । ବାହାରେ ରାସ୍ତାରେ ଏବଂ ପରିତ୍ୟକ୍ତ ସହରର ପ୍ରତି ସ୍ଥାନରେ ସାମାଜିକ ଲୋକମାନଙ୍କର ଶୋଭାଯାତ୍ରା ସେମାନଙ୍କ ଶବ୍ଦ ଓ ସମ୍ମାନ ମୋ ନିଜପଣିଆକୁ ବିବ୍ରତ କରେ ।

ମୁଁ ସଚେତନ ହୁଏ । ମୋର କୋଠରୀ ଏବଂ ବାହାର ସହିତ ସମ୍ପର୍କ ରକ୍ଷା କରୁଥିବା ସମସ୍ତ ଛିଦ୍ର ବନ୍ଦ ସେତେବେଳେ । ତେଣୁ ମୋର ପୋଷାକ ସହିତ ମନର ଆବରଣରୁ ମୁକ୍ତ ହୋଇ ମୁଁ ନାଚେ ସେ କୋଠରୀର ମଧ୍ୟରେ ଏବଂ ଇଚ୍ଛାହୁଏ ସାମାଜିକ ଲୋକମାନଙ୍କୁ ଉଦ୍ଦେଶ୍ୟ କରି କହିବାକୁ: ମୁଁ ମୁକ୍ତ.... ମୁକ୍ତ... ।

ମୋ ନୃତ୍ୟର ଛନ୍ଦ କ୍ରମେ ହଜିଯାଏ ଓ ଉଦ୍ଦୀପନା କାରୁଣ୍ୟରେ ପରିଣତ ହୁଏ । ମୁଁ ଗୋଟିଏ ଅତିକ୍ରାନ୍ତ ଯୌବନା ନାରୀ ପରି ନିଜ ଅତୀତକୁ ରୋମନ୍ଥନ କରେ ।

ଠିକ୍ ସେତିକିବେଳେ: ବାହାରେ ମୋ ପଦ୍ମବନ ବିଧ୍ୱସ୍ତ, ମୋ ସ୍ୱପ୍ନ ଉପରେ କୁହୁଡ଼ିର ଘନ ଆସ୍ତରଣ ଏବଂ ଝାଉଁଗଛଗୁଡ଼ିକ ଉପରେ ଯେମିତି କେହି ଖଳ ଲୋକ ପେଟ୍ରୋଲ୍ ଢ଼ାଳି ନିଆଁ ଲଗାଇ ଦେଇଛି । ସେ ଉତ୍ତାପ ମୋ ଦେହକୁ ଉତ୍ତପ୍ତ କରେ, ମୋ ସ୍ନାୟୁଗୁଡ଼ିକ ସତେଜ ହୁଏ ଓ କି ଏକ ଯନ୍ତ୍ରଣାରେ ମୋ ଦେହ ସମ୍ପୂର୍ଣ୍ଣ ଥରୁଥିଲାବେଳେ ମୁଁ ଇଚ୍ଛା କରେ କୋଠରୀର ନୀରବତାକୁ ଭାଙ୍ଗି ଦେଇ ମୁଁ ବାହାରକୁ ଦଉଡ଼ି ଯିବି । ଏ ସହରର ପ୍ରତ୍ୟେକ ଲୋକ ଦେହରେ ମୋ ଉତ୍ତାପକୁ ଛୁଆଁଇ ଦେଇ ସେମାନଙ୍କ ଶରୀରକୁ ଉତ୍ତପ୍ତ କରିବି । ସେମାନଙ୍କୁ ବଡ଼ ପାଟି କରି କହିବି: ତମ ମନର ସମସ୍ତ ଆବରଣ ଖୋଲି ଦିଅ ତମେ ସ୍ୱାଭାବିକ ହୁଅ । ଦେଖ ଚନ୍ଦ୍ରାବତୀ (କାଳ୍ପନିକ ନାୟିକା) ଛାଲରେ ନିଆଁ ଲାଗିଥିବା ଲୋକ ଗଳ୍ପର ନାୟିକା ପରି ରାଜରାସ୍ତା ବିକଳରେ ଧାଇଁଛି, ଆକାଶର ରଙ୍ଗ ସମ୍ଭାର ତମକୁ ହାତ ଠାରି ନିମନ୍ତ୍ରଣ କରୁଛି । ବେଶ୍, ତାପରେ ଆମ ସମସ୍ତଙ୍କ ଭିତରେ ଏକ ସ୍ୱାଭାବିକତା... ପହଞ୍ଚାଇବାର ଏକ ସ୍ୱାଭାବିକ ଧାରା ।

ମୋର ଏ ଆଚରଣରେ ସେମାନେ କିନ୍ତୁ କହିବେ ପାଗଳଟିଏ ଆଉ ତା'ର ଶାନ୍ତି ସ୍ୱରୂପ ମୋ ପଛରେ ଥିବା ସାମାଜିକ ପଦବୀକୁ ମୋ ଠାରୁ କାଢ଼ିନେଇ ପୁନଶ୍ଚ

ମୋତେ ଫେରେଇ ଦେବେ ମୋର ପୁରୁଣା ପରିବେଶକୁ ।

କିନ୍ତୁ ମଣିଷର ତ ପୁଣି ଏକ ସାମାଜିକ ସ୍ୱୀକୃତି ଆବଶ୍ୟକ ।

ତେଣୁ, ହେ ମୋର ସ୍ୱାଧୀନ ଇଚ୍ଛା, ମୋର ପରାଜିତ କାମନା, ସମ୍ପ୍ରତି ତମେମାନେ ନୀରବ ରହ ମୋ ଅନ୍ତର ଭିତରେ । ତମର ସାମୟିକ ଲୀଳାକ୍ଷେତ୍ର ହେଉ ମୋର ଏ ନିବୁଜ କୋଠରୀ । ତମର ଦିନେ ଜୟ ହେବ । କାରଣ ଦିନେ ଏ ସହରର ନକଲି ବଞ୍ଚିବାର ଧାରା ରୋକ୍‌ଠୋକ୍ ପଦାରେ ପଡ଼ିଯିବ । ସେତେବେଳେ ତମେମାନେ ସକ୍ରିୟ ହେବ । ପୁଣି ମୋର ପଦ୍ମବନ ବିକଶିତ ହେବ, ଝାଉଁ ଗଛର ମର୍ମର ଲୋକ ଭିତରେ ନୂତନ ଜୀବନ ଶକ୍ତି ଆଣିଦେବ ଆଉ ଆକାଶର ବର୍ଣ୍ଣ ବିଭବ ତା' ଆଖିରେ ଇନ୍ଦ୍ରଧନୁ ସୃଷ୍ଟି କରିବ ।

ବର୍ତ୍ତମାନ କିନ୍ତୁ ମୋର ଅଭିନୟ ଏକ ସାମାଜିକ ଭୂମିକାରେ, ଯେହେତୁ ବଞ୍ଚି ରହିବା ପାଇଁ ବୁଝାମଣା ଏକାନ୍ତ ଆବଶ୍ୟକ । ଅନ୍ୟଥା ମୋର ସ୍ଥିତି ଅନିଶ୍ଚିତ ।



# ଶେଷ ମଣିଷର ଭାଷା

## ଏକ: ସାଧାରଣ ଦୃଶ୍ୟ

ଛକ ଟିରେ ଓହ୍ଲାଇଲା ବେଳକୁ ଠିକ୍ ସନ୍ଧ୍ୟା ସାଢ଼େ ଛ'ଟା ହୋଇଥିଲା । ମୁଁ ବସ୍‌ରୁ ଓହ୍ଲାଇ ପଡ଼ି ରାଜପଥରେ ପାଦ ଦେଲାକ୍ଷଣି କ୍ଲିନର୍ ଦୁଇଥର ହୁଇସିଲ ବଜାଇଲା ଓ ବସ୍‌ଟି ଗିଅର ଚେଞ୍ଜ କରି ତା'ର ସ୍ୱାଭାବିକ ସ୍ପିଡ୍ ନେଲା । ବାଙ୍କ ଘୂରି ବସ୍‌ଟିର ନାଲି ଆଲୋକ ଲିଭିଯିବା ପର୍ଯ୍ୟନ୍ତ ମୁଁ ବସଟିକୁ ଚାହିଁ ରହିଲି ଓ ପରେ ପାଖ ଦୋକାନକୁ ଚାଲିଗଲି କପେ ଚା', ଦୁଇଖଣ୍ଡ ପାନ ପାଇଁ ।

ମୋତେ ପରିବେଶଟି ଖୁବ୍ ଅସ୍ୱାଭାବିକ ଲାଗିଲା । ଛକ ରାସ୍ତା ହୋଇଥିବାରୁ ବିଭିନ୍ନ ସ୍ଥାନକୁ ଯିବାପାଇଁ ସେଠାରେ ଲୋକଙ୍କ ଭିଡ଼ ଜମେ । ଭିଡ଼ ଜମେ ଦିନର ସବୁ ସମୟରୁ ରାତି ପ୍ରାୟ ବାରଟା ପର୍ଯ୍ୟନ୍ତ । ତା' ପରେ ସ୍ଥାନଟି ଶୂନ୍‌ଶାନ ହୋଇଯାଏ ଓ ବିକ୍ରିବଟାର ଆଶା ନ ଦେଖି ପାନ, ଚା' ଦୋକାନୀମାନେ ଦୋକାନରେ ପାଣି ଧୂପ ଦିଅନ୍ତି ।

ଅଥଚ ଆଜି ସବୁ କାହିଁକି ଟିକେ ଖାପ୍‌ଛଡ଼ା ଜଣାଗଲା । ଅବଶ୍ୟ କେତେକ ଦୋକାନ ଖୋଲା ରହିଛି, କିନ୍ତୁ ଯାତ୍ରୀ ଭିଡ଼ ଅପେକ୍ଷାକୃତ କମ୍ । ପୁଣି ଦୋକାନମାନଙ୍କରେ ସନ୍ଧ୍ୟାକାଳୀନ ରୋମାଞ୍ଚ ନାହିଁ, ଗୋଟାଏ ବିଷର୍ଣ୍ଣ ନୀରବତା ଛାଇ ଦେଇଛି ଦୋକାନଗୁଡ଼ିକୁ ସକାଳର କଞ୍ଚା କୋଇଲା ଆଞ୍ଚ ଧୂଆଁ ପରି ।

ମୁଁ କାହାରିକୁ କିଛି କହିଲି ନାହିଁ । କିନ୍ତୁ ସେହି କେତୋଟି ଦୋକାନ ଉପରେ ଥରେ ଆଖି ବୁଲାଇ ନେବାକୁ ଧୀରେ ଧୀରେ ଚାଲୁଥିଲି ନୀରବରେ । ଚାଳିଗୁଡ଼ିକ ଡ଼ିବିରି ଧୂଆଁରେ ଅନ୍ଧାରିଆ, ତା ଭିତରେ କାଠ ବେଞ୍ଚକୁ ଆବୋରି କେତେଜଣ କରି ଶେତା ମଣିଷ ଗୋଡ଼କୁ ଟେକିଦେଇ ଏମିତି ଭଙ୍ଗୀରେ ବସିଛନ୍ତି ସେ ବେଞ୍ଚମାନଙ୍କ ଉପରେ, ଦେଖିଲେ ମନେ ହେବ ଯେମିତି ହାତରେ କିଛି କାମ ନାହିଁ କିମ୍ବା ଯାହା ଆସୁଛି ପାରେଇ ଯାଉ, ପରେ ଦେଖିବା ।

ଦୋକାନୀମାନେ ବରାଦ ଆନୁସାରେ ଚା'ପାନ ବଢ଼ାଇ ଦେଉଛନ୍ତି ଓ ପଇସା ନେଇ ଟିଣ ବାକ୍ସରେ ରଖୁଛନ୍ତି । ଅଥଚ କର୍ମମାନ ଯେମିତି ସ୍ୱୟଂଚାଳିତ, ସେଥିରେ କୌଣସି ଉଦ୍ୟମ ନାହିଁ ।

ମୋତେ ଅଶ୍ୱସ୍ତିକର ଲାଗିଲା । ହଠାତ୍ କାହିଁକି ଏକ ମଧୁର ସନ୍ଧ୍ୟାରେ ଲୋକଗୁଡ଼ିକ ବଞ୍ଚିବାର ଧାରାକୁ ଭୁଲିଗଲେ । ଗୋଟାଏ ଭୟ ଆଶଙ୍କାରେ ସୁଧାର ପିଲାପରି ମୃତ୍ୟୁକୁ କେବଳ ଅପେକ୍ଷା କରିଛନ୍ତି ଯେମିତି, ଆସିଗଲେ ସେମାନଙ୍କର ଦାୟିତ୍ୱ ଶେଷ । ତେଣୁ ଉଦ୍ୟମ, ଚାଞ୍ଚଲ୍ୟ କିଛି ନାହିଁ, କେବଳ 'ୱେଟିଂ ଫର୍ ଗୋଦୋ'ର ଏଷ୍ଟ୍ରାଗନ୍, ଭ୍ଲାଦିମିର୍ ପରି ଅପେକ୍ଷା କରିବା କଥା ।

ମୋର ମନେ ପଡ଼ିଗଲା, ସେଇ ଛକରେ ଗୋଟିଏ ଦୋକାନୀ, କିନ୍ତୁ ଜୀବନ୍ତ ସବୁ ସମୟରେ, ସୁଖ ଦୁଃଖ ଅବସନ୍ନତାରେ । ମୁଁ ସ୍ଥିର କରିନେଲି ତା ନିକଟକୁ ଯିବି ଓ ଏମିତି ଗୋଟିଏ ଅସ୍ୱାଭାବିକ ପରିସ୍ଥିତିର ହେତୁ ଜିଜ୍ଞାସା କରିବି । ମୁଁ ତା ନିକଟରେ ପହଞ୍ଚିଲି । ସେତେବେଳକୁ ସେ ପ୍ରଥମ ଧୂପ ବଢ଼ାଇ ସାରିଥିଲା ବୋଧହୁଏ । କାରଣ ଦୁଇ ହାତ ଉପରେ ମୁହଁଟିକୁ ଥୋଇ ଦେଇ ଟିଣ କେବିନ୍‌ରୁ ସେ ଚାହିଁଛି ଗଛ କୋରଡ଼ରୁ ପେଚାଟିଏ ପରି । ଉଚ୍ଚ ଉଚ୍ଚ ହନୁହାଡ଼ର ଗହିଡ଼ା ଭିତରୁ ଲାଲ୍ ଲାଲ ଆଖି ଦୁଇଟି ସ୍ଥିର ଅପଲକ । ସେ ଏକପ୍ରକାର ପଥର ମୂର୍ତ୍ତିଟିଏ ପରି ।

ମୁଁ ଦୋକାନ ସାମ୍ନାକୁ ଚାହିଁଲି- ତ୍ରିନାଥ ମେଳାର ପୀଠ । ପୀଠ ଉପରେ ଗୋଟିଏ ଛୋଟ କାଠ ଭାଡ଼ି, ଭାଡ଼ି ଉପରେ ନାଲି ବାକ୍ସ, ବାକ୍ସ ଦେହରେ ଛୋଟ ଚାବି, ବାକ୍ସ ସହିତ ଫିଟ୍ ହେଇଛି ହାତେ ଦେଢ଼ ହାତର ବାଉଁଶ କାଠି, କାଠି ଅଗରେ ନାଲି ପତାକା ଓ କାଠିକୁ ଡ଼େରି ହୋଇ ରହିଛି ଆଖଣ୍ଡଳମଣିଙ୍କ ଫଟୋଟିଏ । ଅନ୍ୟ ଦିନମାନଙ୍କରେ ଅନ୍ଧାର ଘୋଟିବା ପୂର୍ବରୁ ଛୋଟ କାଚ କଳା ପଡ଼ିଥିବା ଲଣ୍ଠନଟିଏ ପୀଠରେ ମାହାତ୍ମ୍ୟ ପ୍ରଚାର କରେ । ଅଥଚ ଆଜି କିନ୍ତୁ ଅନ୍ଧକାର ଭିତରେ ପୀଠଟି ପରିତ୍ୟକ୍ତ । ସନ୍ଧ୍ୟାକାଳୀନ

ଉପଚାରରୁ ମୁକ୍ତ ଆଜି ସେ ପୀଠ ।

ମୋର ଇଚ୍ଛା ହେଲା ଦୋକାନୀର ଦୃଷ୍ଟି ଆକର୍ଷଣ କରିବି ଓ ପ୍ରସଙ୍ଗକ୍ରମେ ମୋର ମୂଳ ପ୍ରଶ୍ନ ଉଠାଇବି । ଲୋକଟି ଏମିତି ଉଦାସୀନ ମନେ ହେଉଛି, ତାକୁ କିଛି କହିବାକୁ ମୋର ଭରସା ଅଣ୍ଟିଲା ନାହିଁ । ତଥାପି ଖଣ୍ଡିକାଶ ମାଧ୍ୟମରେ ତାକୁ ମୋ ଆଡ଼କୁ ଆକର୍ଷିତ କଲି ଓ ଦୁଇଖଣ୍ଡ ପାନ ପାଇଁ ବରାଦ କଲି । ଲୋକଟା ଭିତରେ ବିଶେଷ କିଛି ପରିବର୍ତ୍ତନ ହେଲାନି, କେବଳ ତା ଡ଼ୋଳା ଦୁଇଟି ସାମାନ୍ୟ ସ୍ଥାନ ପରିବର୍ତ୍ତନ କଲେ । ମୁଁ ଅନୁଭବ କଲି ଲୋକଟି ମୋତେ ଚାହିଁଛି, ଅଥଚ ତା'ର ଭାବରାଜ୍ୟଟି ପ୍ରସାରିତ କେଉଁଆଡ଼େ ।

ମୁଁ ପୁନର୍ବାର ପାନ ଦୁଇ ଖଣ୍ଡ ପାଇଁ କହିଲି ଓ ବସ୍ କେଉଁ ମୁହୂର୍ତ୍ତରେ ଆସି ଯାଇପାରେ, ସେ ଦୃଷ୍ଟିରୁ ମୋର ଶୀଘ୍ର ପାନ ଦରକାର ବୋଲି ତାକୁ ସଚେତନ କରାଇଲି । ସେ ମୁହଁ ତଳୁ ହାତ ଦୁଇଟି କାଢ଼ି ମୁହଁ ଉପରେ ଘଷିନେଲା ଓ ପରେ ପରେ ହାତ ଦୁଇଟିକୁ ଛନ୍ଦିଦେଇ ଉପରକୁ ଟେକି ଅଳସ ଭିଡ଼ିଲା । ଠିକ୍ ସେତିକିବେଳେ ତା ମୁହଁରୁ ଶବ୍ଦଟିଏ ତାସଲ୍ୟର ଭାବ ନେଇ ପ୍ରକାଶିତ ହେଲା... ପାନ !

ମୁଁ ଭାବିଲି ବୋଧହୁଏ ମୋର ବରାଦ ସମ୍ପର୍କରେ ସେ ନିଶ୍ଚିତ ହେବାକୁ ଚାହୁଁଛି । ତେଣୁ କହିଲି: ହଁ- ଦୁଇଖଣ୍ଡ ପାନ । ସେ କେମିତି ଅନ୍ୟମନସ୍କ ହୋଇଗଲା ଓ ଭଙ୍ଗା ଗଳାରେ କହିଲା; ଆହୁରି ପାନ ସଉକ !

ମୁଁ କିଛି ବୁଝି ପାରିଲି ନାହିଁ । କେବଳ ବୋକା ଲୋକଟିଏ ପରି ତା ମୁହଁକୁ ଚାହିଁ ରହିଲି । ଲୋକଟି ବୋଧହୁଏ ବୁଝିଗଲା ମୁଁ ତା କଥାର ମର୍ମ ଧରି ପାରୁନି । ତେଣୁ ପ୍ରାୟ ବିରକ୍ତ ହେଲାପରି ସେ କହିଲା- ପାନ ସଉକ ପଛରେ ବାହାରିବ, ତେଣେ ଟିକେ ଆକାଶକୁ ଚାହିଁଲ ! ଏତକ କହିଦେଇ ହାତ ଉପରେ କପାଳକୁ ଭରା ଦେଇ ସେ ମୁହଁ ତଳକୁ ଝୁଲାଇ ଦେଲା !

ମୁଁ ଆକାଶକୁ ଚାହିଁଲି; କୃଷ୍ଣ ପକ୍ଷ ରାତି । ଘନ ଅନ୍ଧାର । ତା ସହିତ ଆକାଶରେ ଧୂଳିଆ ମେଘ ନଇଁ ଆସିଛି, ରହି ରହି ବିଜୁଳି... ମୋଟା- ମୋଟି ଆକାଶର କୁହେଳିଲା ଭାବ, କେଉଁ ମୁହୂର୍ତ୍ତରେ ବର୍ଷି ଯାଇ ପାରେ । ଆକାଶ ତ ଏମିତି ଦିଶେ ସମୟ ସମୟରେ, ମୁଁ କିଛି ବୁଝିପାରିଲି ନାହିଁ । ତେବେ ଲୋକଟି ଯେତେବେଳେ ଆକାଶକୁ ଚାହିଁବା ଉପରେ ଗୁରୁତ୍ୱ ଦେଇଛି, ମୁଁ ଖୁବ୍ ନିଘାର ସହିତ ଚାହିଁଲି ବିଭିନ୍ନ ଦିଗକୁ ଯଦିଓ

ତାରାଟିଏ ବି ଦେଖିବାକୁ ପାଇଲି ନାହିଁ ଶେଷରେ ।

ମୁଁ ଆକାଶରୁ ଆସ୍ତେ ଆକ୍ଷି ଫେରାଇ ଆଣିଲି ଓ ଲୋକିଟିକୁ ପୁନର୍ବାର ଚାହିଁଲି । ସେ ସେମିତି ମୁହଁ ପୋତି ବସିଛି, ହୁଏତ କିଛି ଗୁରୁତର କଥା ଚିନ୍ତା କରୁଛି । ମୁଁ ଆଉ ଥରେ ଖଣ୍ଡିକାଶ ମାରିଲି ଓ କହିଲି ଶୁଣୁଛ ! ମୁଁ ଆକାଶକୁ ଚାହିଁ ସାରିଲିଣି ।

ଲୋକଟି ମୁହଁଟେକି ମୋତେ ଚାହିଁଲା । ଏମିତି ଚାହିଁଲା କିଛି ସମୟ ଧରି । ପରେ ବୋଧହୁଏ ତା'ର ହେତୁ ଆସିଲା । ସେ ନିଜକୁ ଫେରି ପାଇଲା ଓ ମୋତେ କହିଲା; କ'ଣ ଦେଖିଲ !

- ମେଘ !

- ବାସ୍, କେବଳ ମେଘ ?

ମୁଁ ଲୋକଟିକୁ ବୁଝି ପାରିଲିନାହିଁ । ପାନ ମିଳିବ ନାହିଁ ଧାରଣା ନେଇ ମୁଁ ଅନ୍ୟ ଦୋକାନକୁ ଚାଲି ଯାଉଥିଲି । ପଛରୁ ଲୋକଟି ଡ଼ାକି ଦେଲା । ତା'ର ସ୍ୱର ନିହାତି ଅସ୍ୱାଭାବିକ ମନେହେଲା ମୋତେ । ଯେମିତି ସେ ଅତ୍ୟଧିକ ଭୟ ପାଇ ଯାଇଛି । ମୁଁ ତା' ଡ଼ାକରେ ପଛକୁ ଫେରିପଡ଼ିଲି ଓ ଦେଖିଲି ଲୋକଟି ପ୍ରାୟ ଧକେଇ ଧକେଇ କାନ୍ଦୁଛି । ମୁଁ ଏସବୁର ରହସ୍ୟ କିଛି ବୁଝି ନ ପାରି ତା ନିକଟକୁ ଗଲି । ଲୋକଟି ଧକେଇ ବାହୁନିବାକୁ ଆରମ୍ଭ କରିଦେଲା । ସେଇ ବାହୁନିବା ଅବସ୍ଥାରେ କେତେଗୋଟି ଅସଂଯତ ବାକ୍ୟ ଉଚ୍ଚାରଣ କଲା- ପାନ ଖାଇବାକୁ ଆହୁରି ମନ ବଳୁଛି ! ଆକାଶରେ ମେଘ ଦେଖିଲା, ଖାଲି ମେଘ ନୁହେଁ କଳାମେଘ- ଆରମ୍ଭ ହୋଇଗଲା, କାଲି ଏତେବେଳକୁ କିଛି ନଥିବ, ଆକାଶ, ବସୁମାତା ଏକ ହୋଇଯିବ; ଏମିତି କହି ସେ ପ୍ରାୟ ମୁଣ୍ଡ କଚାଡୁଥିଲା ।

ଲୋକଟିର ଏ ପ୍ରକାର ଆଚରଣ ମୋତେ ଅଭିନୟ ପରି ମନେ ହେଉଥିଲା । ଏ ପରିବେଶରୁ ମୁକ୍ତି ପାଇଁ କେମିତି ଶୀଘ୍ର ବସ୍ ଆସିଯାଉ ବୋଲି ମୁଁ ସମୟ ଗଣୁଥିଲି । ସେ ଟିକେ ଦମ୍ ନେଲା ଓ ପୁଣି ଆରମ୍ଭ କଲା- ସେ ମେଳା ପୀଠକୁ ଦେଖ । ପ୍ରତି ସନ୍ଧ୍ୟାରେ ସେଠାରେ ମେଳାହୁଏ, ଏଇ ଛକରେ କେବଳ ନୁହେଁ ବାବୁ, ହେଇ ସେ ଅନ୍ଧାରିଆ ଗାଁକୁ ଚାହଁ, (ଅନ୍ଧାରରେ ଗାଁଟିକୁ ଠାବକରିବା କଷ୍ଟକର ଅବଶ୍ୟ) ଅନବରତ ମେଳା ଚାଲିଛି... ଥିଲା ନ ଥିଲା ସବୁ ଲୋକଙ୍କ ଭରସା... କ'ଣ କଲା ସିଏ ! ରଖି ପାରିବନି... ତମେ ପେଣ୍ଟପିନ୍ଧା ବାବୁ ଅନୀତି ପୂରେଇ ଦେଲ, ମନ୍ଦିର ଭିତରୁ ଟିଣପିଟି

ଠାକୁରଙ୍କୁ ହୁରୁଡ଼େଇ ଦେଲ- ତାଙ୍କ ପରାକ୍ରମ ଚାଲିଗଲା, କଉ ପାଦ ଧର୍ମକୁ ନେଇ ବସୁମାତା ସ୍ଥିର ହେଇ ରହିବ ! ସମସ୍ତଙ୍କୁ ନେଇ ଧୂଳିରେ ମିଶିଯିବ; ତା' ଚେତନାରେ ଗୋଟାଏ ନିଶ୍ଚିତ ଭୟଙ୍କର ରୂପରେ ସେ ମୁହ୍ୟମାନ ହେଇଗଲା ।

ସେଇ ଲୋକଟିର ଏଇ ଦୟନୀୟ ଆଚରଣରେ ମୁଁ ଚିନ୍ତାଗ୍ରସ୍ତ ଥିଲାବେଳେ ହଠାତ୍ କଳା ଆକାଶଟି ପାଣ୍ଡୁର ବର୍ଣ୍ଣ ଧାରଣ କଲା ଓ ପରେ ପରେ ମଧ୍ୟମରୁ ପ୍ରବଳ ପବନ ବହିବାକୁ ଆରମ୍ଭ କଲା । ପବନ ସହିତ କୁଆପଥର, ମେଘ ଓ ସାମୟିକ ବଜ୍ରପାତ । ମୁଁ ଦେଖିଲି ସେଇ ଅଳ୍ପସଂଖ୍ୟକ ଛୋଟ ଚା'ପାନ ଦୋକାନର ମାଲିକମାନେ ବାହାରକୁ ଆସିଲେ, ଉଦ୍‌ବେଗରେ ଆକାଶକୁ ଚାହିଁଲେ ଓ କେଉଁ ଅଦୃଶ୍ୟ ଶକ୍ତିର ପ୍ରତିଶୋଧପରାୟଣତାରେ ଆତଙ୍କିତ ହୋଇ ନିଜ ନିଜ ଦୋକାନକୁ ଫେରିଯାଇ ଟିଣ ତାଟିମାନଙ୍କର ବାଉଁଶ ଠେକରାକୁ ହୁଗୁଳେଇବାକୁ ଲାଗିଲେ । ସେମାନେ ନିଶ୍ଚୟ ଭୟ ପାଇ ଯାଇଛନ୍ତି । ଅନ୍ୟଥା ଟିଣ ତାଟିଗୁଡ଼ିକୁ ବନ୍ଦ ନ କରି ପ୍ରକୃତରେ ଏଇ ଲୀଳାକୁ ତନ୍ମୟ ହୋଇ ଉପଭୋଗ କରିଥାନ୍ତେ, ଠିକ୍ ଯେମିତି ବୃଦ୍ଧ ବ୍ୟକ୍ତିଟି ତା'ର କୋଥଳୀ ଖୋଲିଦେଇ ବିଗ୍ରହ ସାମ୍ନାରେ ବସିରହି ଏକ ଲୟରେ ସେଇ ପରମ ପୁରୁଷଙ୍କ ସ୍ଥିତି ରହସ୍ୟକୁ ଅନ୍ୱେଷଣ କରୁଥାଏ ।

ମୋ ପାଇଁ ସଂପ୍ରତି ଏକ ସମସ୍ୟା, ମୋତେ କେଉଁଠି ଟିକେ ଅପେକ୍ଷା କରିବାକୁ ପଡ଼ିବ ପର ବସ୍ ଆସିବା ପର୍ଯ୍ୟନ୍ତ । ପ୍ରକୃତିର ଏଇ ଭୟଙ୍କର ଆମୋଦଦାୟକ ଲୀଳାକୁ ଉପଭୋଗ କରିବାର ଧୈର୍ଯ୍ୟ ନଥିଲା ମୋର ଗିରି ଖୋଲର ସିଦ୍ଧ ସାଧକମାନଙ୍କ ପରି । ଏମିତି ଏକ ଚିନ୍ତା ଭିତରେ ମୋ ପ୍ରତି ଏକ ଅନାଶକ୍ତ ସମ୍ବୋଧନକୁ କାନଦେଲି । ଅତିରିକ୍ତ ନିଶାରେ ସେଇ ଭାରସାମ୍ୟହୀନ ଦୋକାନୀଟି ମୋତେ ହାତଠାରି ଡ଼ାକୁଛି ତା'ର କେବିନ୍ ଭିତରକୁ । ଏକ ନିଶ୍ଚିତ ଅସୁବିଧାରୁ ମୁକ୍ତି ପାଇଁ କୌଣସି କଥା ଚିନ୍ତା ନ କରି ତା' କେବିନ ଭିତରକୁ ପଶିଗଲି ଓ ଗୋଡ଼ ଦୁଇଟି ଉପରକୁ ଟେକି ନେଇ ଯାକିଯୁକି ହୋଇ ଗଡ଼ିପଡ଼ିଲି । ସେ ତା'ର କେବିନ ବନ୍ଦ କଲା, ପାନ ସରଞ୍ଜାମ ସବୁ କ୍ରମେ ସଜାଇ ରଖିଲା । ତଥାପି ତା' ମୁହଁର ସେଇ ବିମର୍ଷ ଭାବଟି ମୋତେ ବିବ୍ରତ କଲା । ପୁଣି ତା'ର ସେଇ ଲାଲ୍ ଲାଲ୍ ଆଖିରେ ଲୁହ ବିନ୍ଦୁ କେତୋଟି ଟଳଟଳ ହେଉଥିଲା ପଦ୍ମ ପାଖୁଡ଼ାରେ ଜଳ ବିନ୍ଦୁ ପରି ।

ସବୁ ସଜାଇ ରଖିଲାପରେ ସେ କିଛି ସମୟ ଗୁମ୍‌ମାରି ବସିଗଲା ଓ ପରେ ପରେ ଆରମ୍ଭ କଲା ଏଥର ସରିଗଲା... ଆଉ ହବନି, ପ୍ରଭୁ ଆଖଣ୍ଡଳମଣି (ଦୁଇହାତ

ଯୋଡ଼ି ଜୁହାର କଲା) ଆଉ ଥରେ ଯଦି ଦୁନିଆଁ ବାନ୍ଧିବୁ, 'ସତ'ର ଦୁନିଆ ବାନ୍ଧିବୁ...ଲୋଭ ନ ଥିବ, ମୋହ ନ ଥିବ, ପର ତଣ୍ଟିକାଟିବାକୁ ଅଣ୍ଟାରେ ଛୁରୀ ନଥିବ, ଆଉ ସମୟ ସୁବିଧା ଦେଖି ମନରେ ସାଇତିଥିବା ଯନ୍ତ୍ରର ମୁଖା ଗୋଟିଏ ଗୋଟିଏ ବଦଳୁ ନଥିବ ।

ମୁଁ ତା କଥା କିଛି ବୁଝି ପାରିଲି ନାହିଁ ଓ ସେ ମୋତେ ଆଶ୍ରୟ ଦେଇଥିବାରୁ କୃତଜ୍ଞତାବଶତଃ ତା କଥା ଶୁଣିଥିବାର ଛଳନା କରୁଥିଲି । ବୁଝିଲ ବାବୁ, ସେ କହିଲା- ବିଜ୍ଞାନୀ ବାବୁମାନେ କହୁଛନ୍ତି କେଉଁ ଦି'ଶହ କି ହଜାର ବର୍ଷ ତଳେ ସୂର୍ଯ୍ୟ ଏମିତି ପୃଥିବୀ ଅନ୍ଧାର କରି ଦେଇଥିଲା... ଅନ୍ଧାର କରିଦେଲା ଯେ ଚାଲିଗଲା କିଛି ବର୍ଷ- ଓଁ ଭିତରେ ଯୋଗମାୟା ଉଭାନ ହୋଇ ଶୋଇଗଲେ... ଶୂନ୍ୟରୁ ବିନ୍ଦୁ ପଡ଼ିଲା ଯୋଗମାୟାଙ୍କ ଯୋନୀରେ, ସମୟ ଠିକ୍ ନ ଥିଲା- ଶଳା ବାଲୁଙ୍ଗା ଦୁନିଆଟା ସର୍ଜନା ହେଲା । ଏଥର ନା ସତ୍ ଦୁନିଆ ଆସିବ, (ସେ ପିଲାଙ୍କ ପରି କାନ୍ଦି ଉଠିଲା) ହେଲେ ବାବୁ ସେ ସତ୍ ଦୁନିଆର ମଣିଷ ହବାକୁ ଆମ କପାଳରେ ନାହିଁ ।

ସେ ପୁନର୍ବାର କିଛି ସମୟ ଚୁପ୍ ରହିଲା ।

ମୁଁ ପୋଷାକୀ ଭାଷାରେ କହିଲି: 'ତୁମେ ସୂର୍ଯ୍ୟପରାଗ ପାଇଁ ଭୟ ପାଇଯାଇଛ । ଏଥିରେ ଭୟ କରିବାର କିଛି ନାହିଁ । ପରାଗ ସମ୍ପୂର୍ଣ୍ଣ ପ୍ରାକୃତିକ ନିୟମ । ତୁମେ ଦେଖିବ, ପୁଣି କାଲି ତୁମେ ଦୋକାନ ଆରମ୍ଭ କରିବ ଓ ମୁଁ କେଉଁ ଦିନ ବସ୍‌ରୁ ଓହ୍ଲାଇ ତୁମଠାରୁ ପାନ ଖାଇବି । ଦୁନିଆ ଯେମିତି ଚାଲିଛି, ଠିକ୍ ସେମିତି ଚାଲିବ ।'

ମୋ କଥା ସରିବା ପୂର୍ବରୁ ସେ ପ୍ରାୟ ଚିହିଁକି ଉଠିଲା- ସେ କଥା ମୁହଁରେ ଧରନା ବାବୁ ! ଯାଉ... ଯାଉ, ଶେଷ ହେଉଯାଉ, ସବୁ ଧ୍ୱଂସ ହେଇଯାଉ, ସବୁଦିନ ବନ୍ଦ ହେଇଯାଉ ଦୁନିଆଟା... ଶଳେ, ପାପରେ ଛାଇଦେଲେ ଦୁନିଆକୁ... ମାୟାକୁ ସତ ମଣିଲେ, ବ୍ରହ୍ମକୁ ଶଳାଟାପରା କଲେ... ଖାଲି ଭାଷଣ- ନରନାରାୟଣ, ଦରିଦ୍ର ନାରାୟଣ, ଶୁଣିବ ବାବୁ !

ସେ ଏତକ କହି ଟିକେ ଦମ୍ ନେଲା ଓ ଅସହାୟ ଭାବରେ ଏଣେତେଣେ ଚାହିଁ କହିଲା (କଥା ମଝିରେ ବାହାରକୁ ତୁଙ୍ଗି ଦେଇ ପ୍ରକୃତିର ଲୀଳାକୁ ପ୍ରତ୍ୟକ୍ଷ କରୁଥିଲା ) 'ବୋଇଲେ, ମୋ ବଡ଼ ପୁଅ ! ପାନ ଦୋକାନରୁ ଦି' ପଇସା କରି ତାକୁ ମେଟ୍ରିକ ଯାଏ ପଢ଼ାଇଲି, ଦଶ ପଚାଶ ହାତରେ ଦେଇ କଟକ, ଭୁବନେଶ୍ୱର ପଠାଇଲି ଖଣ୍ଡେ ଚାକିରୀ ପାଇଁ । ସେ କ'ଣ କଲା ଜାଣ ! ଦିନେ ଦେଖିଲାବେଳକୁ ସିଆଡୁ

ସିଆଡ୍ରୁ ହଲେ ଖଦଡ଼ ପୋଷାକ କରିଆଣିଛି । କଥା କଣ ନା, ସରପଞ୍ଚ ହେବ । ଭଲକଥା, ସେ ନିଷ୍ଠା ଥାନ୍ତା! ବାବୁ ଓଡ଼ିଶା କୁହ କି ଭାରତ କୁହ... ଆମ ପିଲାବେଳେ ନେତା କହିଲେ ସାକ୍ଷାତ ଠାକୁରଟିଏ, ପିଠିରେ ହାତ ମାରିଦେଲେ ଦୁଃଖ ଚାଲି ଯାଉଥିଲା । ଆଉ ଏ ଶଳାର ପାଞ୍ଚବର୍ଷରେ ଦଶଟା ଦଳ... ଖାଲି ସରପଞ୍ଚ ହବ, କଉଠି ଗୁଣ୍ଡହୁଧ/ ବଲ୍‌ଗାର, ରାଣ୍ଡ ସମ୍ମିଳନୀ ପଇସା... କଟକ, ଭୁବନେଶ୍ୱରରେ ମନ୍ତ୍ରୀଙ୍କ ପାଖରେ ଆଡ୍‌ଡ଼ା... ବାବୁ, ତମେ କହୁନ! ମଣିଷର ନୀତି ଗଲେ ମଣିଷ/ଘୁଷୁରୀ/କୁକୁର ଭିତରେ ତଫାତ୍ କ'ଣ? ଗଳାଝାଡ଼ି ସେ କହିଲା; ତୁମେ କହିବ ବଡ଼ ବଡ଼ ନେତା ଏ କାମ କରୁଛନ୍ତି..., ତାଙ୍କ ମାନଙ୍କଠୁଁ ଛୁଆ ଏ କଥା ଶିଖୁଛନ୍ତି । ହେଲେ ସେ ଇଂରେଜକୁ ତଡ଼ିଲେ, ଜିଅଲ ଗଲେ, ଦେଶ ଚଳେଇବାକୁ ଠିକାନେଲେ... ସେ ବଡ଼ଲୋକ, ତାଙ୍କୁ ଏକଥା ସୁହାଇବ । ତା ବୋଲି ତୁ ଶଳା, ଗାଣ୍ଡି ଧଇଲେ ମୁଣ୍ଡ ନାହିଁ, ତୁ ଭାବିଛୁ ଏ ଗାଁକୁ ଦିଲ୍ଲୀ, ଭୁବନେଶ୍ୱର କରିଦେବୁ!

ଏତକ କହିକି ଏଇ ଯନ୍ତ୍ରଣାରେ ସେ କାନ୍ଦି ପକାଇଲା ଓ ପୁନର୍ବାର ବାହାରକୁ ଚାହିଁଲା । ସେମିତି ଅବିରାମ ଗତିରେ ପ୍ରଳୟଙ୍କରୀ ବର୍ଷା ଦୁନିଆକୁ ଗଭୀର ଅନ୍ଧକାର ମଧ୍ୟକୁ ଠେଲି ଦେଇଥିଲା ।

ଯାଉ, ସବୁ ସରିଯାଉ, ଦୁନିଆଁ ଧ୍ୱଂସ ହୋଇଯାଉ... ଖାଲି ବାବୁ ଅବଶୋଷ ଆଖି ବୁଜିଦେଲେ ଅନ୍ଧାର ଘୋଟିଯିବ– ନା ବାବା ଆଖଣ୍ଡଳମଣି ମିଳିବେ, ନା ଆପଣ ସଞ୍ଜ ବସ୍‌ରୁ ଓହ୍ଲାଇ ପାନ ଖାଇବେ! ଅନ୍ଧାରରେ ଆହା! ଆଉ ଆଲୁଅ ଦେଖିହେବ ନି । ନ ହେଉ ନହେଉ, (ସେ ଉତ୍ତ୍ୟକ୍ତ ହୋଇ ପଡ଼ିଲା) ଦଳ ବଦଳ କରି ସେମ୍‌ଟା ସେମ୍‌ଟା କଳା ଲୋକଙ୍କୁ ରାଜୁତି କରିବା ଆଉ ଚଳିବନି..., କହିସାରି ସେ ଆଉ ଗୋଟିଏ ଦମ୍ ପାଇଁ ଚିଲମ୍ ସଜାଡ଼ିଲା ଓ ଠିକ୍ ସେତିକିବେଳେ ମୋ ସହରକୁ ଶେଷ ବସ୍‌ଟି ଆସିଗଲା । ମୁଁ ବଞ୍ଚିଗଲି, ତାକୁ କିଛି କହିବାକୁ ସୁଯୋଗ ନ ଦେଇ 'ବସ୍ ଆସିଗଲା କହି' ତା ଦୋକାନରୁ ପ୍ରାୟ ଡ଼େଇଁ ପଡ଼ିଲି ।

## ଦୁଇ: ଶରୀମାର୍ଥ

ବର୍ଷା ବର୍ଷୁଥିଲା, ପବନର ବେଗ ଜୋର୍ ଥିଲା ଓ ମଝିରେ ମଝିରେ ପ୍ରବଳ ଘଡ଼ଘଡ଼ିର ଶବ୍ଦ ଥିଲା ଆକାଶରେ । ପ୍ରତ୍ୟେକଟି ଟିଣ କେବିନ୍‌ର ଅପେକ୍ଷାମାଣ ଯାତ୍ରୀ ହୁରୁଡ଼ା ବେଙ୍ଗ ପରି ଫକ୍ ଫାକ୍ ଡ଼େଇଁ ପଡ଼ିଲେ ଓ ବସ୍ ଫାଟକ ନିକଟରେ ଭିଡ଼ ଜମାଇଦେଲେ । ଅଥଚ ସେ ଭିଡ଼ ଭିତରେ ମୁଁ ନିଜକୁ ବେଶ୍ ପ୍ରତିଷ୍ଠିତ କରି ସାରିଥିଲି

ଯେହେତୁ ଉପସ୍ଥିତ ଲୋକମାନେ ସ୍ୱତଃ ମୋତେ ରାସ୍ତା ଛାଡ଼ିଦେଲେ । ବସ୍‌ରେ ପଶିଗଲି ଏବଂ ଗୋଟିଏ ସାଇଡ୍ ସିଟ୍ ପାଇଗଲି ବି । ପରେ ପରେ ବସ୍‌ରେ ଥରେ ଆଖି ବୁଲାଇ ନେଲି ଏବଂ ଅନେକ ଚିହ୍ନା ମୁହଁ / ଯୋଡ଼ହସ୍ତ ନମସ୍କାର- ସାମାଜିକ ସ୍ତରରେ ସେମାନେ ମୋ ଠାରୁ ଢ଼େର ନିମ୍ନରେ । ସ୍ୱାଭାବିକ ଅହଂକାରରେ ମୁଁ ସ୍ଫୀତ ହୋଇଗଲି ଏବଂ ଧୂମ୍ରପାନର ବାରଣ ସତ୍ତ୍ୱେ ନିଜକୁ ଅଧିକ କିଛି ପ୍ରମାଣ କରିବାକୁ ସିଗ୍ରେଟ୍‌ରେ ନିଆଁ ଧରାଇଲି । ନିଆଁ ନ ଧରାଇ ଥିଲେ ଚଳିଥାନ୍ତା ଅଥଚ୍ ସେ ଲୋକଙ୍କୁ ଧାରଣା ଦେବାକୁ ହେବ ମୁଁ ଜଣେ ବଡ଼ ଲୋକ ଏବଂ ବଡ଼ ଲୋକମାନେ କୋହଲାପାଗରେ ସିଗ୍ରେଟ୍ ଟାଣନ୍ତି, ସମୟରେ ଡ୍ରିଙ୍କ୍ କରନ୍ତି, ଗାଁ ଲୋକଙ୍କପରି ମୁଢ଼ି ନଡ଼ିଆ ନ ଚୋବାଇ ।

ଏଇ ସିଗ୍ରେଟ୍ ଟଣା ଭିତରେ ମୋର ଗୋଟିଏ ସଂଜ୍ଞା ଖୋଜି ପାଇଗଲି- ମୁଁ ଜଣେ ଇଣ୍ଟଲେକ୍‌ଚୁଆଲ । ମୁଁ ସେ ସାଧାରଣ ଗଞ୍ଜେଇଟଣା ଆଖଣ୍ଡଳମଣି ବିଶ୍ୱାସୀ ଲୋକ ନୁହେଁ ଯେ ସୂର୍ଯ୍ୟ ପରାଗକୁ ଭୟ କରି ପୃଥିବୀ ପ୍ରଳୟର ଏକ ଅନିଶ୍ଚିତ ରୂପ ଦେଖି ଜୀବନକୁ ବିକଳରେ ଜାବୁଡ଼ି ଧରେ । ପୁଣି ପୁଅ ପାଞ୍ଚଥର ସରପଞ୍ଚ ହେବା ପାଇଁ ବିଭିନ୍ନ ଚିହ୍ନରେ ନିଜକୁ ସାମିଲ କରିଦେଲା ପରେ ନୀତିଗର୍ହିତ କାର୍ଯ୍ୟ ଘଟିଗଲା ବୋଲି ମରଣକୁ ସ୍ୱାଗତ କରେ । ସେ ଶାଳା ! ସାଧାରଣ ସମାଜର ତଳ ଲୋକଟିଏ ନୈତିକତା/ ମୃତ୍ୟୁ ପରି ଗୁରୁତ୍ୱପୂର୍ଣ୍ଣ ବିଷୟମାନ ସମ୍ପର୍କରେ କିଛି ପ୍ରତ୍ୟକ୍ଷ ଅନୁଭୂତି ନ ଆଣି ଗଞ୍ଜେଇ ନିଶାରେ ନୀତି-ଅନୀତିର ବ୍ୟାଖ୍ୟାନ କରିବା ସହିତ ମରଣକୁ କୁଣ୍ଠିତ ଭାବରେ ଗ୍ରହଣ କରେ ।

ମୁଁ ଜଣେ ଇଣ୍ଟେଲେକ୍‌ଚୁଆଲ । ମୁଁ ଆନୁଷ୍ଠାନିକ ଧର୍ମକୁ ଅସ୍ୱୀକାର କରେ । ମୁଁ ସେ ଶେଷଲୋକମାନଙ୍କର ବିଶ୍ୱାସ ଓ ଧାରଣାକୁ ସିଗ୍ରେଟ୍ ଧୂଆଁରେ ଉଡ଼ାଇଦିଏ । ନୀତି-ଅନୀତି କଥାଟା ମୋ ମତରେ ନିହାତି ଏବ୍‌ଷ୍ଟ୍ରାକ୍ଟ । ସତ କହିବାକୁ ଗଲେ ସେଗୁଡ଼ିକ ମୋ ନିକଟରେ ଆପେକ୍ଷିକ । କାରଣ କେବଳ ଅସ୍ୱୀକାର କରେନା, ମୁଁ ଆନୁଷ୍ଠାନିକ ଧର୍ମକୁ ଘୃଣାକରେ । ଘୃଣାକରେ ଏଇଥିପାଇଁ ସିଂହାସନରେ ଅଧିଷ୍ଠିତ ଦେବତାଙ୍କ ସହିତ ଆମର ସିଧାସଳଖ ସମ୍ପର୍କ ନଥାଏ, ପୁଣି ତାଙ୍କ ଆତ୍ମା-ପୁରୁଷ କୁଆଡ଼େ ବୈକୁଣ୍ଠରେ ବୋଲି ଆମକୁ କଳ୍ପନାରେ ଧରିନେବାକୁ ପଡ଼ିବ । ଏଇ ଅଦୃଶ୍ୟ ଶକ୍ତି ସହିତ ଆମକୁ ଯୋଗସୂତ୍ର କରାଇବାର ଦାୟିତ୍ୱ ଜଣେ ଧୂର୍ତ୍ତ ଦଲାଲ୍‌ର ଯେ ପ୍ରାଚୀନ କାଳରୁ ସବୁତକ ସରଳ ଲୋକଙ୍କୁ ମେଣ୍ଢା କରି ନିଜର ସମ୍ବଳ ସ୍ଥିର କରି ଦେଇଛି, ଆଧୁନିକ କାଳରେ ମନ୍ତ୍ରୀମାନଙ୍କର 'ଫ୍ଲୋଟିଂ' ଦଲାଲ୍‌ମାନଙ୍କ ପରି । ତେଣୁ ମୁଁ ମଧୁବାବୁଙ୍କୁ ପ୍ରେମକରେ-

ପରେ ପରେ ଠାକୁରଙ୍କୁ ମଣିଷଟିଏ ହେବା ପାଇଁ, ନିଜକୁ ଅନୁଭବ କରିବା ପାଇଁ, ଗୋଟିଏ ନିଜକୁ କୋଟିଏ କରିଦେବା ପାଇଁ ମୋ ଭିତରେ ବ୍ୟାକୁଳ ଆଗ୍ରହ । ସୂର୍ଯ୍ୟପରାଗ ତେଣୁ ମୋ ପାଇଁ ଗୌଣ, ପୃଥିବୀ ପ୍ରଳୟ, ନେତାମାନଙ୍କର ଦଳବଦଳ, ଦଳୀୟ ଶାସନରେ ପୁତ୍ର-କନ୍ୟାଙ୍କୁ ଉତ୍ତରାଧିକାର ସୂତ୍ରରେ ସ୍ଥାପନ କରିବାର ଉଦ୍ୟମ, ସବୁ ଗୌଣ; କେବଳ ମୋର ଟିକିଏ ପ୍ରେମ ଦରକାର । ଆନୁଷ୍ଠାନିକ ଧର୍ମର ରିଚୁଅଲ ଭିତରେ ସେ ପ୍ରେମର ଉପଲବ୍ଧି କଷ୍ଟକର ବୋଲି ମୋର ଧାରଣା ।

ଏ ସବୁ ସତ୍ତ୍ୱେ ମୋ ନିକଟରେ ଗୋଟିଏ କଥା ସକ୍ରିୟ/ଜୀବନ୍ତ, ମୁଁ ଇଣ୍ଟେଲେକ୍‌ଚୁଆଲ, ସାଧାରଣ ନୁହେଁ । ମୋର ଧର୍ମପାଳନଠାରୁ ସବୁ କଥାରେ ଗୋଟିଏ ସୀମାବଦ୍ଧତା, ଗୋଟାଏ ସ୍ୱାତନ୍ତ୍ର୍ୟ । ମୁଁ ଇଣ୍ଟେଲେକ୍‌ଚୁଆଲ ବୋଲି ସିଚୁଏସନ୍‌କୁ ନେଇ ମୋର ଭିନ୍ନ ଭିନ୍ନ ରୂପ ଏବଂ ଲୋକମାନଙ୍କ ଦ୍ୱାରା ସାଦରରେ ଗୃହୀତ ମଧ୍ୟ । ଧର୍ମ ସଭାରେ ମୁଁ ସଂଯତ, ରାଜନୀତିରେ ପ୍ରଗଳ୍‌ଭ, ସାହିତ୍ୟ ସଭାରେ ମୁଖସ୍ଥକାରୀ ବନ୍ଧା ଗତ ଶବ୍ଦ କେତୋଟି ଏବଂ ମୁଁ ନିଶ୍ଚିତ 'ମୁଁ', 'ମୁଁ', ନୁହେଁ ସେତେବେଳେ; ଅନ୍ୟମାନଙ୍କ ନିକଟରୁ ନିଜକୁ କାଢ଼ି ନେବାକୁ ସ୍ୱକଳ୍ପନାରେ ନିର୍ମିତ ସୁପର 'ମୁଁ' ।

ମୁଁ ମୋର ଗୋଟିଏ ଷ୍ଟେଟସ୍ ଗଢ଼ିଛି, ସମାଜରେ ନିଜ ପାଇଁ ଗୋଟିଏ ଆସ୍ଥାନ ଖୋଜି ପାଇଛି ଏବଂ ତାକୁ ଦୃଢ଼ କରିବା ପାଇଁ ଆନୁଷ୍ଠାନିକ ଧର୍ମ ବିଚାରର ନୀତି-ନିୟମ, ପାପ-ପୁଣ୍ୟକୁ ସେଥିପାଇଁ ଆଖି ବୁଜି ଦେଇଛି । ମୋର ପବ୍ଲିସିଟି ମାଧ୍ୟମ ଖୁବ୍ ଶକ୍ତିଶାଳୀ, କାରଣ ମୁଁ ଏକୁଟିଆ ନୁହେଁ, ମୋ ଗୋଷ୍ଠୀ ଅଛି, ସମାଜ ଅଛି, ହେଉ ବରଂ ସଂଖ୍ୟା ନଗଣ୍ୟ । ସେଇ ଛୋଟ ଗୋଷ୍ଠୀଟିରେ ମଧ୍ୟ ଆମେ ଠେଲାପେଲା ଲାଗୁ 'କିଉ'ର ପ୍ରଥମ ଧାଡ଼ିରେ ପହଞ୍ଚି ଯିବାକୁ । ପରସ୍ପରରେ ସ୍ତୁତିଗାନ ମୁହୂର୍ତ୍ତରେ ସମୟ-ସୁଯୋଗ ନେଇ ପ୍ରଚାରଧାରାକୁ ପରସ୍ପର ବିରୁଦ୍ଧରେ ଭିନ୍ନ ମୁଖୀ କରାଇଦେବାର ପ୍ରବଣତା ବି ଅଛି ଆମମାନଙ୍କ ନିକଟରେ ।

ମୁଁ ଜଣେ ଇଣ୍ଟେଲେକ୍‌ଚୁଆଲ୍, ଅଥଚ ମୋର ଅବଶୋଷ ମୁଁ ଗଳ୍ପ କବିତା ଲେଖିପାରେ ନା । ଗଳ୍ପ-କବିତା ଲେଖିବା ପ୍ରଚାରର ଗୋଟିଏ ସୁନ୍ଦର ମିଡ଼ିଆ, ଯେଉଁଠି ସ୍ୱଧର୍ମର କେତେକ କ୍ରିଟିକ୍ ଅଛନ୍ତି, ପାଞ୍ଚଥର ତାଙ୍କ ନିକଟରେ ମୁଁ ବସିଗଲେ କାମ୍ୟୁ-ସାର୍ତ୍ରଙ୍କୁ ଟପି ଯାଇପାରିବି, ଗୋପୀ ମହାନ୍ତିଙ୍କୁ କିଏ ପଚାରେ ! ଅନ୍ତତଃ ସେ ସୁଯୋଗ ନ ପାଇଲେ ଏତକ କରିପାରନ୍ତି- ଗଳ୍ପର ପରିବେଶ ସୃଷ୍ଟି କରିଦେଇ ଚରିତ୍ରମାନଙ୍କୁ ଟାଣି ଆଣନ୍ତି କୌଣସି ମହିଳା ହଷ୍ଟେଲ୍‌ରୁ କିମ୍ବା ଫିପ୍‌ଥ ଇଅର ରୋମିଓମାନଙ୍କ ମଧ୍ୟରୁ

ଯେଉଁମାନେ ସେମାନଙ୍କ ଆଡ୍‌ଡାରେ ପରସ୍ପରକୁ ପ୍ରଶ୍ନ କରନ୍ତେ: 'ନାୟକର ଗଳ୍ପ-କବିତା ପଢ଼ିଛ, ଖୁବ୍ ରୋମାଣ୍ଟିକ୍ ନାଁ! (ଅବଶ୍ୟ ମୁଁ ଲେଖି ଜାଣେନା, କଳ୍ପନାରେ ଅନେକ କଥା ମଣିଷ ଭାବିଯାଏ ତ!) କିମ୍ବା କାମ୍ୟୁ-ସାର୍ତ୍ତ-କାଫ୍‌କା-ଶୀର୍ଷେନ୍ଦୁ ମୁଖୋପାଧ୍ୟାୟଙ୍କୁ ଓଡ଼ିଆ ପୁଅରେ ରୂପାନ୍ତରିତ କରି ସେମାନଙ୍କ ଭାଷାକୁ ମାତ୍ର ଭାଷାରେ ପରିଣତ କରିଦିଅନ୍ତି। ଏସବୁ କରିବାର ପ୍ରବଣତା ମୋ' ଭିତରେ ଅଛି, କାରଣ ମୁଁ ଇଣ୍ଟେଲେକ୍‌ଚୁଆଲ୍ ଓ ଫକୀର ମୋହନଙ୍କ ଭଗିଆ-ସାରିଆ, ବିରେଇ ବିଶ୍ୱାଳଙ୍କୁ ମୁଁ ଚିହ୍ନେନା। ମୁଁ ପାପ କରି ଜାଣିଛି ଏବଂ ପରମୁହୂର୍ତ୍ତରେ କହି ଜାଣିଛି! ଓଃ ଗଡ୍! ଫରଗିଭ୍ ମି, ଆଇ ଆମ୍ ଇନୋସେଣ୍ଟ!

ମୁଁ ତେଣୁ ଜଗନ୍ନାଥଙ୍କ ପ୍ରସାରିତ ବାବୁ ପ୍ରତି ଉଦାସୀନ, ଶହେ ଲୋକଙ୍କର ମାଛି ଗଣ ଗଣ ମହାପ୍ରସାଦ ସେବନ ପ୍ରତି ବୀତସ୍ପୃହ ଓ ଘୃଣା କରେ ମଧୁବାବୁଙ୍କ ଟୋପିକୁ, ଗୋପବନ୍ଧୁଙ୍କ ଦାଢ଼ୀକୁ। ଭୂଲରେ ଓଡ଼ିଆ ମାଟିରେ ଜନ୍ମିଥିଲେ ବି ମୁଁ ଇଣ୍ଟେଲେକ୍‌ଚୁଆଲ ଓ ଅନ୍ଧବିଶ୍ୱାସର ଓଡ଼ିଆ ଜୀବନଧାରାଠାରୁ ନିରାପଦ ଦୂରତ୍ୱରେ। ମୁଁ କାହିଁକି ସେ ଗଞ୍ଜୋଡ଼ ଓ ଅନ୍ୟାନ୍ୟ ସହଯୋଗୀ କେବିନ୍ ବାଲାଙ୍କ ଭୟ/ଆଶଙ୍କାକୁ ନିଜ ମୁଣ୍ଡକୁ ନେବି। ସୂର୍ଯ୍ୟପରାଗ / ଚନ୍ଦ୍ର ଗ୍ରହଣ ଏସବୁ କଥା ପ୍ରକୃତିର ନିୟମ ବୋଲି ମୁଁ ଢ଼େର ଢ଼େର ବିଜ୍ଞାନରୁ ପଢ଼ିଛି।

ହଠାତ୍ ଗୋଟିଏ ସମବେତ ଶବ୍ଦରେ ମୋର ଧ୍ୟାନ ଭାଙ୍ଗିଲା। ମେଘ ଛାଡ଼ି ଯାଇଛି। ପରିବେଶ ଭାରି ଭାରି। ଫ୍ଲାସ୍ ଲାଇଟ୍ ପରି ମଝିରେ ମଝିରେ ଯାହା ବିଜୁଳି। ମୁଁ ବସ୍‌ର କାଚ ଦେଇ ବାହାରକୁ ଚାହିଁଲି- ମହାନ୍ତି ଷ୍ଟୋରରୁ ଶଙ୍କର କ୍ଲଥ୍ ଷ୍ଟୋର୍ ପର୍ଯ୍ୟନ୍ତ ସବୁ ସାମ୍ନାକୁ ଚାଲିଆସିଲା। ମୋର ହୃଦ୍‌ବୋଧ ହେଲା ମୋ ସହରରେ ମୁଁ ପହଞ୍ଚି ଯାଇଛି ଓ ଏଠାକାର ଲୋକମାନେ ଅନିଶ୍ଚିତ ପ୍ରଳୟର ଆଶଙ୍କାରେ ମ୍ରିୟମାଣ ହୋଇ ନଥିବେ। ଅଥଚ ସେ ଶବ୍ଦ ଓ ଦୋକାନମାନଙ୍କର କରୁଣ କେଣ୍ଡଲ ଆଲୋକ ମୋ ଇଣ୍ଟେଲେକ୍‌ଚୁଆଲ 'ମୁଡ୍' ଭିତରକୁ କେମିତି ଗୋଟିଏ ଆଶଙ୍କା ଜୋର କରି ଠେଲି ଦେଲା।

ବସ୍‌ରୁ କ୍ରମେ ଲୋକ ଓହ୍ଲେଇ ଯାଉଥିଲେ ଓ ମୋ ପରି ଜଣେ ସକ୍ରିୟ ଲୋକ ଏମିତି ଅବଶ ହୋଇ ବସିଥିବାରୁ କୌତୂହଳ ବଶତଃ ମୋତେ ଚାହିଁଦେଇ ଯାଉଥିଲେ। କେହି କେମିତି କିଛି ଶବ୍ଦ ଫିଙ୍ଗୁଥିଲେ ମୋ ଉପକକୁ: କ'ଣ ଆଜ୍ଞା ଓହ୍ଲେଇବେ ନି! ଜିନିଷପତ୍ର ଅଛି, ରିକ୍‌ସା ଡ଼ାକିଦେବି-ଇତ୍ୟାଦି। ମୁଁ କେବଳ ଏକ ଆର୍ଟିଫିସିଆଲ

ଏକ୍‌ସନ୍‌ରେ ଜଣାଉଥିଲି ଆପଣଙ୍କ ଆନୁଗତ୍ୟ ପ୍ରତି ମୋର ଶ୍ରଦ୍ଧା ଅଛି, ତଥାପି ମୋ ବିଷୟରେ ମୁଣ୍ଡ ନ ଖେଳାଇ ଓହ୍ଲାଇ ଯାଆନ୍ତୁ ।

ସବା ଶେଷରେ ମୁଁ ବସ୍‌ରୁ ଓହ୍ଲାଇଲି । ମାଟି ଉପରେ ଗୋଡ଼ ଦୁଇଟି ଥୋଇଦେଲା ପରେ ମୋତେ ଲାଗିଲା ମାଟିରେ ଯେମିତି ଗୋଟାଏ ଆକର୍ଷଣ ଅଛି ଯାହା ଜଣେ ଇଣ୍ଟେଲେକ୍‌ଚୁଆଲକୁ ସାଧାରଣ ମଣିଷରେ ଓ ସାଧାରଣ ମଣିଷକୁ ବିଜ୍ଞ ବ୍ୟକ୍ତିଟିଏରେ ପରିଣତ କରିଦେଇ ପାରେ । ମାଟି ଉପରେ ତ ମୁଁ ଠିଆ ହୋଇ ଶିଖିଛି ପିଲା କାଳରୁ, କିନ୍ତୁ ଆଜିର ଅନୁଭୂତିଟି ସମ୍ପୂର୍ଣ୍ଣ ନୂଆ । ଗୋଡ଼ ଦୁଇଟି ଦୁର୍ବଳ ହୋଇଯାଉଥିଲା ଏବଂ ତା'ର କାରଣ ଖୋଜୁ ଖୋଜୁ ସେ ଶବ୍ଦ ସହିତ ମୁଁ ଛନ୍ଦିହୋଇ ପଡୁଥିଲି ଓ ମୁଁ ସମୟର ପ୍ରତିକୂଳରେ ଚାଲିଯାଉଥିଲି ୨୦/୨୫ ବର୍ଷ ତଳକୁ । ହଁ, ଏମିତି ସଂକ୍ରାନ୍ତି ବା ଅକାଳ ଦର୍ଶନରେ ଗାଁ ଲୋକେ ହରିନାମ ନିଅନ୍ତି ଆସନ୍ନ ବିପଦରୁ ଉଦ୍ଧରି ଯିବା ପାଇଁ ।

ମୁଁ ମୋ ବ୍ରିଫ୍‌କେଶ୍ ଖଣ୍ଡିକ ହାତରେ ଝୁଲାଇ ନିଜକୁ ଟାଣି ଟାଣି ସେ ଦଳ ଭିତରେ ସାମିଲ କରୁଥିଲି । ମୋ ସହରକୁ ବି ଆସନ୍ନ ବିପଦର ଛାଇ ଘାରି ଦେଇଛି । ମୁଁ ସେଇ ଦଳର ପ୍ରତ୍ୟେକଟି ମୁହଁକୁ ନିରୀକ୍ଷଣ କଲି- ଭୟ/ଆଶଙ୍କାର ବିମର୍ଷ ମୁହଁରୁ ଶବ୍ଦଗୁଡ଼ିକ ବିକଳରେ ନିଗିଡ଼ି ପଡୁଛି, ଯେମିତି ଏଇ ଶବ୍ଦକୁ ଧରି ବର୍ତ୍ତି ଯିବାର ବିକଳ ପ୍ରୟାସ । ସେମାନଙ୍କ ମେଲା ପାଟି ସବୁ ଶୁଖିଲାରେ ପଡ଼ିଥିବା ମାଛର ପାଟି ପାକୁ ପାକୁ ପରି କିମ୍ବା ଗର୍ଭ ଯନ୍ତ୍ରଣାରେ ପଶୁର ବିକଳ ରଡ଼ି ପରି । ମୁଁ ଆଶ୍ଚର୍ଯ୍ୟ ହେଲି ହରିନାମ ସହିତ ପ୍ରେମର ଯେଉଁ ନିବିଡ଼ ସମ୍ପକ. ସେ ଚିହ୍ନ କାହିଁ ସେସବୁ ମୁହଁରେ । ମୁଁ ଆଶ୍ଚର୍ଯ୍ୟ ହେଲି କାହିଁକି ନା, ସେଇ କୋଡ଼ିଏ/ପଚିଶ ବର୍ଷ ତଳର ଦୃଶ୍ୟରେ ଯେଉଁ ପ୍ରେମ ଏବଂ ଦୁଇଟି ବୃଦ୍ଧ ପରସ୍ପର ଅଣ୍ଟାରେ ହାତ ଛନ୍ଦାଛନ୍ଦି ହୋଇ ଅଭିନୟ ଭିତରେ କେମିତି କାନ୍ଦି କାନ୍ଦି ବିହ୍ୱଳ ହୋଇ ଯାଆନ୍ତି । ସେଇ କୋଟରଗତ ଚକ୍ଷୁର ଲୁହ ଦେଇ ପ୍ରେମ କେମିତି ନିଗିଡ଼ି ପଡ଼େ ଗଣ୍ଡଦେଶ ଓ ହୃଦୟକୁ ଆର୍ଦ୍ର କରି ।

ତଥାପି ମୁଁ କାହିଁକି ସେ ଶବ୍ଦରେ ବିହ୍ୱଳ ହୋଇଯାଇଥିଲି ଏବଂ ମୋର ଇଚ୍ଛା ହେଉଥିଲା ମୋ ଇଣ୍ଟେଲେକ୍‌ଚୁଆଲ ଚିହ୍ନ ସେଇ ବ୍ରିଫ୍‌କେଶ ଓ ପେଣ୍ଟସାର୍ଟକୁ ଖୋଲି ଦେଇ ଲଙ୍ଗଳା ହେଇ ସେମାନଙ୍କ ସହିତ ପାଟି ପାକୁ ପାକୁ କରି ସମ୍ଭାବ୍ୟ ବିପଦକୁ ଏଡ଼ାଇଯିବା ପାଇଁ ଗୋଟାଏ ଉପାୟ ହୀନ ଉଦ୍ୟମ କରିବାକୁ । ମୋର ଏମିତି ଇଚ୍ଛା ହେଉଥିଲା କାହିଁକି ନା, ସମ୍ପ୍ରତି ମୋତେ କେହି ଇଣ୍ଟେଲେକ୍‌ଚୁଆଲର ସଂଜ୍ଞା ପଚାରିଲେ ମୁଁ ସଜ୍ଞାନ ଚିତ୍ତରେ ହୁଏତ ହଠାତ୍ କହିଦେବି ତାହା ଏକ ଆଟୋପ/ମଣିଷ ନିଜକୁ

ଅନ୍ୟଠାରୁ ଡ଼ିଷ୍ଟିଙ୍ଗୁଇସ୍ କରିବାକୁ କେତୋଟି ବନ୍ଧାଗତ ଶବ୍ଦ ଭିତରେ ନିଜକୁ ଇଣ୍ଟେଲେକ୍‌ଚୁଆଲ ବୋଲି ପରିଚିତ କରାଏ । ମୋର କାହିଁକି ମନେହେଲା ଏଇ ଉଦ୍ୟମଟା ହିଁ ମିଛ ଏବଂ ଆମ ସମସ୍ତଙ୍କ ଧମନୀରେ ସେଇ ଆନୁଷ୍ଠାନିକ ବିଶ୍ୱାସର ରକ୍ତଧାରାଟି ତଥାପି ପ୍ରବହମାନ, ଯେତେ କ୍ଷୀଣ ହେଲେ ବି ।

ସେଇ ଶବ୍ଦରେ ବିହ୍ୱଳ ହେଲେ ବି ମୁଁ ମୋ ଇଣ୍ଟେଲେକ୍‌ଚୁଆଲର ଖୋଳଟିକୁ ଫିଙ୍ଗି ଦେଇ ପାରିଲି ନାହିଁ । ପାରିଲି ନାହିଁ କାରଣ, କେତେକ 'ଟାବୋଜ୍'କୁ ଧରି ମୁଁ ଗୋଟିଏ ସଂକୀର୍ଣ୍ଣ ମଣିଷ । ମୁଁ ଯଦି ସେଇ ଗଞ୍ଜୋଡ଼ ଆଖଣ୍ଡଳମଣି ବିଶ୍ୱାସୀ ଲୋକଟିକୁ 'ଗୁରୁ' କରିପାରନ୍ତି ଏବଂ ତା'ର ସ୍ୱରରେ ସ୍ୱର ମିଳାଇ କହି ପାରନ୍ତି ! ବାବୁ ! ଏ ପୃଥୀ ଧ୍ୱଂସ ହେଇଯାଉ ଓ ଶୂନ୍ୟ ମଣ୍ଡଳରେ ପୁନର୍ବାର ଓଁ ଭିତରେ ଯୋଗମାୟା ଉଭାନ ହୋଇ ଶୋଇଯାଆନ୍ତୁ, ଶୂନ୍ୟରୁ ତାଙ୍କ ଯୋନୀରେ ବିନ୍ଦୁ ପତନ ହୋଇ, ସେ ବିନ୍ଦୁଟି ରା+ମ ଦୁଇଟି ବର୍ଣ୍ଣର ମିଶ୍ରଣରେ ପ୍ରେମର ଗୋଟିଏ ନୂତନ ସୃଷ୍ଟି ଆତଜାତ ହେଉ !

ଅଥଚ ମୁଁ ତ ଗୋଟିଏ ଛୋଟ ସଂକୀର୍ଣ୍ଣ ମଣିଷ, ପାରୁଛି କେଉଁଠି !



# ଶୀତଦିନେ ଗାଁର ଦୃଶ୍ୟ

ସହରରେ ରହିଗଲା ପରେ ଗାଁର ଦୃଶ୍ୟ କେମିତି ହଜିଯାଏ ଓ ସହରର ପାରିପାର୍ଶ୍ୱିକ ତଥା ନୈବକ୍ତିକ ଜୀବନ ଗଡ଼ିଚାଲେ ଗୋଟାଏ ଗତାନୁଗତିକ ଧାରା କିମ୍ବା ଠିକ୍ ଦଶଟା ବେଳେ ଟ୍ରାଫିକ୍ ପୋଷ୍ଟରେ ଅନେକ କାର୍, ବସ୍, ସ୍କୁଟର ଶୋଭାଯାତ୍ରାରେ ଚାଲିଗଲା ପରି । ଗାଁର ଦୃଶ୍ୟ ହଜିଯାଏ ବାପାଙ୍କର ବାପା/ତାଙ୍କ ବାପା/ଏମିତି ବଂଶଲତାର ଅତୀତ ପୁରୁଷମାନେ ହଜିଗଲା ପରି ଆମ ମାନସ ପଟରୁ ।

ଗାଁ କିନ୍ତୁ ହଜିଯାଇ ନାହିଁ, ବଞ୍ଚିଛି ବୋଲି ଏଇ କାଁ ଭାଁ ସଭାସମିତିରୁ ନେତୃବର୍ଗଙ୍କ ମୁଖନିଃସୃତ ବାଣୀରୁ କିଛିଟା ପ୍ରମାଣ ମିଳେ । ପୁଣି କେତେବେଳେ କଚେରୀ ଦାୟରୁ କେତେକ ଗାଡ଼ିଭଡ଼ା କରି ଚାଲି ଆସନ୍ତି ସେମାନଙ୍କ ମଇଳା ବେଗ୍‌ରେ ଖୁର୍ଦ୍ଧା ଗାମୁଛା ଓ ଲୁଙ୍ଗି ପୁରାଇ ଦିନେ ଅଧେ କୌଣସି ଗ୍ରାମ୍ୟ ହୋଟେଲରେ ସମୟ କଟାଇ ଦେବାକୁ । ମୁହଁ କେମିତି ସବୁ ବିକୃତ/କଦାକାର, ବଞ୍ଚିବାର ମୋହ ଭିତରେ ଟାଣି ଓଟାରି ଜୀବନଟାକୁ ବଞ୍ଚିବା ପାଇଁ ଏକ କାକୁସ୍ଥ ଚାହାଣୀ । ଆଉ କେବେ ବଳାଗଣ୍ଠିରୁ ଚାରି ଆଙ୍ଗୁଳି ଉପରକୁ ଥିବା ଚିପା ପେଣ୍ଟ ଓ କଟନ୍ ପ୍ରିଣ୍ଟର୍ ସାର୍ଟ ସହିତ ହଳେ ହାୱାଇ ସ୍ଲିପରକୁ ସନ୍ତର୍ପଣରେ ବାହାରେ ଖୋଲି ଦେଇ ସହରରେ ଥିବା ପ୍ରତିଷ୍ଠିତ ଡ୍ରଇଂ ରୁମ୍‌ରେ ଫାଙ୍କରୁ ଉଙ୍କିମାରି ଦେଖନ୍ତି ବାବୁଙ୍କ ମୁଡ୍ ଓ ଗୋଟାଏ ଅସହାୟ ଅବସ୍ଥାରେ ଅନେକ ଗ୍ଲାନୀ ଓ ଦ୍ୱନ୍ଦ୍ୱ ମଧ୍ୟରେ ପ୍ରକାଶ କରନ୍ତି କିଛି ଚାକିରୀ ମିଳିଯିବ କି ନାହିଁ ?

ଆଉ କେତେବେଳେ ଚାଲି ଆସନ୍ତି ଗାଁର ନେତୃସ୍ଥାନୀୟ ବ୍ୟକ୍ତିମାନେ ଯେମିତି

ଗୋଟିଏ ଗୋଟିଏ ସିଡ଼ି, ତାଙ୍କ ଫଳି ଦେଇ ଉପରକୁ ଉଠି ଆସିଥିବା ନେତାମାନଙ୍କୁ ସାକ୍ଷାତ କରିବାକୁ... । ପୋଷାକରେ କିଛି ଆଭିଜାତ୍ୟ, କଥାରେ ନେତା ହେବାର ପ୍ରାକ୍‌ଭାସ ପୁଣି ପଛରେ କିଛି ସେଇ ବିଷର୍ଣ୍ଣ ସ୍ମଶ୍ରୁପୂର୍ଣ୍ଣ ମୁଖମଣ୍ଡଳର ବ୍ୟକ୍ତି, ପ୍ରାପ୍ତି ଆଶାରେ- ପୁଅର ଚାକିରୀ, ଗୋହିରୀରେ ମାଟିପକା, ବିରୋଧୀ ପାର୍ଟିକୁ ପାନେ ଆଣ୍ଟିଦେବାର ଉଦ୍ଦୀପନା । ଏମିତି ସବୁ ଗାଁ ଲୋକ କାଁ ଭାଁ ସହର ସହିତ ସମ୍ପର୍କ ସ୍ଥାପନ କରନ୍ତି ।

ମୋର ସହରରେ ରହିବା ପ୍ରାୟ କୋଡ଼ିଏ ବର୍ଷ ହେଇଗଲା । ଘରେ ବାପା ନାମକ ଚରିତ୍ର, ଯେ କି ତାଙ୍କ ଯୌବନର ଉଦ୍ଦାମତାରେ ମୋତେ କେବଳ ନୁହେଁ, ଆହୁରି କେତେକ ଭାଇ-ଭଉଣୀଙ୍କୁ ଏ ପୃଥିବୀର ଆଲୋକ ଦେଖାଇଥିଲେ ମା'ର ଜରାୟୁକୁ ଧ୍ୱସ୍ତବିଧ୍ୱସ୍ତ କରି । ତଥାପି ସେ କାର୍ଯ୍ୟକ୍ଷମ ଓ ଘର-ସଂସାରରେ ମୋର ଅନୁପ୍ରବେଶକୁ ଖୁବ୍ ସତର୍କତାର ସହିତ ଏଡ଼ାଇ ଯାଆନ୍ତି ତାଙ୍କ ଅଧିକାରକୁ ଶେଷ ପର୍ଯ୍ୟନ୍ତ ଜାହିର ରଖିବାକୁ । ତାଙ୍କ ମନୋଭାବକୁ ମୁଁ ବି ଜୁଆଳୀହୀନ ବଳଦଟିଏ । ମୁଁ ଚାହେଁନା ସେ ଜନ୍ତା ଭିତରେ ପଶିବାକୁ - ବିଲ/କାଦୁଅ/ଗୋହିରୀରେ ଜଙ୍ଘ ପର୍ଯ୍ୟନ୍ତ ଲୁଗାକୁ ଟେକିବା କିମ୍ବା ଖରା ବର୍ଷାରେ କୁର୍ମଟେ ପାଳଟି ଯାଇ ହିଡ଼ ମୁଣ୍ଡରେ ବସି ଏକର ଏକର ବିସ୍ତୀର୍ଣ୍ଣ ଶସ୍ୟ କ୍ଷେତକୁ ପରମ ସନ୍ତୋଷରେ ଚାହିଁ ରହିବା ।

ଏଠି ମୁଁ ଭଲ । ମୋ ସ୍ତ୍ରୀ ଭଲ । ମୋ ଛୁଆ ପିଲାବି । ଆହୁରୀ ଭଲ ମୋର ପ୍ରତିବେଶୀ, ବନ୍ଧୁ ବର୍ଗ । ଆମର ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ଦୁର୍ଗ । ସନ୍ଧ୍ୟା ହେଲେ ସହରର କୋଳାହଳ ଜୀବନ ଭିତରେ କିଛି ସମୟ ବୁଲାଚଲା, ଆନ୍ତରୀକତାହୀନ କୁଶଳ ଜିଜ୍ଞାସା, କେମିତି ଅଛନ୍ତି... ଚାଲିଛି ଗୋଟେ ପ୍ରକାର ଇତ୍ୟାଦି ଇତ୍ୟାଦି । ରାତି ହେଲେ ପ୍ରତ୍ୟେକ ଦୁର୍ଗର ଫାଟକ ବନ୍ଦ ଯେମିତି ସେଇଟି ଆମମାନଙ୍କର ନିଜ ନିଜର ଇଲାକା । ରାତିରେ କାହା ଘରେ ହଟ୍ଟଗୋଳ ହେଲାତ ଆମର କିଛି ନାହିଁ- ଖୁନ୍ ଖରାପ ହେଲେ ଆହୁରି ଆରାମରେ ଶୋଇଯିବା କଥା । ସକାଳ ହେଲେ ଖବର କାଗଜରୁ ପଢ଼ି ନେବା କଥା ପ୍ରତିବେଶୀ ଘରେ କେଉଁଠି କଣ ସମ୍ଭାଷଣ... ଗୁଡ଼... ମର୍ଣ୍ଣିଂ... ହାଓ ଆର୍ ୟୁ... ସୋ ଆଣ୍ଡ... ସୋ ।

ବେଶ୍ ଗୋଟାଏ ଜୀବନ । ନିଜର, ସମ୍ପୂର୍ଣ୍ଣ ନିଜର । ମୋ ସ୍ତ୍ରୀ ମୋର, ଏକମାତ୍ର ସ୍ତ୍ରୀ ଦୁନିଆରେ, ମୋର ପିଲା ମୋର- ଏ ପୃଥିବୀରେ ଆଉ ପିଲା ନାହାନ୍ତି । ଦିନ ନାହିଁ, ରାତି ନାହିଁ, ଘର ନିରୋଳା ହୋଇଗଲେ, ଚାକର ଟୋକା ରୋଷାଇ ଘର ଧୋଇ ତା

ରୁମ୍‌କୁ ପଶିଗଲା ପରେ ସ୍ତ୍ରୀକୁ ନେଇ ସର୍କସ ଖେଳ କରାଯାଇ ପାରେ ।

ଅଥଚ ଦିନେ ଶୀତ ସନ୍ଧ୍ୟାରେ ମୋ ଦୁର୍ଗଦ୍ୱାରରେ ପ୍ରବେଶ ପଥଦେଇ ପଶି ଆସିଲା ଏକ ଚରିତ୍ର.... କେମିତି ଅସଭ୍ୟ, ବର୍ବର । ପ୍ରଥମେ ତାକୁ ଦେଖି ମୁଁ ଠିକ୍ କରି ପାରିଲି ନାହିଁ ସେ କେଉଁ ଶ୍ରେଣୀର...ପ୍ରଥମତଃ ସେ ଆମ ଦୁର୍ଗର ମଣିଷମାନଙ୍କ ପରି ନୁହେଁ, ପୁଣି ତା'ର ଅପରିଷ୍କାର ବେଶଭୂଷା, ଥୁଣ୍ଟା ଥୁଣ୍ଟା ଦାଢ଼ୀ ଟାଆଁସା ଟାଆଁସା ବାଳ ଓ ସର୍ବୋପରି ତା'ର କୋଟର ଗତ ଚକ୍ଷୁରେ କୃତଜ୍ଞ ଭାବ ମୋତେ କିଛି ସମୟ ବିସ୍ମିତ କରିଦେଲା- ସେ କିଏ କ'ଣ କାହିଁକି ଏ ଅସମୟରେ । ମୁଁ ସେତେବେଳେ ଖଣ୍ଡିଏ ପତ୍ରିକା ଧରି ରିଲାକ୍ସ କରୁଥିଲି ଡ୍ରଇଂ ରୁମ୍‌ରେ । ସେ ସେମିତି ଠିଆ ହୋଇଥିଲା ଓ ମୋ ମୁହଁକୁ କଲବଲ କରି ଚାହିଁଥିଲା । ମୁଁ ସେଇ ବିସ୍ମିତ ଅବସ୍ଥାରେ କ'ଣ କହିବି ନକହିବି କିଛି ଠିକ୍ କରି ନପାରି ତାକୁ ସେମିତି ଚାହିଁ ରହିଥିଲି । ପରିବେଶକୁ ହାଲକା କରିଦେବା ପାଇଁ ଶଙ୍କିତ ଗଳାରେ ସେ କହିଲା; ମୋତେ ଚିହ୍ନିପାରୁ ନାହାନ୍ତି ! ଏଇ ବାକ୍ୟଟି ମୋ ପାଇଁ ଏକ ଚାଲେଞ୍ଜ କେବଳ ନଥିଲା; ବରଂ ଅସହାୟତାର ଗୋଟିଏ ଚରମ ମୁହୂର୍ତ୍ତକୁ ମୋତେ ଠେଲି ଦେଇଥିଲା ।

ଅଣ୍ଟା ଠାରୁ ଭୂମି ସହିତ ସମାନ୍ତରାଳ କରି ନମସ୍କାରଟିଏ କରି ସାରିଲା ପରେ ଲୋକଟି ପୁନର୍ବାର ଆରମ୍ଭ କଲା; ମୋତେ ଚିହ୍ନି ପାରୁ ନାହାନ୍ତି ? କେମିତି ଚିହ୍ନିବେ, ଗାଁତ ପୁରାପୁରି ଛାଡ଼ି ଦେଲେଣି... ଘସା-ମଜା ହେଉଥିଲେ ସିନା ପରିଚୟ ରହୁଥାଆନ୍ତା ।

ଲୋକଟି ବହୁତ କଥା କହିଗଲା ସାମାନ୍ୟ ଆଶାନ୍ୱିତ ହୋଇ, କାରଣ ତାକୁ ଚିହ୍ନିବା ପାଇଁ ମୋ ମୁହଁର ଭାବ ବା ଚିହ୍ନି ନପାରୁଥିବା ଜନିତ ଅସହାୟ ବୋଧକୁ ସେ ସମ୍ପୂର୍ଣ୍ଣ କଳି ସାରିଥିଲା । ଏବଂ ଏତକ କହି ସାରିଲା ପରେ ସେ ନିଜକୁ ମୋ ଉପରେ ପ୍ରାୟ ଲଦି ଦେବାକୁ ଚେଷ୍ଟା କରୁଥିଲା । ସେ ଗଳା ଝାଡ଼ିଲା ଓ ଅତି ବିନୟ ସହକାରେ କହିଲା; ମୋ ନାଁ ପାଣ୍ଡୁନାଥ ।

ପାଣ୍ଡୁନାଥ ! ଚାରୋଟି ଅକ୍ଷର ବିଶିଷ୍ଟ ଗୋଟିଏ ନାଁ... ହୁଏତ କେଇ ଘଣ୍ଟା/ ମିନିଟ/ମୁହୂର୍ତ୍ତରେ ସେମିତି ଗୋଟିଏ ନାଁର ଗୁରୁତ୍ୱ ନଥିଲା ମୋ ପାଇଁ ଅଥଚ କିଛି ଅଭିମାନ, କିଛି ଦାବୀ ନେଇ ନିଜ ନାଁଟିକୁ ମୋତେ ଜଣାଇ ଦେଲା ପରେ ମୋର ଦାୟିତ୍ୱ ଅନେକ ବଢ଼ିଗଲା । ବରଂ ଅପରାଧୀଟିଏ ପରି ମୁଁ ମନେ ପକାଉ ଥିଲି ଏଇ ପାଣ୍ଡୁନାଥଟିର ପ୍ରାଥମିକ ସଂସ୍କରଣ ଓ ତା' ସହିତ ମୋ ସମ୍ପର୍କକୁ ।

ଏଇ ସଂଶୟାଚ୍ଛନ୍ନ ପରିଚୟ ମଧ୍ୟରେ ମୁଁ ତାକୁ ବସିବାକୁ କହିଲି । ସେ ନିଜର

ମଇଳା ଝୁଲା ଖଣ୍ଡକୁ ଯଥା ସମ୍ଭବ ମୋ ଦୃଷ୍ଟିରୁ ଏଡ଼ାଇବାକୁ ପଛପଟେ ଗୁଞ୍ଜି ଦେଇ ତଳେ ବସି ପଡୁଥିଲା । ମୁଁ ବାଧା ଦେଲି ଓ ଚେୟାରରେ ବସିବାକୁ କହିଲି । ଚଟାଣ ଅପେକ୍ଷା ସେ ଚେୟାରରେ ସନ୍ତର୍ପଣରେ ବସିଲା । ଗାଁ ଲୋକ କି ନାଁ, ମାଟି ଉପରେ ବସିବାରେ ସେମାନଙ୍କର ଗୋଟିଏ ସ୍ୱଚ୍ଛନ୍ଦତା ଥାଏ । ସେ ବସିଗଲା ପରେ ମୁଁ ଅନ୍ୟ ମନସ୍କ ହୋଇ ଏଣୁତେଣୁ ପାଞ୍ଚକଥା ଗାଁ ବିଷୟରେ ପଚାରିଲି । ସେ ଶଙ୍କିତ ଗଳାରେ କିଛି କିଛି କହୁଥାଏ, ଅଥଚ ତା କଥାରେ ସଂକ୍ଷିପ୍ତ 'ହଁ'ଟିଏ ମାରି ମୁଁ ମୋ ଭାବନାକୁ ଗାଁ ପର୍ଯ୍ୟନ୍ତ ଲମ୍ୱେଇ ଦେଇଥାଏ ।

ମୁହଁଟି କ୍ରମେ ମନକୁ ଆସୁଥିଲା... ହଁ, ସ୍ନେହ/ଆନ୍ତରିକତା/ପୁଣି ବୟସ ଅଧିକ ସତ୍ତ୍ୱେ ବି ଆମ ପ୍ରତି କିଛି ଆନୁଗତ୍ୟ... କିଶୋର ବୟସରେ ବିବାହ କରି ଗୋଟାଏ କୌତୁହଳପ୍ରଦ କଥା ମୋ ମୁଣ୍ଡରେ ପୁରାଇ ତା'ର ଉଦ୍ଦାମ ଯୌବନକୁ ଅନୁଭବୁ ଥିଲା ଏଇ ଲୋକଟି... ପାଣୁନାଥ । ଭଗିଆ-ସାରୀଆର ବଂଶଧର ବୋଲି ସେ ପ୍ରମାଣ କରେ ତା'ର ସ୍ୱଭାବ ଚରିତ୍ରରେ । ମୁହଁରେ ଥୁଣ୍ଟାଳିଆ ଦାଢ଼ି ସହିତ ମିଠା ମିଠା ହସ ଓ ବଳଦ ପରି ନିରୀହ ଆଖି ଯୋଡ଼ିକ... କେମିତି ଆଚ୍ଛନ୍ନ କରି ଦେଇଥିଲା ପିଲାବେଳକୁ । ଦୃଶ୍ୟ ଭାସି ଯାଉଛି ସିନେମାର ଦୃଶ୍ୟ ପରି- ଶୁଷ୍କ ଗ୍ରାମ୍ୟ ଜୀବନକୁ ସରସ କରିବା ପାଇଁ ସମୟରେ ବୈଠିକୀରେ ତା'ର ଆବିର୍ଭାବ ଓ ବେସମ ଗଳାରେ 'ନଟ... କୁଟିଇଆ ନଟବଅର...ନା...ଆ...ଗର ହେ, ପାଆଦ ତଳକୁ ତୋର, ପାଆଦ ତଳକୁ ତୋର... କୋଓଟିଏ ଜୁହାର ନଟ....କୁଟିଆ ନଟବର...' ପଦର ଅସ୍ପଷ୍ଟ ଅନୁରଣନ ମୋ ମନକୁ କ୍ରମେ ଆସି ଯାଉଥିଲା । ମୋ ମୁହଁର ଭାବ ପରିବର୍ତ୍ତନ ବୋଧହୁଏ ସେ ଲକ୍ଷ୍ୟ କଲା ଏବଂ ସାମାନ୍ୟ ଆରାମରେ ବସି ମୋତେ ପ୍ରଶ୍ନ କଲା; କ'ଣ ଚିହ୍ନିପାରୁ ନାହାନ୍ତି ?

ମୋ ଭିତରୁ ଯେମିତି ଗୁଡ଼ାଏ ଆବେଗ ଓ ହସ ହୃଦୟ / ମୁହଁ ଦେଇ ଏକାବେଳକେ ପ୍ରକାଶିତ ହୋଇଗଲା । ମୋ ଇଚ୍ଛା ହେଲା ସେଇ ମୁହୂର୍ତ୍ତରେ ମୁଁ ପାଣୁନାଥ ପାଖକୁ ଦଉଡ଼ିଯିବି ଏବଂ ମୋର ବ୍ୟବହାର ପାଇଁ ତାକୁ କୁଣ୍ଢାଇଧରି କ୍ଷମା ମାଗି କହିବି; କେମିତି ତୁମକୁ ମୁଁ ଚିହ୍ନିବିନି- ତୁମେ କୈଶୋରକୁ କେଡ଼େ ମଧୁର/ ରହସ୍ୟାଚ୍ଛନ୍ନ କରି ପକାଇଥିଲ ତୁମ ସରଳ ବ୍ୟବହାରରେ ! ଅନାବିଳ ବ୍ୟକ୍ତିତ୍ୱରେ !... ତା ସହିତ ପୁଣି ମିଶିଯାଇଥିଲା ଗାଁର ସେଇ 'ଆମେ'ର ଦୁଷ୍ପ୍ରାପ୍ୟ ଅନୁଭୂତିଟି ।

ଅଥଚ ମୁଁ ପାରିଲି ନାହିଁ । ମୋ ଘରର ସେଇ ହାତ ଗଢ଼ା ଆଭିଜାତ୍ୟ ତଥା ପରିବେଶ ମୋତେ ବାଧାଦେଲା ସେଇ ସରଳ ଲୋକଟି ସହିତ ସରଳ ହୋଇଯିବାକୁ ।

ସଂପ୍ରତି ସବୁ ଅନୁଭବକୁ କୃତ୍ରିମ ଅହଂକାରରେ ଚାପିଧରି ମୁଁ କହିଲି; ଗାଁଠାରୁ ସିନା ଦୂରେଇଗଲୁ ପରିସ୍ଥିତିର ଚାପାରେ, ହେଲେ ଗାଁକୁ ବା ତମମାନଙ୍କୁ ଭୁଲି ହେଉଛି କେମିତି ! ସବୁ ମୋର ମନେ ଅଛି... ଆଉ ! କେମିତି କୁଆଡ଼େ ଚାଲି ଆସିଲ ?

ମୋ ଠାରୁ କିଞ୍ଚିତ୍ ଆଶ୍ୱାସନା ପାଇଲା ପରେ ପାଣୁନାଥ ତା'ର ସମସ୍ତ ସମସ୍ୟା ମୋ ସାମ୍ନାରେ ଅଜାଡ଼ି ଦେଲା ଯେମିତି ମୁଁ/ଆମେ ସହରରେ ରହୁଥିବା ଲୋକମାନେ ତା'ର ସମସ୍ୟା ଗୁଡ଼ିକୁ କାଉଁରୀ କାଠି ସ୍ପର୍ଶରେ ସୁଧାରି ଦେଇପାରିବୁ । ତା'ର ଅବଶ୍ୟ ଦୋଷ ନଥିଲା ଆମ ପାଖରୁ ଗାଁକୁ ସହରରେ ପରିଣତ କରିଦେବାରୁ ଗୁଡ଼ାଏ ପ୍ରତିଶ୍ରୁତି ଡ଼ାକବାଜି ଯନ୍ତ୍ର ଦେଇ ସେମାନଙ୍କୁ କାନ ଭିତରକୁ ପଶିଯାଏ । ସେ କହିଯାଉଥାଏ; ଆଉ ଆଗ ଗାଁ ନାହିଁ, ଫି ବରଷ ଧୋଇ/ମରୁଡ଼ି ଅଣ୍ଟା ଭାଙ୍ଗି ଦେଲାଣି... ଜେନା ସାହି, ହାଟୁଆ ସାହିରୁ ଅନେକ ଲୋକ କାମ-ଧନ୍ଦା ଆଶାରେ ଗାଁ ଛାଡ଼ିଲେଣି... । ସେ ଗୁମ୍‌ମାରି ବସିଗଲା କିଛିକ୍ଷଣ ପାଇଁ । ତାପରେ ସେ ଖୋଲି ଦେଲା ତା'ର ବ୍ୟକ୍ତିଗତ ଗତାନୁଗତିକ ସମସ୍ୟାଟି... ନିରବାବୁଙ୍କ ଦୟାରୁ ବଡ଼ପୁଅକୁ ଛାଡ଼ିଥିଲି ବାଲିମେଳାରେ, ଆପଣଙ୍କ ସଢୁ ବିଶ୍ୱାଳବାବୁ ମତେ ବି ସେଠି ଭୁକେଇ ଦେଇଥିଲେ । ଘରେ ସାନ ପୁଅଟା ଥିଲା... ପାଏ ଅଧେ ଜମିବାଡ଼ି ଦେଖାଶୁଣା କରୁଥିଲା... ଝିଅକୁ ଗଲାସନ ଉଠେଇ ଦେଇଥିଲି । ଚିଠି ପାଇଲି ସ୍ତ୍ରୀକୁ କି ରୋଗ । ମନ ଥୟ ଧରିଲାନି । ବାପ, ପୁଅ ଚାଲିଆସିଲୁ । ଘର ଅଚଳ, ବଡ଼ ପୁଅକୁ ଦି' ହାତ କରିଦେଲି... ବାବୁ ! କପାଳତ, ଆମ କାଳରେ ପଡ଼ିଆ ଜମିରେ ଫସଲଟେ ଉତୁରୁଥିଲା କେତେ ଠାକୁର ଦେବତାଙ୍କୁ ମାନସିକ କଲାପରେ... ଏବେ ବର୍ଷେ ପୁରୁଣା ଗୋଟାକୁ ଗୋଟା... ବଡ଼ ପୁଅର ଏବେ ଦିଇଟା ଝିଅ, ଘର ଚଳିବା କଷ୍ଟ....ବଡ଼ ଆଶାକରି ଆସିଛି, ବୟସ ହୋଇଗଲା ମୁଁ ଆଉ ପାରିବିନି, ଯେବେ ବଡ଼ ପୁଅକୁ କଉଠି ପିଅନ ଫିଅନ ଚାକିରୀ ଖଣ୍ଡରେ ଲଗେଇ ଦିଅନ୍ତେ..., ତା ପରେ ସେ ତା'ର ଦୁଇ ହାତ ମଳି ଦୀର୍ଘ ନିଶ୍ୱାସଟିଏ ମାରିଲା ।

ବାସ୍, ଏଇତକ କଥା କହିବା ପାଇଁ ଗାଁରୁ ସେ ଧାଇଁ ଆସିଛି ଅଧା ଭୋକିଲାହୋଇ । ମୋତେ ତା କଥା କହିଦେଲାପରେ ସେ ଆଶ୍ୱସ୍ତ । ତା'ର ଆଶା ଆମେ ବଡ଼ ସହରରେ ରହୁଛୁ ଓ ଆମ ଉଦ୍ୟମ ନିକଟରେ ତା'ର ସମସ୍ୟାଟି ତୁଚ୍ଛ । ମୁଁ କେମିତି ତାକୁ ବୁଝାଇ ପାରିଥାନ୍ତି ଜଣେ ସାଧାରଣ ଅଧ୍ୟାପକ ତୋର ଗୁରୁତ୍ୱପୂର୍ଣ୍ଣ ସମସ୍ୟାକୁ ସମାଧାନ କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ । ବରଂ ଗାଁ ସରପଞ୍ଚକୁ କହିଲେ ସେ ତୋତେ କିଛି ସାହାଯ୍ୟ କରିପାରିବ ।

ମୁଁ ତାକୁ ଶେଷ କଥାଟି ସ୍ପଷ୍ଟ କହିପାରିଲି ନାହିଁ । ବରଂ ନିଜ ଗୁରୁତ୍ୱ ସମ୍ପର୍କରେ ସଚେତନ ହୋଇ ସଂକ୍ଷେପରେ ଆଶ୍ୱାସନା ଦେଲି; ଦେଖିବା !

ମୋର ଏଇ ପଦଟିରେ ସେ ସନ୍ତୁଷ୍ଟ ହେଲା ଓ ମୁଣ୍ଡରୁ ବିରାଟ ବୋଝ ଓହ୍ଲେଇ ଯିବା ଅନୁଭବରେ ସହଜ ହୋଇ ଚେୟାରରେ ବସିଗଲା ।

ପାଣୁନାଥ ! ଗାଁ ଲୋକଟି ବିଚାରା, ମୋ ପରିବେଶ ପାଇଁ ସେ ଖାପଛଡ଼ା । ସବୁ କଥାରେ ମାପଚୁପ ଏବଂ ସମ୍ଭ୍ରମ ଭାବ । ସେ ତ ଆଉ ବୁଝିନାହିଁ କଲେଜ ବାରଣ୍ଡାରେ ଚାଲିଗଲା ବେଳେ ପଛରୁ କେମିତି ହୁଇସିଲ ମାଡ଼ହୁଏ ଓ କ୍ଲାସ୍ ରୁମ୍‌ଟାକୁ ସମ୍ପୂର୍ଣ୍ଣ ନିଜ କର୍ତ୍ତୃତ୍ୱକୁ ନେଇ ଆମମାନଙ୍କ ସହିତ ପିଲେ କେମିତି ଟାହୁଲି ଖେଳନ୍ତି । ସେ ଗାଁ ଲୋକ, ଏ ସବୁ କଥା ସହିତ ଅପରିଚିତ । ବୟସରେ ମୋ ଠାରୁ ଯଥେଷ୍ଟ ଅଧିକ ହେଲେବି ମୋ ପଦବୀ ପ୍ରତି ତା'ର ଯଥେଷ୍ଟ ସମ୍ମାନ ରହିଛି । ସେ ପୁରାତନ ଓଡ଼ିଶୀ ସଂସ୍କୃତିର ମଣିଷ । ପଶ୍ଚିମାପବନ ତାକୁ ଭେଦିନି ଏବଂ ଭେଦିବାର ସୁଯୋଗ ଆଉ ନାହିଁ ମଧ୍ୟ ।

ସେ ନୀରବ ହୋଇ ବସିଥିଲା । ଦ୍ୱିନର ସମୟ ହୋଇଯାଇଥିଲା । ନିତ୍ୟକର୍ମ ସାରିବାକୁ ତାକୁ କହିଲି । ଅଥଚ ସେ କେମିତି ଟିକେ ଶଙ୍କୁଚିତ ହୋଇପଡ଼ିଲା । କିଆ ଗୋହିରୀରେ ଚାରିଆଡ଼କୁ ନିଘା ରଖି ଲୁଗା ଟେକି ବସିପଡ଼ିବା ଲୋକ ଓ ରେବ ନଦୀରେ ବୁଡ଼ଟିଏ ମାରିଦେଇ ଏକକାନିଆ ଓଦା ଜୁଡୁବୁଡୁ ହେଇ ଘରେ ପହଞ୍ଚିବା ଲୋକ । ଏଠିକାର ନିତ୍ୟକର୍ମରେ ସେ ଅଭ୍ୟସ୍ତ ନୁହେଁ । ତେଣୁ ନିଜ ଦୁର୍ବଳତାକୁ ଢ଼ାଙ୍କିବା ପାଇଁ କହିଲା ସବୁ କାମ ସାରି ଆସିଛି ।

ମୁଁ ଚାକର ଟୋକାକୁ ଡ଼ାକିଦେଲି ପାଣୁନାଥର ଖାଇବା ବ୍ୟବସ୍ଥା କରିଦେବାକୁ । ସେତକ ବି ସେ ବହୁ କୁଣ୍ଠାର ସହିତ ରାଜିହେଲା । ମୁଁ ଡ୍ରଇଂ ରୁମ୍ ଛାଡ଼ି ଉଠିବାକୁ ଉଦ୍ୟତ ହେଉଥିଲାବେଳେ ସେ ଆଉକିଛି କହିବ ବୋଲି ଆଗ୍ରହ ପ୍ରକାଶ କଲା । ମୁଁ ଠିଆ ହେଲି ଓ ପଚାରିଲି ଆଉ କିଛି କଥା ଥିଲା ? ସେ ଜଣେ ଅନୁଗତ, ବିନୟୀ ଲୋକ ପରି (ଅବଶ୍ୟ ସେ ବିନୟୀ) କହିଲା, ଆଉ କ'ଣ ଗାଁକୁ ଯିବେନି !

ପଦେ ପଦେ କଥା ମଣିଷକୁ ଏମିତି ଦୁର୍ବଳ କରିପକାଏ ବୋଲି ମୋର ପୂର୍ବରୁ କେବେ ଅଭିଜ୍ଞତା ନଥିଲା । ସେଇ ଶେଷ ପଦଟି ମୁହୂର୍ତ୍ତକ ପାଇଁ ମୋତେ କ୍ଷୁବ୍ଧ କରିଦେଲା । ମୁଁ ଠିଆ ହେଇ ତା ମୁହଁକୁ ନିରୀକ୍ଷଣ କରୁଥିଲାବେଳେ ତା ମୁହଁ ଯେମିତି

ମୋତେ ଝାପ୍‌ସା ଝାପ୍‌ସା ଲାଗିଲା । ତାକୁ ଦେଖିଲାବେଳକୁ କେତେ ମଧୁର ସ୍ମୃତି ମୋତେ ଆଚ୍ଛନ୍ନ କରିଥିଲା । ତା'ର ଶେଷ ପ୍ରଶ୍ନଟି ମୋର ସମୁଦାୟ ବ୍ୟକ୍ତିତ୍ୱକୁ କବଳିତ କରିଦେଲା । ଦମକାଏ କୋହ ମୋ ଛାତି ଭିତରୁ ଉଠି ଆସିଲା କଣ୍ଠନଳୀ ପର୍ଯ୍ୟନ୍ତ; ବେ ତୁ କିଏ ବେ ! ତୁ ପାଣନାଥ, ନାଁ ମୋ ବୋଉ ମାଁ ! ସେ ତ ତିରିଶ/ବତିଶ ବର୍ଷ ତଳର କଥା... ଏବେ, ସେ କୋଳିଗଛ ଅଛି ନାଁ । ଆଉ- ଯାହା ଛାଇ ତଳେ ତୋ କାନୀକି ଧରି ଠିଆ ହୋଇଥିଲି ଓ ହଇଜାରେ ମରିଯାଇଥିବା ସୁନିସା' ସ୍ତ୍ରୀର ଶବକୁ ବୋହି ନେଉଥିବା ଗଙ୍ଗାକୁଳିଆଙ୍କ ଶକ୍ତ ହରିବୋଲରେ ତୁ ଚମକି ପଡୁଲୁ... ତାପରେ କୁଆଡ଼େ ଠାକୁର ପାଣିରେ ଗାଧୋଇଲୁ... ହେଲେ କିଛି ଫଳ ହେଲାନି.. ସନ୍ଧ୍ୟାବେଳକୁ ବହୁତ ଥର ଝାଡ଼ା ବାନ୍ତିରେ ତୋ ଝାଡ଼ା ପରିସ୍ରା ବନ୍ଦ ହୋଇଯାଇଥିଲା ଓ ମୋ ଚାଳିଶ ବର୍ଷର ବାପା ତୋ ବିକୃତ ଶରୀର ଉପରେ ଦୃଷ୍ଟି ରଖି ତାଙ୍କ ଭବିଷ୍ୟତ ଜୀବନର ନକ୍‌ସା ପ୍ରସ୍ତୁତ କରୁଥିଲେ ଓ ରାତି ବାରଟା ବେଳକୁ ତୁ କୁଆଡ଼େ ଆଉ ବଞ୍ଚିବୁ ନାହିଁ ବୋଲି ମୋତେ ଦେଖିବାକୁ ଚାହିଁଲୁ ! କେଉଁ ଦରଦୀ ବୃଦ୍ଧାର କାଖରେ ବୁହା ହୋଇ (ଆହା ! ସେ ଏବେ ସ୍ୱର୍ଗରେ) ତୋ ସାମ୍ନାକୁ ଯାଇଥିଲି- ତୋ ଆଖି ସେତେବେଳେ କାମ କରୁଥିଲା, ନା କାଚର ଡ଼ୋଳା ଦୁଇଟି ମୋ ଉପରେ ଥୋଇ ଦେଇଥିଲୁ । ରାତି ଶେଷ ପ୍ରହରରେ ମୁଁ କ'ଣ କିଛି ବୁଝିଥିଲି, ନିଦ ହଠାତ୍ ଭାଙ୍ଗିଗଲା ଓ ଶୁଣିଲି ଘରେ ସମସ୍ତେ ଉଚ୍ଚସ୍ୱରରେ କାନ୍ଦୁଛନ୍ତି... ମୁଁ କିଛି ନ ବୁଝି ସେମାନଙ୍କ ସହିତ ସ୍ୱର ମିଳାଇ ଦେଲି... ବିଛଣା ଭିତରେ ଗୁଡ଼ାହୋଇ ତୁ କେତେଜଣଙ୍କ ହାତରେ ବୁହା ହୋଇ ଗଲୁ ଯେ କାଳିଜହ୍ନ ଛାଇରେ ମିଶିଯିବା ପର୍ଯ୍ୟନ୍ତ । ତୁ ତ ମୋତେ ଗାଁ ଘର ପରିବାର ସବୁ ଭୁଲାଇ ଦେଲୁ... ପୁଣି କାହିଁକି ବେ ଗାତରୁ ଉଠିଆସି ତୋ କାନିରେ ମୋ ଦେହକୁ ଛନ୍ଦି ଦେଉଛୁ ! ତୋ ସ୍ନେହଶୀଳ ହାତକୁ ମୁଣ୍ଡଠାରୁ ପିଠି ପର୍ଯ୍ୟନ୍ତ ଆଉଁସି ଦେଇ ମୋତେ ଦୁର୍ବଳ କରି ପକାଉଛୁ !

ଚାକର ଟୋକା ଡ଼ାକରେ ପାଣୁନାଥ ଖାଇବାକୁ ଗଲା । ମୁଁ ସେଲଫରୁ ପ୍ୟାଡ୍ ଆଣିଲି ଓ ଦୁଇଦିନ ଛୁଟି ପାଇଁ ଦରଖାସ୍ତ ଲେଖି ମଞ୍ଜୁକୁ ଦେଇଦେଲି ପରଦିନ ସକାଳେ ବିଭାଗୀୟ ମୁଖ୍ୟଙ୍କ ନିକଟକୁ ପଠାଇ ଦେବା ପାଇଁ ।

ପରଦିନ ସକାଳୁ ପାଣୁନାଥ ଖୁବ୍ ଉତ୍ତେଜିତ ହୋଇ ପଡ଼ିଥିଲା, ଏଇଥି ପାଇଁ ମୋର ଯେମିତି ଦୀର୍ଘ ଦିନର ବ୍ରତକୁ ସେ ଭାଙ୍ଗିଦେଲା । ମୁଁ ସକାଳୁ ସକାଳୁ ସବୁ କାମ ସାରିଦେଇ ବ୍ରିଫ୍‌କେଶ ଖଣ୍ଡିକ ଡ୍ରଇଂ ରୁମ୍‌ରେ ଥୋଇଦେଲି । ମୋର ଲକ୍ଷ୍ୟଥିଲା ସକାଳୁ

ବାହାରିଲେ ଆମ 'ହୋମ ଟାଉନ୍'ରେ ବାରଟା ସୁଦ୍ଧା ପହଞ୍ଚି ମଧ୍ୟାହ୍ନ ଭୋଜନ ସାରିଦେବୁ ଓ ଦୁଇଟା ସୁଦ୍ଧା ବସ୍ ଧରିଲେ ଚାରିଟା ସୁଦ୍ଧା ଗାଁରେ ପହଞ୍ଚି ଯିବୁ ।

ପାଣୁନାଥ ତା ମଇଳା ଝୁଲାଟି କାନ୍ଧରେ ଝୁଲାଇଲା ଓ ମୋ ବ୍ରିଫ୍‌କେସ ହାତରେ ଧରି ଫାଟକ ପାଖରେ ଅପେକ୍ଷା କରିଥିବା ରିକ୍ସା ପାଖକୁ ଗଲା । ପିଲାମାନଙ୍କ ସହିତ ମଞ୍ଜୁ ଆସି ପାଖରେ ଠିଆ ହେଲା । ସେମାନଙ୍କ ଆଖିରେ ବିସ୍ମୟ, ଯେମିତି ମୁଁ ଦୀର୍ଘଦିନ ତୀର୍ଥଯାତ୍ରାରେ ବାହାରିଛି । ଅବଶ୍ୟ ସେ ସମୟର ଅନୁଭୂତି ମୋର ସେହି ପ୍ରକାର । କାରଣ ମୋ ବୋଉ ଯେଉଁମାଟିରେ ମାଟି ହୋଇଯାଇଛି ତାକୁ ଛୁଇଁବି ଦୀର୍ଘ କୋଡ଼ିଏ ବର୍ଷ ପରେ । ତଥାପି ଏ ତୀର୍ଥଯାତ୍ରା ଦୀର୍ଘ ଦିନର ନୁହେଁ, ଦିନେ ଦୁଇଦିନର । ପିଲାମାନଙ୍କୁ ସ୍ନେହ କଲି, ସେମାନେ ପଢ଼ା ଟେବୁଲକୁ ଚାଲିଗଲେ । ମଞ୍ଜୁ ସେମିତି ଠିଆ ହୋଇଗଲା । ମୁଁ ବାହାରକୁ ଗଲେ ତା'ର ବି କିଛି ଦରକାର । ସେ ପିଲାଟେ ହେଇଛି ଯେ ତା' ହାତରେ ଆଠଅଣା/ଟଙ୍କେ ଧରାଇ ଦେବି । ମୁଁ ନିପଟ ଓଡ଼ିଆଟିଏ । ପ୍ରତିବେଶୀ ସାହେବଧର୍ମୀ ଓଡ଼ିଆଙ୍କଠାରୁ ଯେତିକି ଶିଖିଛି ସେଇଥିରୁ ଗୋଟେ ଅଧେ ଉପକ୍ରମ କରିବାକୁ ମନ କୁତୁ କୁତୁ ହେଲା । ବସ୍ ଛାଡ଼ିଦେବା ଆଶଙ୍କାରେ ପାଣୁନାଥ ରିକ୍ସା ପାଖରେ ବ୍ୟସ୍ତ ହେଉଥିବ, ହେଉଥାଉ । ସେ ଗାଁ ଲୋକ-ଶାଳା ଜୀବନ କ'ଣ ବୁଝେ ! ମୁଁ ମଞ୍ଜୁକୁ ନିଜ ଭିତରେ ମିଶାଇ ଦେଲି... "ଭାକ୍.. ପିଲା ଆରଘରେ ଅଛନ୍ତି ଯେ" ବାକ୍ୟ ଭିତରେ ସେ ତା ଲୁଗା କାନିରେ ଗାଲ ପୋଛିଲା । ମୁଁ କିଛିଟା ହାଲକା ଅନୁଭବ କଲି ଓ ରିକ୍ସା ପାଖକୁ ଚାଲିଗଲି । ମଞ୍ଜୁ ଫାଟକ ପାଖକୁ ଗଲା, ଫାଟକ ବନ୍ଦ କଲା ଓ ରିକ୍ସା ଛାଡ଼ିଲା ପରେ ମୋ ଉଦ୍ଦେଶ୍ୟରେ ହାତ ହଲାଇଲା, ଯାହାକୁ କହନ୍ତି- ଟା-ଟା ।

ପାଣୁନାଥ ମୋ ପାଇଁ ସାମ୍ନା ସିଟ୍‌ଟିଏ ରଖିଦେଇ ପଛ ସିଟ୍‌କୁ ଚାଲି ଯାଉଥିଲା ମୁଁ ତାକୁ ଡ଼ାକିଲି ଓ ପାଖରେ ବସିବା ପାଇଁ କହିଲି । ସେ ବସିଲା, ଅଥଚ ଅସ୍ୱସ୍ତି ବୋଧକଲା । ଭଲ ଭାବରେ ବସିବାକୁ ତାକୁ କହିଲି ଓ ବସ୍ ଷ୍ଟାର୍ଟ କଲା ପରେ ସାଧାରଣତଃ ମୁଁ ଯାହା କରିଥାଏ ଆରମ୍ଭ କରିଦେଲି, ମାନେ ପ୍ରଥମେ ପ୍ରଥମେ ସହର ଅତିକ୍ରମ କରିବା ପର୍ଯ୍ୟନ୍ତ ଏଣେ ତେଣେ ଚାହୁଁ ଚାହୁଁ କ୍ରମେ ଆଖିକୁ ବୁଜିଦେବା ଓ ପରେ ପରେ ନିଶ୍ଚିନ୍ତରେ ଶୋଇପଡ଼ିବା । ଏକ୍ସିଡ଼େଣ୍ଟ ହେଲେ ଡ୍ରାଇଭର ଉପରେ ମାଡ଼, ଆମର କି ଯାଏ !

ଆଖି ଖୋଲିଲା ବେଳକୁ 'ହୋମ୍ ଟାଉନ୍'ର ବସ୍‌ଷ୍ଟାଣ୍ଡ, ପରିଚିତ ବହିଦୋକାନ ବିଦ୍ୟାମନ୍ଦିରରେ ଟିକେ ମୁହଁ ମାରିଦେଇ, ଚିହ୍ନା/ଅଧାଚିହ୍ନା ବ୍ୟକ୍ତିମାନଙ୍କ ସହିତ କିଛି

ସୌଜନ୍ୟ କଥାବାର୍ତ୍ତା ଓ ଭୋଜନ ରୂପକ କାର୍ଯ୍ୟଟି ସାରି ଦେଇ କେମିତି ଗାଁ ବସ୍‌ଟିକୁ ଧରିବା କଥା ।

ଏଇତକ ରାସ୍ତା ଘରୋଇ ବସ୍‌ରେ ଅତିକ୍ରମ କରିବା ପାହାଡ଼ ଚଢ଼ିଲା ପରି । ସିଟ୍‌ଟିଏ ପାଇଗଲେ ତୁମେ ଭାଗ୍ୟବାନ । ତଥାପି ବସ ଛାଡ଼ିଲା ବେଳକୁ ଦେଖିବ ତୁମେ ସବୁଠାରୁ ବେଶି (ଏମିତିକି ଠିଆରେ ଯାଉଥିବା ଲୋକଙ୍କଠାରୁ) ହତଭାଗ୍ୟ ଯେହେତୁ ଠିଆ ହୋଇଥିବା ଲୋକମାନଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିଛି ସେମାନଙ୍କର ବିରାଟ ନିତମ୍ବ ତୁମ କାନ୍ଧ ଉପରେ ଥୋଇ ଦେବାକୁ/ଝୁଲାବେଗକୁ ବାରମ୍ବାର ମୁଣ୍ଡ ଉପରେ ଭେଟାଇବାକୁ, ଛତା ବେଣ୍ଟକୁ ତୁମ ଛାତିରେ ଗେଞ୍ଜିବାକୁ; ପୁଣି ତୁମ ଉପରେ ସମ୍ପୂର୍ଣ୍ଣ ଶୋଇପଡ଼ି ବସ୍ ଝରକା ଦେଇ ପାନଛେପ ପକାଇବାକୁ ଓ ବାହାରକୁ ଚାହିଁବାକୁ ।

ଏମିତି ପରିସ୍ଥିତିର ମୁକାବିଲା କରିବାକୁ ପଡ଼ିବ ଦେଢ଼ଘଣ୍ଟାରୁ ଦୁଇଘଣ୍ଟା ପର୍ଯ୍ୟନ୍ତ ଶୋଳ କିଲୋମିଟର ରାସ୍ତା ଅତିକ୍ରମ କରିବାକୁ । ଏଇ ଯାତ୍ରା କଷ୍ଟ ବିଶେଷ ମନେ ହେଲାନି, କାରଣ ଆମ 'ହୋମ ଟାଉନ୍‌ରୁ' ଗ୍ରାମ ପର୍ଯ୍ୟନ୍ତ ଶୀତ ଋତୁ ତା'ର ପ୍ରଭାବ ବିସ୍ତାର କରିଥିଲା । ସହରରେ ଶୀତ ଅପେକ୍ଷାକୃତ କମ୍ ।

ଆମେ ଯଥା ସ୍ଥାନରେ ପହଞ୍ଚି ଖଣ୍ଡେ ରିକ୍ସା ଠିକ୍ କଲୁ । ସେ ଆମକୁ ଚାରି କିଲୋମିଟର ରାସ୍ତା ବୋହିନେବ । ପାଣୁନାଥ ଦରଦାମ ଛିଣ୍ଡେଇଲା । କୁଆଡ଼େ ଚିହ୍ନା ଜଣା ଲୋକ । ମୁଁ ସେଇ ସ୍ଥାନଟିକୁ ଟିକେ ନିରୀକ୍ଷଣ କରିନେଲି- ବହୁ ବର୍ଷ ତଳେ କେଇଖଣ୍ଡ ଚାଳ ଓ ଟିଣ କେବିନରେ ଯେ ସୀମାବଦ୍ଧ ଥିଲା, ଏବେ ଛୋଟ କାଟର ଗୋଟିଏ ଟାଉନ । ସ୍ଥାନଟିର ଗୁରୁତ୍ୱ ବଢ଼ି ଗଲାଣି, ଗୋଟିଏ ଅନିୟମିତ ସିନେମା ହଲ... ଦେଶୀ ବିଦେଶୀ ପାନୀୟ ବି ମିଳେ ସବୁ ସମୟରେ । ଖୋରଧା ଲୁଙ୍ଗି ନାହିଁ, ବେଲ ପେଣ୍ଟ, ଛିଟ ସାର୍ଟ ଓ ପାଣୁନାଥ କହିଲା ଟୋକାମାନେ ସିଗାରେଟ୍‌ରେ ଗଞ୍ଜା ପୁରେଇ ଧୁମ ମସ୍ତି କରୁଛନ୍ତି, ଗାଁର ରୂପ ବଦଳିଗଲାଣି, ଶୀତ ଦିନ ।

ପାଣୁନାଥ ଠିଆ ହୋଇଛି ରିକ୍ସାବାଲା ସହିତ ଦର ଛିଣ୍ଡେଇ । ଦିନ ଚାରିଟାରୁ ପରେ ହେବ । ଶୀତୁଆ ଲାଗିଲାଣି ଦେହଟା । ବଡ଼େଇ ଦେଖାଇବାର ଭୟରୁ ମୁଁ କିଛି ଗରମ ପୋଷାକ ଆଣି ନଥିଲି ସାଙ୍ଗରେ । କେବଳ ଏଇ ପାଣୁନାଥ... କେବଳ ପଦିଏ କଥାରେ ମୋ ବୋଉର କାଳିସୀ କେମିତି ତା' ଭିତରେ ଉତୁରିଗଲା ଓ ମୁଁ ଆଚ୍ଛନ୍ନ ହୋଇ ପଡ଼ିଲି । ତେଣୁ କିଛିଟା ଉତ୍ତେଜନା ଥିଲା ଗାଁ ମାଟି ଛୁଇଁବାକୁ ଦୁଇ ଯୁଗର ବ୍ୟବଧାନ ପରେ ହେଉ ବରଂ । ପାଣୁନାଥ ଅକସ୍ମାତ୍ ଶୀତ ସନ୍ଧ୍ୟାରେ ପହଞ୍ଚ ଯାଇ

ନଥିଲେ ହୁଏତ ଆଉ କେତେଯୁଗ ଗାଁର ସ୍ମୃତି ମୋ ମନରୁ ଲୁଚି ରହିଥାଆନ୍ତା ।

ରିକ୍ସାରେ ବସିଲୁ । ବିସ୍ତୀର୍ଣ୍ଣ ପାଚିଲା ଧାନ କ୍ଷେତ ଭିତରେ ନାଲି ଗୋଡ଼ିର ରାସ୍ତାଟିଏ ଲମ୍ବିଯାଇଛି ଜଣେ ପ୍ରୌଢ଼ାର ସିନ୍ଥିର ସିନ୍ଦୁର ଗାର ପରି । ଭଲ ଲାଗୁଥିଲା ଥଣ୍ଡାଳିଆ ଭାବ ସାଙ୍ଗକୁ ଧାନକଟାର ଦୃଶ୍ୟ । ଅଥଚ କେହି ଆମଆଡ଼େ ଦୃଷ୍ଟି ଦେଉ ନଥିଲେ । ଗୋଟିଏ ଗୋଟିଏ ଭାରବାହୀ ପଶୁ ପରି ସେମାନେ ନଇଁପଡୁଥିଲେ ଓ ରେକା ପୁରିଗଲା ପରେ ଠିଆହୋଇପଡ଼ି ଧାଡ଼ିକି ଧାଡ଼ି ଖଞ୍ଜି ଥୋଇ ଦେଉଥିଲେ । ଶୀତ ସାଙ୍ଗକୁ ପାଚିଲା ଧାନର ବାସ୍ନା । କେମିତି କେଜାଣି ମନକୁ ମନ ଭାବନା ଚାଲି ଆସୁଥିଲା... ଗାଁଟା ଭାରି ସୁନ୍ଦର, ଅନୁଭବ କରିପାରିଲେ । ଏଠି ଯେମିତି ଋତୁମାନଙ୍କୁ ଦେହରେ ଭେଦେଇ ହୁଏ, ସହରରେ ନୁହେଁ । ସହରର ବ୍ୟସ୍ତ ଜୀବନ ଭିତରେ କେତେବେଳେ ଋତୁ ଆସେ ଓ ଯାଏ କେହି ସହଜରେ ଧରି ପାରେନି ।

ମୁଁ ଏଇ ଆପାତତଃ ନୂଆ ପରିବେଶରେ ନିଜକୁ ହଜେଇ ଦେଇଥିଲାବେଳେ ପାଣ୍ଡୁନାଥ କହିଲା: ଇୟା ଭିତରେ ବହୁ ପୁରୁଣା ଲୋକ ଚାଲି ଗଲେଣି । ସାହୁଘର ବୁଢ଼ାଟା ଏଇ ଶୀତରେ ଖସିଯିବ... ଇତ୍ୟାଦି । କାନ ଭିତରେ କଥାଗୁଡ଼ାକ କେମିତି ପଶିଯାଉଥିଲେ ଓ ମୋତେ କ୍ରମେ ଦୁର୍ବଳ କରି ଦେଉଥିଲେ । ହଠାତ୍ ଗୋଟେ କ୍ରୋଧରେ ମୁଁ ଫାଟି ପଡ଼ିଲି ।  ବିରକ୍ତିରେ ମୁହଁ ବୁଲାଇ ଦେଲି, ଯା'ର ଅର୍ଥ ହେଲା ପାଣ୍ଡୁନାଥ ରିକ୍ସାରେ ମୋ ସହିତ ଗାଁକୁ ଯାଉଛି, ସେତକ ଯଥେଷ୍ଟ ଏବଂ ତୁ ଚୁପ୍ ରହ, ନ ହେଲେ ଗୋଟାଏ ଥାପଡ଼ରେ ତୋତେ ଏ ରିକ୍ସାରୁ ତଳକୁ ଗଡ଼ାଇ ଦେବି । ସୁଯୋଗ ନେଇ ମୋତେ ଅଧିକ ଦୁର୍ବଳ କରିବାକୁ ଭାବିଛୁ, ପାଜି କୋଉଠିକାର । ବିରକ୍ତିରେ ମୁହଁ ବୁଲାଇ ନେବା ବ୍ୟତୀତ ମୁଁ ଅଧିକ କିଛି କହି ପାରିଲି ନାହିଁ ବା କରି ପାରିଲି ନାହିଁ । କାରଣ ସେ ମୋତେ ଜିତିଯାଇଛି ।

ରିକ୍ସା ନଦୀଘାଟରେ ପହଞ୍ଚିଲା ଏବଂ ନଈ ବନ୍ଧ ଧରିଲୁ । ଅନ୍ଧାର ହେବାକୁ ଆଉ ଅଳ୍ପ ସମୟ ଡ଼େରି ଥିଲା । ଆମକୁ ଦେଖି ଗୁଡ଼ାଏ ଅଧା ଲଙ୍ଗଳା ଗାଁ ପିଲା ଛାତିରେ ହାତକୁ ଛନ୍ଦି ଆମ ପଛରେ ଧାଡ଼ି ବାନ୍ଧିଲେଣି । ନଈ ବନ୍ଧରେ ଚାଲୁଥିବାବେଳେ ମୋର ମନେ ହେଲା, ମୁଁ ଯେମିତି ସେଇ କୁହୁକ ବଂଶୀବାଲା, ଏଇ କୋମଳମତି ଶିଶୁମାନଙ୍କୁ ବଂଶୀସ୍ୱରରେ ମୁଗ୍ଧ କରି ଘେନି ଯାଉଛି କେଉଁ ପାହାଡ଼ର ଅନ୍ଧକାର ଗହ୍ୱରକୁ ।

ଘରେ ପହଞ୍ଚିବା ପୂର୍ବରୁ ସାମନାରେ ଥିବା ସେଇ କୋଳିଗଛକୁ ଚାହିଁଲି । ସେ ବହୁ ଦିନରୁ ବୋଧହୁଏ ହଣା ହୋଇ ସାରିଛି । ତଥାପି ସେଇ କୋଳିଗଛ ଓ

ପିଲାବେଳର ସ୍ମୃତି ମୋତେ ମୁହୂର୍ତ୍ତେ ସେଠି ଠିଆ କରାଇ ଦେଲା । ପାଣୁନାଥ ମୋ ବ୍ରିଫ୍‌କେଶଟି ଘରେ ପହଞ୍ଚାଇ ଦେବା ପରେ ମୋତେ ଯେଉଁମାନେ ଅପେକ୍ଷା କରିଥିଲେ ଦାଣ୍ଡଦୁଆରେ ସେମାନେ ତଥାକଥିତ ପରିବାରର ଲୋକ । କିଛିଟା ଦୂରରେ ପିଲାଗୁଡ଼ିକ ମୋତେ ସେମିତି ଘେରି ଠିଆ ହୋଇଥିଲେ ଜଣେ ନୂଆ ଲୋକ ଭାବି କିମ୍ବା ସିଧା କଲିକତାରୁ ଫେରିଛି, ଘରେ ପହଞ୍ଚି ପୁଟୁଳୀ ଖୋଲି ଗୋଟିଏ ଲେଖା ଖଜୁରୀ କୋଳି ଧରାଇଦେବି ସେମାନଙ୍କ ହାତରେ ।

ମୋ ଦୃଷ୍ଟି ପଡ଼ିଲା ବାପା ନାମକ ମଣିଷଟି ଉପରେ, ଯେ ତାଙ୍କ ବୟସର ବୋଝକୁ ପିଠିରେ ବୋହି ଦୁଇଟି ପରଳଢ଼ଙ୍କା ଆଖିରେ ମୋତେ ଅପେକ୍ଷା କରିଥିଲେ । କିନ୍ତୁ ଦେଖିଲା ପରେ ମୁଁ ଭିତରକୁ ଗଲି ଓ ସନ୍ଧ୍ୟା ହୋଇଯିବାରୁ ପିଲାମାନେ କ୍ରମେ ନିଜ ନିଜ ଘରକୁ ଗଲେ । ଆମେ ନୀରବରେ କିଛି ସମୟ ବସିଲୁ । କେବଳ ପଦିଏ କଥା ତାଙ୍କ ମୁହଁରୁ ବାହାରି ପଡ଼ିଲା, ଯାହାହେଉ ଥରେ ଆସିଲୁ, ମୋତେ କେତେ ହାଲକା ଲାଗିଲା । ମୋ ଆଖିଟା ଟିକେ ଓଦାଳିଆ ଲାଗିଲା ଓ ଛାତିରେ ଶ୍ୱାସରୁଦ୍ଧ ହୋଇଆସିଲା । କାରଣ ସେଇ ବୃଦ୍ଧ ଓ ମୋ ମଝିରେ ବତିଶି ତେତିଶି ବର୍ଷର ଜଣେ ସ୍ତ୍ରୀ ଲୋକର ଛାଇ କେଉଁଠି ଅଲକ୍ଷ୍ୟରେ ଠିଆ ହୋଇ ଯାଇଥିଲା ବୋଧହୁଏ ।

କିଛି ସମୟ ଏମିତି କଟିଗଲା ପରେ ମୋର ପାଣୁନାଥର କଥା ମନେ ପଡ଼ିଲା; ଅନେକ ପୁରୁଣା ଲୋକ ଚାଲିଗଲେଣି... ସାହୁ ଘର ବୁଢ଼ା ଯିବା ଉପରେ । ସେତେବେଳକୁ ରାତି ହୋଇଯାଇଥିଲେ ମଧ୍ୟ ମୋର କାହିଁ ଇଚ୍ଛା ହେଲା ସେ ସାହୁ ବୁଢ଼ାକୁ ଟିକେ ଦେଖିବି । ସେତେବେଳକୁ ପାଣୁନାଥ ତା ନିତ୍ୟକର୍ମ ସାରି ମୋ ପାଖରେ ପହଞ୍ଚି ଯାଇଥିଲା । ତାକୁ ସାଙ୍ଗରେ ଧରି ବାହାରିଲି ଗାଁ ଶେଷ ମୁଣ୍ଡର ସେ ଘରଟିକୁ । ଶୀତଦିନ, ରାତି ସାତଟାରେ ଗାଁରେ କବାଟ ପଡ଼ିଯାଏ । ତଥାପି କିଏ କେମିତି ପିଣ୍ଡାରେ ବସି ସୁଖଦୁଃଖ ହେଉହେଉ ମୋର ପରିଚୟ ଜାଣୁଥିଲେ ଓ 'ଅପରୂବ' ନାମକ ଶବ୍ଦରେ ସେମାନଙ୍କ ବକ୍ତବ୍ୟ ଶେଷ କରୁଥିଲେ । ଶେଷରେ ସାହୁଘରେ ପହଞ୍ଚିଲୁ । ପାଣୁନାଥ ଆଗ ଘର ଭିତରକୁ ପଶିଗଲା । ମୁଁ ବାହାରେ ଠିଆ ହୋଇ ରହିଲି । କିଛି ମିନିଟ୍ ପରେ ସାହୁଙ୍କ ପୁଅ ଡ଼ିବିରୀଟିଏ ହାତରେ ଧରି ଆସିଲା । ମୋତେ ନମସ୍କାରଟିଏ କରି ଭିତରକୁ ଡ଼ାକିନେଲା; ଲଇଁକି ଆସିବେ, ମୁଣ୍ଡ ଭେଟିବ ।

ସାହୁ ମଶିଣା ଉପରେ ପଡ଼ିଥିବା ଗୋଟିଏ ତେଲଚିକିଟା କନ୍ଥାରେ ବସିଥାଏ କାନ୍ଥକୁ ଡ଼େରିହୋଇ ଓ ତା'ର ଗୋଡ଼ ହାତ ଫୁଲିଯାଇ ବଡ଼ ଭୟଙ୍କର ଦିଶୁଥାଏ । ତା

ପୁଅ ମୋ ଆସିବା ସମ୍ବାଦ ଦେଲା ପରେ ବୁଢ଼ା ଟିକେ ସଳଖ ବସିବାକୁ ଚେଷ୍ଟା କଲା । ପୁଅ ଓ ପାଣ୍ଡୁନାଥ ତାକୁ ସଳଖ ବସିବାରେ ସାହାଯ୍ୟ କଲେ । ମୁହୂର୍ତ୍ତକ ପାଇଁ ତା କୋଟରଗତ ଚକ୍ଷୁ ଦୁଇଟିରେ କ୍ରୋଧ ପ୍ରକାଶିତ ହେଲା । କେମିତି ଗୋଟେ ଭଙ୍ଗାଗଳାରେ ସେ ଆରମ୍ଭ କଲା; କୁଆଡ଼େ ଅଇଲ ବାବୁ । ପାଞ୍ଚବର୍ଷରେ ଥରେ ଆସିବ... ମିଠା କଥାରେ ମନ କିଣିବ... ବାକ୍ସ ଦେଇ ଔଷଧ ଦେଲ ଯେ, ଏଣେ ଆମ ଗୋଡ଼ ଫୁଲୁଛି... ସେ ଶଳେ ମାସକୁ ପଚାଶ ଟଙ୍କା ସାଙ୍ଗରେ ଔଷଧ ପଇସାକୁ ଚଲୁ କଲେ... ଆମେ ତ ଏମିତି ମରିବୁ ଫେରେ କାହିଁକି ଆସିବ ମୁହଁ ଦେଖାଇବାକୁ ।

ତା ପୁଅ ଓ ପାଣ୍ଡୁନାଥ ବୁଢ଼ାକୁ ବୁଝାଇବାକୁ ଚେଷ୍ଟା କଲେ ମୁଁ କୌଣସି ନେତା ନୁହେଁ, ସେଇ ଗାଁର ପୁଅ । ବୁଢ଼ା ଚିହିଁକି ଉଠିଲା; ଭାକ୍ ଶଳା, ସବୁ ଶଳେ ସମାନ... ସହରରେ ରହି ଗାଁକୁ ଆସନ୍ତି କୁମ୍ଭୀରକାନ୍ଦଣା କାନ୍ଦିବାକୁ ! ତାପରେ ସେ ଗୁମ୍‌ମାରି ବସିଗଲା ମୁଣ୍ଡ ତଳକୁ ଝୁଲାଇଦେଇ । ବୁଢ଼ାର କଥାରେ ମୋ ସତ୍ତା ପ୍ରାୟ ଲୋପ ହୋଇ ଆସୁଥିଲା... ଗୋଟାଏ କ୍ଷୋଭ ଓ ଅଭିମାନରେ ବୁଢା ମୁହଁ ତଳକୁ କରି ଦେଇଥିଲା ଯେ ଆଉ ଟେକିବ ନାହିଁ ବୋଲି ମୁଁ ନିଶ୍ଚିତ ଥିଲି । ମୋତେ ଲାଗିଲା ଗ୍ରାମବହୁଳ ଭାରତବର୍ଷର ଏମିତି ଅସଂଖ୍ୟ ସାହୁବୁଢ଼ା ଓ ତା ପୁଅମାନଙ୍କ ପାଇଁ ଯେ ଜୀବନ ତମାମ ସଂଗ୍ରାମ କରି ଶେଷରେ ନାଥୁରାମ ଗଡ଼ସେ ଗୁଳିରେ ଜୀବନ ଝୁଲାଇଦେଲା, ଏ ସେଇ ବୁଢା, ନାଁ ତା'ର ପ୍ରେତାତ୍ମା । ଛୋଟିଆ ଓଡ଼ିଶାଟି ଭାରତମାତା ଶରୀରର ଏକ ଅଂଶ ମାତ୍ର ।

ଗୋଟିଏ ଅପରାଧବୋଧ ଓ ଆଶଙ୍କାରେ ମୁଁ ସେଠୁ ପ୍ରାୟ ଦଉଡ଼ି ପଳାଇ ଆସିଲି । ଘରେ ମଧ୍ୟ କାହାକୁ କିଛି ନ କହି ଗଣ୍ଡେ ଖାଇ ଦେଇ ଶୋଇଗଲି ।

ପରଦିନ ସୂର୍ଯ୍ୟୋଦୟ ପୂର୍ବରୁ ମୁଁ ଗାଁ ଛାଡ଼ି ଦେଇଥିଲି ଓ ସେଇ ନାଲି ଗୋଡ଼ି ରାସ୍ତାରେ ଆସୁ ଆସୁ ଯାହାକୁ ଭେଟୁଥିଲି ତା'ର ଆଖି ଯୋଡ଼ିକ ଓ ମୁହଁଟି ମୋତେ ସାହୁବୁଢ଼ା ପରି ମନେ ହେଉଥିଲା ।

ସହରରେ ନିଜକୁ ସାମିଲ୍ କରିଦେବା ପର୍ଯ୍ୟନ୍ତ ମୁଁ ଅଣନିଶ୍ୱାସୀ ହୋଇ ଧାଇଁଥିଲି ଯେମିତି ଏବଂ ମନେମନେ ସିଦ୍ଧାନ୍ତ କରୁଥିଲି କୌଣସି ପାଣ୍ଡୁନାଥକୁ କସ୍ମିନ୍‌କାଳେ ମୋ ଡ୍ରଇଂରୁମ୍‌ରେ ପଶିବାକୁ ସୁଯୋଗ ଦେବିନି ଯେମିତି କେବେ !



# ଆର୍ଟିଷ୍ଟ

ଆମ ସହରରେ ସେ ଆର୍ଟିଷ୍ଟ୍‌ଙ୍କ ଆବିର୍ଭାବ ନିହାତି ଆକସ୍ମିକ । ତାଙ୍କ ଆବିର୍ଭାବ ସହରର ଲୋକମାନଙ୍କ ମଧ୍ୟରେ ପ୍ରଥମେ ଗୋଟାଏ ମୃଦୁ ଆଲୋଡ଼ନ ସୃଷ୍ଟି କଲା ଯେମିତି ସବୁଜ ଧାନକ୍ଷେତ ଉପରେ ଧୀର ପବନ ଲହଡ଼ି ଭାଙ୍ଗି ଖେଳିଯାଏ ଓ ଏବଂ ସାମାନ୍ୟ କେତେଦିନ ପରେ ଆର୍ଟିଷ୍ଟଙ୍କର ସ୍ୱତନ୍ତ୍ର ରୁଚି ଓ ତାଙ୍କ ଆର୍ଟିଷ୍ଟିକ୍ ଗୁଣାବଳୀର କିଛି କିଛି ଏକ୍‌ଜିବିସନ ପରେ ସେଇ ମୃଦୁ ଆଲୋଡ଼ନ କ୍ରମେ ଉତ୍ତାଳ ତରଙ୍ଗରେ ପରିଣତ ହେଲା । କହିବା ବାହୁଲ୍ୟ, ଏପରି ଏକ ସୁଗୁଣସମ୍ପନ୍ନ ବ୍ୟକ୍ତିଙ୍କର ପରିଚର୍ଯ୍ୟା ଓ ସ୍ତାବକତା ପାଇଁ ସମୁଦାୟ ସହରର ଲୋକେ ଉଦ୍‌ଗ୍ରୀବ ହୋଇପଡ଼ିଲେ ।

ଅନ୍ୟ କୌଣସି ସହରରେ ହୁଏତ ଏମିତି ଏକ ଆଲୋଡ଼ନ ସମ୍ଭବ ହୋଇନଥାନ୍ତା । କିନ୍ତୁ ଆମ ସହରର ଲୋକେ ଅତିମାତ୍ରାରେ ସ୍ୱାଧୀନଚେତା ଏବଂ ନିଜ ସ୍ୱାଧୀକାର ସମ୍ପର୍କରେ ବିଶେଷ ସଚେତନ । କାହିଁକି ନା ସନ୍ଧ୍ୟା ହେଲେ ସେମାନେ ଦଳଦଳ ହୋଇ ରାସ୍ତା ଅବରୋଧ କରନ୍ତି; ଗାଡ଼ି, ବସ୍ ଇତ୍ୟାଦିକୁ ରାସ୍ତାରେ ଅନେକ ସମୟ ହର୍ଣ୍ଣ ମାରି ପରିବେଶକୁ କୋଳାହଳମୟ କରିବାର ସୁଯୋଗ ଦେବା ସଙ୍ଗେ ସଙ୍ଗେ ସାଧାରଣ ନାଗରିକର ସ୍ୱାଭାବିକ ଯାତାୟତରେ ଅନ୍ତରାୟ ସୃଷ୍ଟି କରି ସେମାନେ ଘୋଷଣା କରନ୍ତି ଆମ ସ୍ୱାଧୀକାର ବଳରେ ସମସ୍ତ ପଥ ଅବରୋଧ କରି ଆମେ ଆମର ଅସ୍ତିତ୍ୱ ଘୋଷଣା କରୁଛୁଁ । ପର୍ବପର୍ବାଣି ହେଲା ତ କଥା ଶେଷ - ଅଧିକାର ସର୍ବୋଚ୍ଚ ସୀମାରେ, ମୁଷ୍ଟିମେୟଙ୍କ ରୁଚିପ୍ରତି ଧ୍ୟାନ ନାହିଁ, ଦିନରାତି ଚବିଶ ଘଣ୍ଟା ଡ଼ାକବାଜି

ଯନ୍ତ୍ରରେ ଲୋକପ୍ରିୟ ସଙ୍ଗୀତ ପ୍ରଚାରରେ ପରିବେଶ ସରଗରମ । ତା ଅର୍ଥ, ଯାହା କରିବେ ପୂର୍ଣ୍ଣମାତ୍ରାରେ, ପର୍ବପର୍ବାଣିର ଅନୁଭୂତିକୁ ଜୋର କରି ଲୋକଙ୍କ ଭିତରେ ପୁରାଇଦେବେ ।

ଏତଦ୍‌ଭିନ୍ନ ଆମ ସହରରେ ଲୋକମାନେ ବେଶ୍ ଡ଼େମୋକ୍ରାଟିକ୍ । ସେମାନେ ଥରେ ପ୍ରତିନିଧି ନିର୍ବାଚିତ କରିଦେଲା ପରେ ଅନ୍ୟାନ୍ୟ ବିଷୟମାନଙ୍କ ପ୍ରତି ବଡ଼ ଉଦାସୀନ । ଆଳୁ କିଲୋ ତିନି ଟଙ୍କା, ଚିନି ଆଠ ଟଙ୍କା, ସୁଜି ତିନି ଟଙ୍କା, ଚାଉଳ ଅଢ଼େଇ ଟଙ୍କା... ବଢ଼ିଥାଉ ତା' ବାଟରେ, ଆମର କି ଯାଏ । ଆମେ ପ୍ରତିନିଧି ବାଛିଦେଇଛୁଁ, ଦାୟିତ୍ୱ ତାଙ୍କର । ତା'ଛଡ଼ା ସେମାନେ ନଶ୍ଚେଷ୍ଟ ନୁହଁନ୍ତି । ସେମାନେ ଚିନ୍ତା କରୁଛନ୍ତି, ବିବ୍ରତ ହୋଇ ବିଭିନ୍ନ ମନ୍ତବ୍ୟ ଦେଉଛନ୍ତି । ଲୋକଙ୍କ କଷ୍ଟ ପାଇଁ ଉଦ୍‌ବେଗ ପ୍ରକାଶ କରୁଛନ୍ତି । ଅଧିକ କ'ଣ ସେମାନେ କରିପାରନ୍ତେ । କେଉଁ ଦୁର୍ବଳ ମୁହୂର୍ତ୍ତରେ ଦେଶକୁ ସଜାଡ଼ିବାକୁ ଦଳ ମଜଭୁତ ଚାହି, ସେ ଦୃଷ୍ଟିରୁ କେତେଟା ଟଙ୍କା କେଉଁ ବ୍ୟବସାୟୀ ଅଘିରାକୁ ବାଇଗଣ ଫିଙ୍ଗିଲାପରି ପକାଇଦେଇଥିବ ଆଉ ତା'ର ସୁଯୋଗ ନେଇ କିଛି ପଇସା ବଢ଼ାଇଦେଲେ ସେମାନେ ବା କ'ଣ କରିପାରନ୍ତେ । ସେମାନେ ଚିନ୍ତା କରୁଛନ୍ତି ଏବଂ ସମୟ ସୁଯୋଗ ନେଇ ଆବଶ୍ୟକୀୟ ମନ୍ତବ୍ୟ ଦେଉଛନ୍ତି, ସେତକ ଯଥେଷ୍ଟ ବୋଲି ଆମ ଡ଼େମୋକ୍ରାଟିକ୍ ସହରବାସୀ ସଚେତନ । ତେଣୁ ପ୍ରତ୍ୟେକ କଥାରେ ସେମାନେ ନିର୍ବିକାର । କିନ୍ତୁ ପୂଜ୍ୟପୂଜାର ବ୍ୟତିକ୍ରମ ଏକ ଅକ୍ଷମଣୀୟ ଅପରାଧ ବୋଲି ସେମାନେ ଧରି ନେଇଛନ୍ତି । ଫଳରେ ସହରରେ ଆର୍ଟିଷ୍ଟଙ୍କ ଆବିର୍ଭାବ ସେମାନଙ୍କ ଏକ ପରମ ସୌଭାଗ୍ୟ ଓ ତାଙ୍କର ଯଥୋଚିତ ସତ୍‌କାର ସେମାନଙ୍କର ଏକ ପରମ କର୍ତ୍ତବ୍ୟ ହିସାବରେ ସେମାନେ ଧରି ନେଇଛନ୍ତି ।

ଆର୍ଟିଷ୍ଟଙ୍କର ଆଗମନର ବାର୍ତ୍ତା ତେଣୁ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ଲୋକମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ପ୍ରକାଶ ପାଇଲା ଓ ପ୍ରଥମେ କିଏ ତାଙ୍କୁ ସାକ୍ଷାତ କରିବାର ସୁଯୋଗ ପାଇବ ସେ ନେଇ ସତର୍କତାରେ ଗୋଟିଏ ପ୍ରବନ୍ଧ ପ୍ରତିଦ୍ୱନ୍ଦ୍ୱିତା ସହରବାସୀଙ୍କ ଭିତରେ ଦେଖାଗଲା; ଯେମିତି କୌଣସି ସାଧୁବାବାଙ୍କର ଆବିର୍ଭାବ ଘଟିଛି ଏବଂ ତାଙ୍କ ଅଲୌକିକ କାରସାଦି ବଳରେ ସେ ଲୋକଙ୍କର ଯାବତୀୟ ଦୁଃଖ ସମସ୍ୟାକୁ ଧୂଆଁ ପରି ମୁହୂର୍ତ୍ତକରେ ଉଡ଼ାଇଦେବେ । ତାଙ୍କ ଦର୍ଶନ ପାଇଁ ସେଇ ବ୍ୟାକୁଳତା ଲୋକମାନଙ୍କର ।

ପ୍ରଥମ ଦିନ ଭୋର ପାଞ୍ଚଟାରୁ ଭିଡ଼ ଆରମ୍ଭ ହୋଇଗଲା । ପ୍ରତ୍ୟେକେ ନିଜ

ନିଜ ସତର୍କତାରେ; ଅଥଚ ଆର୍ଟିଷ୍ଟଙ୍କ ରହିବା ସ୍ଥାନ ନିକଟରେ ବିରାଟ ଭିଡ କ୍ରମେ ପଶ୍ଚାତ୍‌ମୁଖୀ ହେଉଥିଲା । ଭିଡ ପଛରେ ଥିବା ଲୋକମାନେ ଶୁଣୁଥିଲେ ଆର୍ଟିଷ୍ଟ ଶଯ୍ୟା ତ୍ୟାଗ କରି ନାହାନ୍ତି ଏବଂ ନିକଟ ଦୁଇ-ଚାରି ଘଣ୍ଟା ମଧ୍ୟରେ ଶଯ୍ୟାତ୍ୟାଗର କୌଣସି ସମ୍ଭାବନା ନାହିଁ । ପଛରେ ଆସୁଥିବା ଲୋକମାନେ ବିଶେଷ କ୍ଷତିଗ୍ରସ୍ତ ହେଇ ନାହାନ୍ତି ବୋଲି ଆଶ୍ୱସ୍ତ ହେଉଥିଲେ ଓ ଭିଡର ପ୍ରଥମ ଲୋକମାନେ ଗୋଟାଏ ହତାଶା ମଧ୍ୟରେ ଅନ୍ୟ ଏକ ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରୁଥିଲେ ।

ଦ୍ୱିତୀୟ ଦିନ । ସେମିତି କ୍ରମାନ୍ୱୟରେ ସହରବାସୀଙ୍କ ଗହଳି ବଢ଼ିଲା ଆର୍ଟିଷ୍ଟଙ୍କ ସାମୟିକ ବାସସ୍ଥଳୀରେ । ସେତେବେଳକୁ ଆର୍ଟିଷ୍ଟ ଶଯ୍ୟା ତ୍ୟାଗ କରି ସାରିଥିଲେ । ସମ୍ବାଦଟି ଉପସ୍ଥିତ ସଜ୍ଜନମଣ୍ଡଳୀ ଭିତରେ ଯଥେଷ୍ଟ ଉଦ୍ଦୀପନା ସୃଷ୍ଟି କଲା । ସେମାନେ ଉତ୍ସୁକ ହୃଦୟରେ ଅପେକ୍ଷା କଲେ ସେଇ ଶୁଭ ମୁହୂର୍ତ୍ତଟିକୁ ଯେତେବେଳେ ସେ ବାଲ୍‌କନିରେ ସର୍ବସାଧାରଣଙ୍କୁ ଆସି ଦର୍ଶନ ଦେବେ । ପୁନର୍ବାର ଘଟଣା ଘଟିଲା ଭିନ୍ନ ପ୍ରକାର । ଆର୍ଟିଷ୍ଟଙ୍କ ପରିବର୍ତ୍ତେ ତାଙ୍କର ଜଣେ ପାର୍ଶ୍ୱଚର ଯେ କି ଯୌନବ୍ୟାଧିଗ୍ରସ୍ତ ଗୋଟିଏ ଧେଡ଼ା ଟୋକା ପରି ମନେ ହେଉଥିଲେ, ତାଙ୍କର ଆବିର୍ଭାବ ଘଟିଲା ଓ ସେ ଦୁଃଖର ସହିତ ଘୋଷଣା କଲେ ଆପାତତଃ ଆର୍ଟିଷ୍ଟ 'ମୁଡ୍‌'ରେ, ଫଳରେ ସବସାଧାରଣଙ୍କୁ ସାକ୍ଷାତ ଦେବା ଅସମ୍ଭବ । ଘୋଷଣାଟି ନୈରାଶ୍ୟଜନକ ମନେ ହେଲେ ବି ଧୈର୍ଯ୍ୟର ସହିତ ଲୋକେ ଗ୍ରହଣ କରିନେଲେ । କାରଣ ସହରର ଲୋକେ ସହନଶୀଳ ଏବଂ ସେମାନେ ବୁଝିଥିଲେ ତାଙ୍କପରି ଜଣେ ଆର୍ଟିଷ୍ଟଙ୍କର ବିଳାସ ବୋଲି ଯଦି କିଛି କଥା ଥାଏ ତେବେ ତାହା ତାଙ୍କର 'ମୁଡ୍‌' । ତେଣୁ ଏ ସମୟରେ ତାଙ୍କୁ ବିବ୍ରତ କରାଯିବାଟା ଗୋଟାଏ ପ୍ରକାର ପାପ ବୋଲି ସେମାନେ ସେଥିରେ କିଛି ପ୍ରତିବାଦ କଲେନି ।

ତୃତୀୟ ଦିନ । ଯଥାସମୟରେ ସେଇ ସେମଟା ଯୁବକଟି ଆସି ଘୋଷଣା କଲା ଆର୍ଟିଷ୍ଟ ସଂପ୍ରତି 'ରିଲାକ୍ସ' କରୁଛନ୍ତି । କହିବା ବାହୁଲ୍ୟ, ସେତେବେଳକୁ ଉପସ୍ଥିତ ଜନତାର ଧୈର୍ଯ୍ୟ କ୍ରମେ ଶିଥିଳ ଅବସ୍ଥାକୁ ଆସି ଯାଇଥିଲା । କାରଣ ଜଣେ ଆର୍ଟିଷ୍ଟଙ୍କ ପ୍ରତି ସମ୍ମାନବୋଧ ତଥା ତାଙ୍କ ଦର୍ଶନର ସୌଭାଗ୍ୟ ସେମାନଙ୍କୁ ଏମିତି ବିବ୍ରତ କରି ପକାଉଥିଲା, ଗୋଟିଏ ଦିନର ବ୍ୟବଧାନ ସେମାନଙ୍କୁ ଗୋଟିଏ ଯୁଗ ପରି ମନେ ହେଉଥିଲା । ସେମାନେ ବୁଝିଥିଲେ ଆର୍ଟିଷ୍ଟ ମାତ୍ରେ ଇ 'ମୁଡ଼ି', ସେମାନେ 'ରିଲାକ୍ସ' କରନ୍ତି ଏବଂ ଜଣେ ରାଜନୈତିକ ନେତା ନୁହଁନ୍ତି, ତାଙ୍କ ନିର୍ବାଚନମଣ୍ଡଳୀର ଲୋକଙ୍କୁ

ସାକ୍ଷାତ ଦେବାକୁ ବାଧ ସବୁ ଅସୁବିଧା ସତ୍ତ୍ୱେ । ତଥାପି ଧୈର୍ଯ୍ୟ ଆବଶ୍ୟକ, ଜଣେ ଅପେକ୍ଷାକୃତ ଯୁବକ ମନ୍ତବ୍ୟ ଦେଲେ, ଯେହେତୁ ସେମାନେ ସାମାଜିକ ରୁଚି ପରିବର୍ତ୍ତନର ନୀରବ ନିର୍ଦ୍ଦେଶକ । ତେଣୁ ଖାମ୍ ଖେୟାଲ୍‌ରେ ସୋନଙ୍କୁ ଗ୍ରହଣ କରାଯିବା ସେମାନଙ୍କ ପ୍ରତି ଅବମାନନା । ଯୁବକଙ୍କର ସେଇ ମନ୍ତବ୍ୟଟି ସମସ୍ତଙ୍କ ଧୈର୍ଯ୍ୟକୁ ପୁଣି ଉତ୍ତେଜିତ କଲା ଓ ଚତୁର୍ଥ ଦିନକୁ ଅପେକ୍ଷା କରି ସମବେତ ସହରବାସୀ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଚତୁର୍ଥ ଦିନ । ଉତ୍କଣ୍ଠିତ ଜନତା । ଆଜି ବୋଧହୁଏ ଶେଷ ଅନ୍ତିମ ଦିନ ଯେତେବେଳେ ସୌଭାଗ୍ୟର ଦ୍ୱାର ଉନ୍ମୋଚିତ ହେବ । ଦୀର୍ଘ ପ୍ରତୀକ୍ଷା ସକାଳ ଆଠଟା ପର୍ଯ୍ୟନ୍ତ ଅତିକ୍ରମ କରିଗଲା । ଆର୍ଟିଷ୍ଟ କିମ୍ବା ସେଇ ସେମଟା ଚେଲାଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ଲୋକଙ୍କର ବିଷର୍ଣ୍ଣ ଭାବ କ୍ରମେ ବଢ଼ିବାକୁ ଲାଗିଲା । କେତେକ ଉତ୍ତେଜିତ ଯୁବକ ଏମିତି ସିଦ୍ଧାନ୍ତ ନେଲେ- ଆଜି ଯଦି ଆର୍ଟିଷ୍ଟଙ୍କର ଦର୍ଶନ ନ ମିଳେ, କିମ୍ବା 'ମୁଡ୍' ଓ 'ରିଲାକ୍ସ' ଆଳରେ ସେ ଲୋକମାନଙ୍କୁ ଏଡ଼ାଇ ଯାଆନ୍ତି ତେବେ ଜୋର୍‌କରି ତାଙ୍କ ପ୍ରକୋଷ୍ଠ ଖୋଲାଯିବ ଓ ଦର୍ଶନର ପଥ ସୁଗମ କରାଯିବ । ଯୁବକମାନଙ୍କର ଏବଂବିଧ ମନ୍ତବ୍ୟରେ କେତେକ ବୟସ୍କ ଲୋକ କ୍ଷୁବ୍ଧ ହେଲେ ଓ ମତବ୍ୟକ୍ତ କଲେ: ଆଜିକାଲିକା ଯୁବକମାନେ ପୂଜ୍ୟପୂଜାର ଗୁରୁତ୍ୱ ଭୁଲିଗଲେଣି । ସେ ପ୍ରକାର କର୍ମରୁ ଅବଶ୍ୟ ସୋନଙ୍କୁ ନିବୃତ୍ତି କରିବାକୁ ପଡ଼ିବ । ଏ ପ୍ରକାର ଆଲୋଚନା ପ୍ରତି-ଆଲୋଚନା ଭିତରେ ଆର୍ଟିଷ୍ଟଙ୍କ ପ୍ରକୋଷ୍ଠ ଖୋଲିଗଲା ଏବଂ ପୂର୍ବୋକ୍ତ ସେମଟା ଯୁବକ ଅଧରରେ ସ୍ମିତହସ ପ୍ରକାଶ କରି ଆବିର୍ଭାବ ହେଲେ । ତାଙ୍କ ସ୍ମିତହସ ସମବେତ ଜନତାର ଉଦ୍ଦୀପନାକୁ ବହୁ ପରିମାଣରେ ଉଜ୍ଜୀବିତ କଲା; ହୁଏତ ସେ ସୌଭାଗ୍ୟର ମୁହୂର୍ତ୍ତ ଆସିଗଲା ।

ଯୁବକ ଯୋଡ଼ହସ୍ତରେ ସମବେତ ଜନତାଙ୍କୁ ଅଭିବାଦନ ଜଣାଇଲେ ଓ କେତୋଟି ମୁହୂର୍ତ୍ତ ମଧ୍ୟରେ ତାଙ୍କ ଅଭିପ୍ରାୟ ଜଣାଇଲେ; ସମ୍ପ୍ରତି ଆପଣମାନଙ୍କର ସାକ୍ଷାତ ପାଇଁ ଆର୍ଟିଷ୍ଟ ପ୍ରସ୍ତୁତ । ଏଇ ସମ୍ବାଦର ଅପେକ୍ଷାରେ ଯେମିତି ସମସ୍ତେ ଥିଲେ, ଫଳରେ ଘାଇଭଙ୍ଗା ପାଣିସୁଅ ପରି ଉପସ୍ଥିତ ଲୋକେ ଗୋଟାଏ ହୋ'ରେ ସେ ପ୍ରକୋଷ୍ଠ ମଧ୍ୟରେ ଠେଲାପେଲା ହୋଇ ପଶିଗଲେ ଓ ଆର୍ଟିଷ୍ଟଙ୍କ ଆସ୍ଥାନର ଯଥାସମ୍ଭବ ନିକଟରେ ନିଜ ନିଜର ସ୍ଥାନ ବାଛି ନେଲେ । ସେ ହଲ୍‌ରେ ଲୋକପୂର୍ଣ୍ଣ ହୋଇଯିବା ଏବଂ ସ୍ଥିର ହୋଇ ବସିବାର ଉପକ୍ରମ କିଛି ସମୟ ନେଲା । ଏ ସମସ୍ତ ଉପକ୍ରମ ସରିଗଲା ପରେ

ଶେଷରେ ଯେଉଁ ଗୋଟିଏ କଥା ରହିଲା ତାହା ଆର୍ଟିଷ୍ଟଙ୍କ ଉପରେ ସମବେତ ଦୃଷ୍ଟିପାତ । ସେତେବେଳେ ପ୍ରାୟ ଆର୍ଟିଷ୍ଟ ଶଯ୍ୟା ତ୍ୟାଗ କରିଥିଲେ । ସ୍ନାନାଦି ଶୌଚକର୍ମ ତଥାପି ବାକୀ ଥିଲା, ମୁହଁରେ ଅଳ୍ପ ଅଳ୍ପ ଦାଢ଼ି, ମୁଣ୍ଡରେ ଝାମ୍ପୁରା ବାଳ ନାକ ପର୍ଯ୍ୟନ୍ତ ତାଙ୍କ ମୁହଁକୁ ଢ଼ାଙ୍କି ପକାଇଥିଲା । ଫଳରେ ଆଖି ଦୁଇଟି ସେଇ ବାଳ କେରା ମଧ୍ୟରୁ ଅସ୍ପଷ୍ଟ ହୋଇ ଲୋକମାନଙ୍କର ଦୃଷ୍ଟିଗୋଚର ହେଉଥିଲା । ହାତର ନଖଗୁଡ଼ିକ ଲମ୍ବ ଲମ୍ବ ଓ ସେଗୁଡ଼ିକ ନେଚୁରାଲ ରଙ୍ଗରେ ଆଚ୍ଛାଦିତ ଥିଲା । ଉପସ୍ଥିତ ଜନତାଙ୍କର ଭିଡ଼ ସତ୍ତ୍ୱେ ସେ ମଝିରେ ହାଇମାରି ତାଙ୍କର ତଥାପି ନିଦ ଆବଶ୍ୟକ ବୋଲି ସୂଚନା ଦେଉଥିଲେ ବି ଜୋର କରି ଅବିନ୍ୟସ୍ତ ଭାବରେ ଲୋକଙ୍କୁ ଦର୍ଶନ ଦେବାର ସୁଯୋଗ ସେ ଦେଇଥିଲେ । ସମବେତ ଜନତା ତାଙ୍କ ଭିତରେ କିଛିଟା ସ୍ୱତନ୍ତ୍ର୍ୟ ଖୋଜୁଥିଲେ, କାରଣ ସେ ଜଣେ ଆର୍ଟିଷ୍ଟ ଓ ସାଧାରଣ ଲୋକଙ୍କ ଠାରୁ ଭିନ୍ନ । କିଛିଟା ପାଉଥିଲେ ସେମାନେ, ଯେହେତୁ ତାଙ୍କ ଛାପା ଲୁଙ୍ଗି ଖଣ୍ଡିକ ଦେହର ଆବଶ୍ୟକ ଅଂଶକୁ ଆନୁପାତିକ ଧାରାରେ ଆଚ୍ଛାଦିତ କରି ନ ଥିଲା ଓ ଦେହର ରଙ୍ଗୀନ ପଞ୍ଜାବୀ ଖଣ୍ଡିକର ବୋତାମଗୁଡ଼ିକ ତ ଖୋଲାଥିଲା, ତେବେ ବହୁଦିନରୁ ସଫା ହୋଇ ନଥିବାର ସୂଚନା ସେଥିରେ ଯଥେଷ୍ଟ ଥିଲା । ତାଛଡ଼ା ବିଛଣାଚାଦର ସ୍ୱାଭାବିକ ନଥିଲା ଓ ରାତିରୁ ଗୋଡ଼ରେ ଥିବା କେଟସ୍ ହଳକ ତଥାପି ଖୋଲାଯାଇ ନଥିଲା । ନୀରବ ଦୃଷ୍ଟି ବିନିମୟରେ ସେମାନେ ସ୍ଥିର କରିନେଲେ, ନିଶ୍ଚୟ ଯା'ଠାରେ ବିଶେଷତ୍ୱ କିଛି ରହିଛି ।

ନୀରବରେ କିଛି ସମୟ କଟିଗଲା । ଆର୍ଟିଷ୍ଟ ଅଧୁଆ ମୁହଁରେ କପେ ଚା'ରେ ଚୁମକ୍ ଦେଉ ଦେଉ ଆରମ୍ଭ କଲେ- ଆପଣମାନଙ୍କୁ ମୁଁ ନିଶ୍ଚୟ ଅଡୁଆ ଲାଗୁଥିବି, ଆଇ ଏମ୍ ସରି; ମୁଁ କିଛିଟା ବୋହେମିଆନ୍ ଇନ୍ ନେଚର !

ଶବ୍ଦଗୁଡ଼ିକ ଯେମିତି କିଛି ବିସ୍ଫୋରକ ଏବଂ ତାକୁ କଳିବା ପାଇଁ ଲୋକମାନଙ୍କର ସାଧାରଣ ଜ୍ଞାନ ବହୁତ ତଳେ ଥିଲା । ସେ ଜଣେ ଆର୍ଟିଷ୍ଟ ଯେହେତୁ ତାଙ୍କ କାନ୍ଥବାଡ଼ିରେ କିଛି ଚିତ୍ର ଝୁଲୁଥିବ- ଏଇ ଧାରଣାରେ ଚାରିଆଡ଼େ ଦୃଷ୍ଟି ନିକ୍ଷେପ କରୁଥିବା ଲୋକମାନେ ଶବ୍ଦଟିରେ ତାବ୍‌ଦା ହୋଇଗଲା ବେଳେ ଯୁବକଟି କିନ୍ତୁ ତା ଆଧୁନିକର ରୁଚିର ପ୍ରମାଣ ଦେବାକୁ ଫସ୍ ଫିସ୍ ସ୍ୱରରେ କହିଲା: 'ବୋହେମିଆ ପୃଥିବୀର ଗୋଟିଏ ଦେଶ ଓ ସେ ଦେଶର ଲୋକମାନେ ଅଧିକ ସଭ୍ୟ ଏବଂ ରୁଚିପୂର୍ଣ୍ଣ । ତେଣୁ ଆମ ଆର୍ଟିଷ୍ଟ ମଧ୍ୟ ସେଇ ଧରଣର । ଯୁବକର ଏଇ ବକ୍ତବ୍ୟରେ ପାଖରେ ବସିଥିବା ଇତିହାସଜ୍ଞାନସମ୍ପନ୍ନ ବ୍ୟକ୍ତିଟି ଅଦ୍ଭୁତ ଭାବରେ ତାଙ୍କ ନାସିକା କୁଞ୍ଚନ କଲେ ଓ ତାଙ୍କର ସେଇ ନାସିକା

କୁଞ୍ଚନ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କଲା । ଏ ସମ୍ପର୍କରେ ସେ ଅଧିକ କିଛି ଜାଣିଛନ୍ତି । ସେ କଥାଟାର ମୋଡ଼ ଘୁରାଇଦେଲେ ! କଥାଟା ଠିକ୍ ସେୟା ନୁହେଁ, ବୋହେମିଆନ୍‌ମାନେ ସେଭେଜ, ଯାହାକୁ ଓଡ଼ିଆରେ କୁହନ୍ତି ବର୍ବର ଓ ସେମାନେ ସମସ୍ତ ପ୍ରକାର ପରମ୍ପରାର ବିରୋଧୀ । ବୋଧହୁଏ ପୂର୍ବ ରାତିର ହାଙ୍ଗଓଭର ଆର୍ଟିଷ୍ଟଙ୍କର ରହିଯାଇଥିଲା, ଫଳରେ ସେ ଖଟ ଉପରୁ ତଳକୁ ପ୍ରାୟ ଝୁଙ୍କିପଡ଼ି ଚିତ୍କାର କଲେ, 'ଦେଅାଅ ୟୁଆ, ଦେଅଅ ୟୁଆ ଦେଅଅ ୟୁଆ'- ସମସ୍ତେ ଇତିହାସ ଜ୍ଞାନ ଥିବା ବ୍ୟକ୍ତିଙ୍କ ପ୍ରତି ଆଗ୍ରହୀ ହେଲେ ଓ ତାଙ୍କୁ ଆର୍ଟିଷ୍ଟ ସମର୍ଥନ କରୁଥିବାରୁ ତାଙ୍କୁ ଜଣେ ଭାଗ୍ୟବାନ୍ ଲୋକ ବୋଲି ଭାବିଲେ ।

ଇତିହାସବିତ୍‌ଙ୍କର ଏହି ଆକସ୍ମିକ ବିଜୟରେ କଣ୍ଟିତ୍ ଯୁବକ କ୍ଷୁବ୍ଧ ହେଲେ ଓ ତାଙ୍କୁ ଅତିକ୍ରମ କରିଯିବା ପାଇଁ ସେ ଆର୍ଟିଷ୍ଟଙ୍କ ସହିତ ସିଧାସଳଖ ଯୋଗସୂତ୍ର ସ୍ଥାପନ କରିଦେଲେ । ମହାଶୟଙ୍କର କ'ଣ ଓଡ଼ିଆ କଲଚର ପ୍ରତି ବିଶ୍ୱାସ ନାହିଁ ଯାହା ଟ୍ରାଡ଼ିସନାଲ ? ପ୍ରଶ୍ନଟିରେ ଆର୍ଟିଷ୍ଟ ହସି ଦେଲେ ଏବଂ ସେ ହସଟି ସମସ୍ତ ଉପସ୍ଥିତ ଭଦ୍ରବ୍ୟକ୍ତିଙ୍କୁ ସଂକ୍ରମିତ କଲା । କିଛିକ୍ଷଣ ପରେ ସେ ନୀରବ ହେଲେ ଏବଂ ସେହି ପ୍ରକ୍ରିୟାଟି ଅନ୍ୟମାନଙ୍କ ଭିତରେ ମଧ କାର୍ଯ୍ୟକାରୀ ହେଲା । ଆର୍ଟିଷ୍ଟ ଗମ୍ଭୀର ହେଲେ ଓ ଗଳା ଝାଡ଼ି ଆରମ୍ଭ କଲେ: ଆଇ ହେଟ୍... ଆଇ ହେଟ୍... ସେ' ୟୁ ୟା ଫକୀରମୋହନ- ଭିକ୍ଟୋରିଆନ୍ କଞ୍ଜରଭେଟିଜିମ୍; ୟୁ ସୋ ରାଧାନାଥ- ଇଂରେଜ ରୋମାଣ୍ଟିଷ୍ଟ... ସୋ ଅଲ୍ ସୋ ଦି ସବୁଜ ପନ୍ଥୀ... ନଥିଂ ଅରଜିନାଲ... ମିକ୍‌ଶ୍ଚର ଅବ୍ ଟ୍ରେଣ୍ଡସ୍ । ସେଇ ଗୋଳା ପକା ରାସ୍ତା...ଗୋଟିଏ ଧାରା... ହ୍ୱାଟ୍‌ସ୍ ନିଉ ଦେୟା... ! ଆମେ କିନ୍ତୁ ଗୋଟାଏ ଷ୍ଟର୍ମ, ଗୋଟାଏ ଡ଼େଭିଏସନ୍... ପେଣ୍ଟ ତଳେ ଚଡ଼ି ପିନ୍ଧି ପିନ୍ଧି ବୋର୍ ହେଲୁଣି, ଏବେ ପେଣ୍ଟ ଉପରେ ଚଡ଼ି ପିନ୍ଧିବୁ... ଗ୍ରାମାରକୁ ମାନି ମାନି ବୁଢ଼ା ହେଇଗଲୁଣି, ଏବେ ଗ୍ରାମାରକୁ କିକ୍ କରିବୁ... ଯାହା କିଛି ସହଜ, ରୋଟିନ୍‌ର ବିରୁଦ୍ଧ ତାକୁ ଏଷ୍ଟାବ୍ଲିଶ୍ କରିବୁ ! ସେ ୟୁୟୋ ଲଭ୍... ସେ ଷୋଡ଼ଶୀ, ଟ୍ରାଡ଼ିସନାଲ୍ ମିନି ସ୍କାର୍ଟ ପିନ୍ଧା ନବମ ଦଶମ ଝିଅ, ତା'ର ଖୋଲା ବଳିଲା ବଳିଲା ଗୋଡ଼, ତିରିଶରୁ ଚାଳିଶ ବର୍ଷର ମହିଳା, ପରିଣତ ବୟସ ଆସି ଯିବାର ଅବଶୋଷ, କୌତୂହଳରୁ ପରିଣତ... ହ୍ୱାଟ୍ ଏ ଚାର୍ମ... । ୟୁ ଫସିଲ୍‌ସ, ଗୋଟାଏ ଟ୍ରାଡ଼ିସନ୍/କଲଚର/ମୂଲ୍ୟବୋଧକୁ ମୁଠାଇ ମୁଠାଇ ପ୍ରତି ମୁହୂର୍ତ୍ତର ଜୀବନକୁ ମାପୁଛ... ସି ମି... ସମ୍ ଥିଙ୍ଗ ନିଉ... ।

'ଆଙ୍ଗା' 'ଆଙ୍ଗା'ର ଗୋଟାଏ କୋରସ୍ ସମୁଦାୟ ହଲ୍‌ଟିକୁ ପ୍ରକମ୍ପିତ କରିଦେଲା ।

ଅନେକଙ୍କର ଧାରଣାରେ ସେ କେବଳ ଜଣେ ଆର୍ଟିଷ୍ଟ ନୁହଁନ୍ତି, ଜଣେ ଯୁଗପୁରୁଷ । ଏଇ ଅବକ୍ଷୟର ଦୁନିଆକୁ ଆଲୋକ ଦେବା ପାଇଁ ସେଇ ହିଁ ଏକମାତ୍ର ସାର୍ଥକ ବ୍ୟକ୍ତିତ୍ୱ ।

ଆର୍ଟିଷ୍ଟଙ୍କର କେତୋଟି ବାକ୍ୟ ମଧ୍ୟରେ ସେ ସମସ୍ତଙ୍କୁ ପ୍ରାୟ ସମ୍ମୋହିତ କରିଦେଇଥିଲେ । ଗୋଟାଏ ଗତାନୁଗତିକ ଜୀବନଧାରାର ବିରୋଧୀ ସେ । ଜୀବନରେ ନୂତନତା ଆବଶ୍ୟକ । ହେଉନ୍ତୁ ସେ ବରଂ କଲ୍‌ଚରର ବିରୋଧୀ, ନୂଆ କିଛି ଦେଖାଇବାର ନିଷ୍ଠା ତାଙ୍କଠାରେ । ଆର୍ଟିଷ୍ଟଙ୍କର ବକ୍ତବ୍ୟ ପରେ ଜଣେ ପ୍ରୌଢ଼ ବ୍ୟକ୍ତି ତାଙ୍କର ନିବେଦନ ଜଣାଇଲେ- ମହାଶୟ ! ଆମର ପରମ ସୌଭାଗ୍ୟ ଆମେ ଆପଣଙ୍କର ଦର୍ଶନ ଲାଭ କଲୁ । କିନ୍ତୁ ଏ ସହର ଭିତରେ ଅସଂଖ୍ୟ ପରଦାସୀନ ଝିଅବୋହୂ ଅଛନ୍ତି ଯେଉଁମାନେ ଆପଣଙ୍କ ଦର୍ଶନ ପାଇଁ ଆଗ୍ରହୀ । ଆପଣଙ୍କର କୃପା ହେଲେ ନଗର ପରିକ୍ରମାର ବ୍ୟବସ୍ଥା କରନ୍ତୁ । ଆର୍ଟିଷ୍ଟ ଚିତ୍‌କାତ୍ ହୋଇ ଖଟ ଉପରେ ଗଡ଼ିଗଲେ ଓ ଗୋଡ଼ ଦୁଇଟି କାନ୍ଧ ଉପରେ ଭରା ଦେଇ ନିଜର ସମ୍ମତି ଦେଲେ; ବ୍ୟବସ୍ଥା କର ।

ଏଇ 'ବ୍ୟବସ୍ଥାକର'ର ସ୍ୱୀକୃତି ଗୋଟାଏ ପ୍ରବଳ ଆଲୋଡ଼ନ ସୃଷ୍ଟି କଲା । ଏକାବେଳକେ ସମସ୍ତେ ସେ ହଲରୁ ନିଷ୍କ୍ରାନ୍ତ ହେଲେ ଓ ଲନ୍‌ରେ ଠୁଳ ହୋଇ ନଗର ପରିକ୍ରମାର ସମ୍ଭାବ୍ୟ ବ୍ୟବସ୍ଥା ସମ୍ପର୍କରେ ଗୁରୁତର ବିଚାର ଆଲୋଚନା କଲେ । ପ୍ରଥମ କଥା ହେଲା କେଉଁଥିରେ ଆର୍ଟିଷ୍ଟ ନଗର ପରିକ୍ରମା କରିବେ, ଖୋଲାଜିପ୍/ଖୋଲାକାର୍/ ଖୋଲାରିକ୍‌ସା/ କିମ୍ବା ପାଲିଙ୍କି । ଏଥିରେ କେହି ଏକମତ ହୋଇପାରିଲେ ନାହିଁ- ସବୁଗୁଡ଼ିକ ବ୍ୟବସ୍ଥା ଟ୍ରାଡ଼ିସନାଲ୍, ଗତାନୁଗତିକ; ନିଶ୍ଚୟ ଆର୍ଟିଷ୍ଟଙ୍କ ରୁଚି ବିରୁଦ୍ଧରେ ଯିବ । ହଠାତ୍ ଜଣେ ଆଧୁନିକ ଯୁବକ ମୁଣ୍ଡକୁ ଗୋଟିଏ କଥା ଷ୍ଟ୍ରାଇକ୍ କଲା; ବଳଦଗାଡ଼ି । ସଭ୍ୟ ସମାଜରେ କେହି ବଳଦ ଗାଡ଼ିରେ ଯାଏ ନାହିଁ ଓ ବଳଦ ଗାଡ଼ିର ଗତି ସର୍ବାପେକ୍ଷା ମନ୍ଥର, ଫଳରେ ପରଦାସୀନା ଝିଅ ବୋହୂମାନେ ସହଜରେ କବାଟ ଫାଙ୍କରୁ ଆର୍ଟିଷ୍ଟଙ୍କୁ ଦର୍ଶନ କରିପାରିବେ ।

ନିର୍ଦ୍ଧାରିତ ସମୟ ଅନୁଯାୟୀ ଦିନ ଚାରିଟା ବେଳକୁ ସମସ୍ତ ଆୟୋଜନ ଶେଷ ହେଲା ଏବଂ ସେହି ଅନୁସାରେ ପ୍ରସ୍ତୁତ ହେବାକୁ ଆର୍ଟିଷ୍ଟଙ୍କୁ ଚେଲା ମାଧ୍ୟମରେ ସମ୍ବାଦ ପ୍ରେରଣ ହେଲା । ସୁସଜ୍ଜିତ ଖୋଲା ବଳଦଗାଡ଼ିରେ କିନ୍ତୁ ପରିଚାଳକ ହେଲା ଜଣେ ବୋହେମିଆନ୍ ନେଚରର ରଷ୍ଟିକ୍ ଗ୍ରାମବାସୀ । ଠିକ୍ ସାଢ଼େ ଚାରିଟା ବେଳକୁ ଆର୍ଟିଷ୍ଟ ତାଙ୍କ ସ୍ତାବକ ସହିତ ପ୍ରକୋଷ୍ଠରୁ ବାହାରକୁ ଆସିଲେ । ତାଙ୍କ ପୋଷାକ ଥିଲା ପରମ୍ପରାର ବିରୋଧୀ । ଗୋଟାଏ ଜିନ୍ ପେଣ୍ଟ ଓଲଟା କରି ପିନ୍ଧିଥିଲେ ଏବଂ ତା' ଉପରେ ଗୋଟାଏ

ନାଲି ରଙ୍ଗର ପଗଡ଼ି । ପୁଣି ଗୋଟାଏ ରଙ୍ଗବେରଙ୍ଗ ସାର୍ଟ ଉପରେ 'ବିଗ୍ ବୟଜ୍ ପ୍ଲେ ଏଟ୍ ନାଇଟର ଗଞ୍ଜି । ମୁଣ୍ଡରେ ଷ୍ଟ୍ର କ୍ୟାପ୍‌କୁ ଅତିକ୍ରମ କରି ବାଳଗୁଡ଼ିକ ନାକ ପାଖକୁ ଝୁଲି ଆସିଛି ।

ସହର ଅଭିମୁଖେ ଶୋଭାଯାତ୍ରା ବାହାରିଲା । ଲୋକମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଓ ଆର୍ଟିଷ୍ଟଙ୍କ ଉଦ୍ଦେଶ୍ୟରେ ଜୟ ଜୟକାର । ଅଜସ୍ର ଆଲୋକ ଚିତ୍ର । ଆମେ ସହରବାସୀମାନେ ବାଣ୍ଟି ହୋଇ ବଳଦଗାଡ଼ି ସାମ୍ନା ଓ ପଛରେ ବେଶ୍ ଉଲ୍ଲସିତ ହୋଇ ଯାତ୍ରା କରୁଥିଲୁ ।

ଅଥଚ ଗୋଟିଏ କଥା ମୋ' ସମେତ ଅନେକଙ୍କ ମନକୁ ଛୁଁ ଥିଲା: ସତରେ କ'ଣ ଆମେ ଆମର ସାଂସ୍କୃତିକ ମୂଲ୍ୟବୋଧ ଓ ପାରମ୍ପରିକତାଠାରୁ ଯଥେଷ୍ଟ ଦୂରକୁ ଚାଲିଯାଇଛୁଁ! କିନ୍ତୁ ସେଇ ମୁହୂର୍ତ୍ତରେ ସମସ୍ତ ସହରବାସୀ ଯେତେବେଳେ ଆର୍ଟିଷ୍ଟଙ୍କର ରୁଚି ଓ ଜୀବନଧାରାକୁ ସାଦରେ ଗ୍ରହଣ କରି ନେଇଛନ୍ତି, ଅନିଚ୍ଛାକୃତଭାବେ ଆମେ ସେ ଉଲ୍ଲାସ ଭିତରେ ନିଜକୁ ସାମିଲ କରିବାକୁ ବାଧ୍ୟ । ଅନ୍ୟଥା କାହିଁକି ବେକ୍‌ୱାର୍ଡ଼ ବା ଆଉଟ୍‌ଡ଼େଟେଡ୍ ବୋଲି କେତେକ ବିଶ୍ଳେଷଣକୁ ନିଜ ପାଖରେ ଖଞ୍ଜିଦେବାର ସୁଯୋଗ ଦେବୁ ବା କିଛି ଗୋଟାଏ କମ୍ପ୍ଲେକ୍ସରେ ଘାଣ୍ଟି ହେଉଛୁ ବୋଲି ପ୍ରମାଣ ଦେବୁ ।

ସଂପ୍ରତି ଆର୍ଟିଷ୍ଟଙ୍କର ରାଜତ୍ୱ ।



ରାଧାବିନୋଦ ନାୟକ ଜଣେ ଅତ୍ୟନ୍ତ ଶକ୍ତିଶାଳୀ ଲେଖକ ଯିଏ ମୌଳିକ ବକ୍ତବ୍ୟଟିଏ ନିଜ ଶୈଳୀରେ ପ୍ରତ୍ୟେକ ଗଳ୍ପରେ ରଖିଥାନ୍ତି । ଏହି ଶୈଳୀ ମଧ୍ୟ ଅତ୍ୟନ୍ତ ନିଜସ୍ୱ । ନିଜର ଗାଁ, ସହର, ଦେଶର ଦୈନନ୍ଦିନ ଜୀବନରୁ ପ୍ରାୟତଃ ତାଙ୍କର ପ୍ରତ୍ୟେକ ଚିତ୍ରକଳ୍ପ, କଥାବସ୍ତୁ, ଉପମା ସଂଗୃହୀତ, ଯାହାର ଉପସ୍ଥାପନା କୌଣସି ନିର୍ଦ୍ଦିଷ୍ଟ, ଘଷାପିଟା ଶୈଳୀଠାରୁ ଦୂରରେ । ପୁଣି ଏକଥା ସ୍ୱୀକାର୍ଯ୍ୟ ଯେ ତାଙ୍କର ସମସାମୟିକ ଲେଖକଗଣ ପାଶ୍ଚାତ୍ୟ ଦର୍ଶନ ତଥା ଲେଖକୀୟ ଶୈଳୀରେ ଉଦ୍‌ବୁଦ୍ଧ ତଥା ପ୍ରଭାବିତ ହୋଇ ଗଳ୍ପ ରଚନା କରୁଥିଲାବେଳେ ରାଧାବିନୋଦ ନିଜ ସଂସ୍କୃତି, ଜୀବନ ଓ ପରିବେଶ ପ୍ରତି ବେଶ୍ ସଚେତନ ରହି, ସେହି ବିଷୟବସ୍ତୁ ଓ ଅବବୋଧ ନେଇ ହିଁ ତାଙ୍କର ଗଳ୍ପଗୁଡିକ ରଚନା କରିଥାନ୍ତି ।

-ଲିପିପୁଷ୍ପା ନାୟକ





## କଥା ବିନୋଦ: ୧

ଆଜି ପ୍ରତ୍ୟେକ ବ୍ୟକ୍ତି ନିଃସଙ୍ଗ, ଅଥଚ ନିଜର ସ୍ୱତନ୍ତ୍ର ସତ୍ତା ନାମକ ଏକ କ୍ଷୁଦ୍ର ବୃତ୍ତ ମଧ୍ୟରେ ଘୂର୍ଣ୍ଣାୟମାନ । ଯେ ସଚେତନ, ସେ ଟିକେ ଥକ୍କା ନିଏ, ଅବସ୍ଥାକୁ ବିଶ୍ଳେଷଣ କରେ ଓ ମୁହୂର୍ତ୍ତକ ପାଇଁ ଚିନ୍ତା କରେ, ଯଦି ଏଇ କ୍ଷୁଦ୍ର ବୃତ୍ତର ପରିଧିକୁ ବୃହତ୍ତର କରି ଦିଆଯାଇପାରନ୍ତା, ସେଥିରେ ସମସ୍ତଙ୍କର ଅବାଧ ପ୍ରବେଶ ରହନ୍ତା, କ୍ଷତି କ'ଣ ! ଏଇ କଥାଟା କେବଳ ତା'ର ମୁହୂର୍ତ୍ତକର ଚିନ୍ତା ନୁହେଁ, ବରଂ ସେ ଉଦ୍ୟମ କରେ ଓ ନିଜର ପରିଷ୍କାର ହାତ ଦୁଇଟିକୁ ସାମାଜିକମାନଙ୍କ ଆଡ଼କୁ ପ୍ରସାରିତ କରି କହେ; ଦେଖନ୍ତୁ, ମୋ ହୃଦୟ କେମିତି ଶରତ ଆକାଶ ପରି ନିର୍ମଳ, ଅଥଚ ମୁଁ ନିଃସ୍ୱ । ଆସନ୍ତୁ ହୃଦୟକୁ ହୃଦୟ ମିଶାଇ ଦେବା, ସମସ୍ତେ ଏକ ହୋଇଯିବା । ତା' ହାତରେ ଅନ୍ୟର ହାତ ଆସି ମିଶେ, କିନ୍ତୁ ସେମାନଙ୍କର ହୃଦୟରେ ଯେମିତି ବିରାଟ କୋଲପ ଏବଂ ମୁହଁର ହସ ସବୁ ପଥର ଦାନ୍ତର । ଏଇଠି ପୁଣି ସରଳ ପ୍ରାଣର ସଂଘର୍ଷ-- ସମାଜ ଆଉ ସଚେତନ ବ୍ୟକ୍ତିର ପ୍ରବଞ୍ଚନା । ବିଚରା ସଚେତନ ବ୍ୟକ୍ତି ଅବୁଝା ରହିଯାଏ ।

Event: 4555 VSS Nagar, Bhubaneswar- 751007